## ଉତ୍କଳଗୌରବ ମଧୁସୂଦନଙ୍କ

# ଓଡ଼ିଆ ରଚନାବଳୀ



ପ୍ରଗତି ଉତ୍କଳ ସଂଘ

ରାଉରକେଲା

**ମଧୁସୂଦନ ଦାସ** (୧୮୪୮-୧୯୩୪) କୁଳବୃଦ୍ଧ, ଉତ୍କଳଗୌରବ ଓ ଓଡ଼ିଶାର ଜନକ ଭାବରେ ପରିଚିତ । ବର୍ତ୍ତମାନର ଓଡ଼ିଶା ପ୍ରଦେଶ ଗଠନରେ ତାଙ୍କର ଭୂମିକା ସର୍ବାଧିକ । ଏହି ସ୍ୱପ୍ନଦ୍ରଷ୍ଟା ଓ ନିରଳସ କର୍ମୀଙ୍କ ସାଧନା ଫଳରେ ଭାଷାଭିତ୍ତିରେ ପ୍ରଦେଶ ଗଠନ, ସ୍ୱଦେଶୀ ଶିଳ୍ପ ଓ ନାରୀ ସଶକ୍ତିକରଣର ପ୍ରଥମ ସ୍ୱପ୍ନ ଭାରତରେ ପ୍ରଥମଥର ପାଇଁ ଓଡ଼ିଶା କେବଳ ଦେଖି ନଥିଲା, ତାହାକୁ ସାକାର ମଧ୍ୟ କରିଥିଲା । ଏହି ମହାମନୀଷୀଙ୍କ ଓଡ଼ିଆ ରଚନାବଳୀର ଏକ ପ୍ରାମାଣିକ ଓ ପୂର୍ଣ୍ଣାଙ୍ଗ ସଂକଳନ ଏପର୍ଯ୍ୟନ୍ତ ସଂକଳିତ ହୋଇପାରି ନଥିଲା । ବର୍ତ୍ତମାନର ସଂକଳନ ଏହି ଦିଗରେ ପ୍ରଥମ ଉଦ୍ୟମ ।

ଉତ୍କଳଗୌରବ ମଧୁସୂଦନଙ୍କ ଓଡ଼ିଆ ରଚନାବଳୀରେ ମଧୁସୂଦନଙ୍କ ଲିଖିତ କବିତାବଳୀ ସହିତ ଓଡ଼ିଆରେ ପ୍ରଦତ୍ତ ଭାଷଣ ଭାଷଣର ସାରକଥା, ପ୍ରବନ୍ଧ, ପତ୍ର ଓ ବିଜ୍ଞାପନ ଆଦି ସଂକଳିତ । ଏକ ଦୀର୍ଘ ଭୂମିକା ସହ ଚାରୋଟି ଭାଗରେ ବିଭକ୍ତ ଏହି ପୁସ୍ତକର ପ୍ରତ୍ୟେକ ଭାଗର ରଚନାବଳୀକୁ ପରିଚିତ କରିବାପାଇଁ ଏକ 'ପ୍ରାକ୍‌କଥନ' ରହିଛି ।

# ଉତ୍କଳଗୌରବ ମଧୁସୂଦନଙ୍କ

# ଓଡିଆ ରଚନାବଳୀ

ସଂଗ୍ରହ ଓ ସଂପାଦନା

ଶ୍ରୀ ଦେବେନ୍ଦ୍ର କୁମାର ଦାଶ

ଡକ୍ଟର ନଗେନ୍ ଦାସ

ପ୍ରଗତି ଉତ୍କଳ ସଂଘ

# ଉତ୍କଳଗୌରବ ମଧୁସୂଦନଙ୍କ
# ଓଡ଼ିଆ ରଚନାବଳୀ

ସଂଗ୍ରହ ଓ ସମ୍ପାଦନା:
ଶ୍ରୀ ଦେବେନ୍ଦ୍ର କୁମାର ଦାଶ
ଡକ୍ଟର ନଗେନ୍ ଦାସ

ପ୍ରଗତି ଉତ୍କଳ ସଂଘ
ରାଉରକେଲା

# ଉତ୍କଳଗୌରବ ମଧୁସୂଦନଙ୍କ ଓଡ଼ିଆ ରଚନାବଳୀ


| | |
|---|---|
| ସମ୍ପାଦକ | ଶ୍ରୀ ଦେବେନ୍ଦ୍ର କୁମାର ଦାଶ<br>ଡକ୍ଟର ନଗେନ୍ ଦାସ |
| ପ୍ରକାଶକ | **ପ୍ରଗତି ଉତ୍କଳ ସଂଘ**<br>ଫକୀରମୋହନ ନଗର(ସେକ୍ଟର-୭)<br>ରାଉରକେଲା - ୭୬୯ ୦୦୩<br>ଫୋନ୍: ୦୬୬୧-୨୬୪୦୧୪୩ |
| ପରିବେଷକ | **ଗ୍ରନ୍ଥମନ୍ଦିର**<br>ବିନୋଦବିହାରୀ, କଟକ-୭୫୩୦୦୨ |
| ମୁଦ୍ରକ | **ଅପ୍‌ଟିମା(ଅଫ୍‌ସେଟ୍) ପ୍ରିଣ୍ଟସ୍**<br>ସୂତାହାଟ, କଟକ-୭୫୩୦୦୧ |
| ପ୍ରଥମ ସଂସ୍କରଣ : | ୨୦୧୦ |
| ମୂଲ୍ୟ | **ଏକ ଶହ ଟଙ୍କା ମାତ୍ର** |


# Utkalgourab Madhusudananka Odia Rachanabali
## (Odia Writings of Madhusudan Das)


| | |
|---|---|
| Editors | Sri Debendra Kumar Dash<br>Dr. Nagen Das |
| Publisher | **Pragati Utkal Sangha**<br>Fakirmohan Nagar(Sector-7)<br>Rourkela - 769003<br>Phone: 0661-2640143 |
| Distributor | **Grantha Mandir**<br>Binode Bihari, Cuttack-753002 |
| Printed at | **Optima (Offset) Prints**<br>Sutahat, Cuttack-753001 |
| First Edition : | 2010 |
| Price | Rupees Hundred only. |

## ପ୍ରକାଶକଙ୍କ ନିବେଦନ

ମଧୁବାବୁଙ୍କ ଚିନ୍ତାଧାରାରେ ଅନୁପ୍ରାଣିତ, ରାଉରକେଲାର ଅନ୍ୟତମ ପୁରାତନ ସାଂସ୍କୃତିକ ଅନୁଷ୍ଠାନ 'ପ୍ରଗତି ଉତ୍କଳ ସଂଘ' ଗତ ପଚାଶ ବର୍ଷ ଧରି ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ପ୍ରକାଶ ଓ ପ୍ରସାର ପାଇଁ ଅବାରିତ ଉଦ୍ୟମ କରିଆସିଛି । ମଧୁବାବୁଙ୍କ ବାସସ୍ଥାନ(ବର୍ତ୍ତମାନ ଶୈଳବାଳା ମହିଳା ମହାବିଦ୍ୟାଳୟ, କଟକ)କୁ ବାଦଦେଲେ, ଓଡ଼ିଶାରେ ପ୍ରଥମ, ତାଙ୍କର ପୂର୍ଣ୍ଣାବୟବ ବ୍ରୋଞ୍ଜ ପ୍ରତିମୂର୍ତ୍ତି ରାଉରକେଲା ଷ୍ଟେସନ୍ ନିକଟରେ ୧୯୭୬ ମସିହାରେ ଏହି ଅନୁଷ୍ଠାନ ଦ୍ୱାରା ପ୍ରତିଷ୍ଠା କରାଯାଇଥିଲା । ଏପ୍ରିଲ୍ ପହିଲାକୁ ଏକ ଜାତୀୟ ଉତ୍ସବ ରୂପରେ ସମ୍ପୂର୍ଣ୍ଣ ବେସରକାରୀ ଉଦ୍ୟମରେ ଅଥଚ ମହାସମାରୋହରେ, ପ୍ରଥମ କରି ୧୯୬୮ ମସିହାରେ ଏହି ଅନୁଷ୍ଠାନ ପାଳନ କରିବାକୁ ଆରମ୍ଭ କରିଥିଲା । ପରେ ସରକାରୀ ଓ ବେସରକାରୀ ସ୍ତରରେ ଏହା 'ଉତ୍କଳ ଦିବସ' ରୂପେ ସର୍ବତ୍ର ପାଳିତ ହେଉଛି ।

ଏହି ଅନୁଷ୍ଠାନଟିର ବିଭିନ୍ନ ଆଭିମୁଖ୍ୟ ଓ କାର୍ଯ୍ୟକ୍ରମ ମଧ୍ୟରେ ଏହାର ପ୍ରକାଶନ ବିଭାଗ ଅନ୍ୟତମ । ମଧୁବାବୁଙ୍କର ବକ୍ତୃତା, ତାଙ୍କ ସମ୍ପର୍କୀୟ ବିଭିନ୍ନ ଆଲୋଚନାକୁ ସଂକଳିତ କରାଯାଇ ଇଂରାଜୀରେ ଏହି ଅନୁଷ୍ଠାନ ତିନୋଟି ପୁସ୍ତକ ପ୍ରକାଶ କରିଛି । ଓଡ଼ିଆ ଭାଷାର ପ୍ରାଚୀନ ଓ ନୂତନ ସାହିତ୍ୟିକମାନଙ୍କର ଅପ୍ରକାଶିତ/ବିକ୍ଷିପ୍ତ ଲେଖାର ସଂଗ୍ରହ ଓ ସଂପାଦନା ତଥା ସେମାନଙ୍କ ସମ୍ପର୍କରେ ପ୍ରାମାଣିକ ଆଲୋଚନା ସମ୍ବଳିତ ପୁସ୍ତକାବଳୀ 'ପ୍ରଗତି ଉତ୍କଳ ସଂଘ' ପ୍ରକାଶ କରିଆସୁଛି । ଏହି ଅବସରରେ ଅସୀମ ଶ୍ରଦ୍ଧା ଓ ଅଙ୍ଗୀକାରବଦ୍ଧତା ସହ ଏହି ପ୍ରକାଶନ ବିଭାଗର ସମସ୍ତ ଦାୟିତ୍ୱ ସ୍ୱେଚ୍ଛାକୃତ ଭାବେ ମୁଣ୍ଡେଇ ନେଇଥିବା ସାହିତ୍ୟିକ ବନ୍ଧୁଙ୍କର ଅବଦାନ ସମ୍ପର୍କରେ ସାମାନ୍ୟ ଉଲ୍ଲେଖ ନ କଲେ କୃତଘ୍ନତା ହେବ । ଅନୁଷ୍ଠାନର ଗର୍ବ ଏହି ବିଶିଷ୍ଟ ସଭ୍ୟ ହେଲେ ଶ୍ରୀ ଦେବେନ୍ଦ୍ର କୁମାର ଦାଶ ।

ଉତ୍କଳଗୌରବ ମଧୁସୂଦନ ଓଡ଼ିଆ ରଚନାବଳୀର ଏକ କ୍ଷୀଣକାୟ ଓ ଅସମ୍ପୂର୍ଣ୍ଣ ସଂକଳିତ ବହୁପୂର୍ବେ ସ୍ୱର୍ଗତ ନବକିଶୋର ଦାସଙ୍କ ଦ୍ୱାରା ସଂକଳିତ ହୋଇଥିଲା । ତାଙ୍କ ଓଡ଼ିଆ ରଚନାବଳୀର ଏକ ପ୍ରାମାଣିକ ସଂସ୍କରଣ ଏପର୍ଯ୍ୟନ୍ତ ପ୍ରସ୍ତୁତ ହୋଇପାରି ନଥିଲା । ଏଭଳି ଏକ ଜାତୀୟ ଅଭାବ ପୂରଣ କରିଛନ୍ତି ଶ୍ରୀ ଦେବେନ୍ଦ୍ର କୁମାର ଦାଶ ଓ ତାଙ୍କୁ ସହଯୋଗ କରିଛନ୍ତି ତରୁଣ ଗବେଷକ ବନ୍ଧୁ ଡକ୍ଟର ନଗେନ ଦାସ । ଅନୁଷ୍ଠାନର

ପୂର୍ବତନ ଉପସଭାପତି ଓ ବର୍ତ୍ତମାନ ଅନ୍ୟତମ ଉପଦେଷ୍ଟା ଡକ୍ଟର ଶ୍ରୀଚରଣ ମହାନ୍ତି ସ୍ୱତଃପ୍ରବୃତ୍ତ ଭାବେ **ଉତ୍କଳଗୌରବ ମଧୁସୂଦନଙ୍କ ଓଡ଼ିଆ ରଚନାବଳୀ** ପୁସ୍ତକର ବ୍ୟୟଭାର ଗ୍ରହଣ କରିଛନ୍ତି । ଡକ୍ଟର ମହାନ୍ତିଙ୍କ ତ୍ୟାଗ ତଥା ଶ୍ରୀ ଦାଶ ଓ ଡକ୍ଟର ନଗେନ ଦାସଙ୍କ ସାଧୁ ଉଦ୍ୟମ ଫଳରେ ଏକ ଜାତୀୟ ଅଭାବ ପୂରଣ ହୋଇପାରିଛି । ସେଥିପାଇଁ 'ପ୍ରଗତି ଉତ୍କଳ ସଂଘ' ସେମାନଙ୍କୁ କୃତଜ୍ଞତା ଜ୍ଞାପନ କରୁଛି ।

'ପ୍ରଗତି ଉତ୍କଳ ସଂଘ'ର ଅନ୍ୟାନ୍ୟ ପ୍ରକାଶନ ଭଳି **ଉତ୍କଳଗୌରବ ମଧୁସୂଦନଙ୍କ ଓଡ଼ିଆ ରଚନାବଳୀ**କୁ ମଧ ଓଡ଼ିଶାର ସୁଧୀମଣ୍ଡଳୀ ଓ ସାଧାରଣ ପାଠକମାନେ ସ୍ୱାଗତ କରିବେ ବୋଲି ଆଶା ।

ରାଉରକେଲା
୧୫.୮.୨୦୧୦

**ନିକୁଞ୍ଜ କିଶୋର ସ୍ୱାଇଁ**
**ସଭାପତି, ପ୍ରଗତି ଉତ୍କଳ ସଂଘ**

* * *

# କୃତଜ୍ଞତା ସ୍ୱୀକାର

୧୯୫୮ ମସିହାରେ ନବକିଶୋର ଦାସଙ୍କ ସଂଗୃହୀତ ଓ ସମ୍ପାଦିତ ମଧୁବାବୁଙ୍କ **ଓଡ଼ିଆ ବକ୍ତୃତା ଓ ଗୀତ** କଟକର 'କଳାବିଜ୍ଞାନ ପରିଷଦ' ଆନୁକୂଲ୍ୟରେ ପ୍ରକାଶିତ ହୋଇଥିଲା । ଏହି ନୂତନ ସଂସ୍କରଣରେ ମଧୁବାବୁଙ୍କ ସାତଟି କବିତା ଓ ଛୋଟ ବଡ଼ ତେରଟି ବକ୍ତୃତା ସଂକଳିତ । ବହୁଦିନ ପର୍ଯ୍ୟନ୍ତ ମଧୁବାବୁଙ୍କ ଓଡିଆ ରଚନାବଳୀ କହିଲେ ଚଉଷଠି ପୃଷ୍ଠାର ଏହି କ୍ଷୁଦ୍ର ପୁସ୍ତିକାକୁ ହିଁ ବୁଝାଯାଉଥିଲା । ପରବର୍ତ୍ତୀ କାଳରେ ବର୍ତ୍ତମାନ ପୁସ୍ତକର ପ୍ରଥମ ସମ୍ପାଦକ ମଧୁବାବୁଙ୍କର ତିନୋଟି ବକ୍ତୃତା ଓ ଗୋଟିଏ ପ୍ରଚାରପତ୍ର **ଓଡ଼ିଶାର ଜନକ ମଧୁସୂଦନ** ପୁସ୍ତକରେ ତଥା ତାଙ୍କର ଅନ୍ୟ ଦୁଇଟି ବକ୍ତୃତା ଓ ଗୋଟିଏ ପତ୍ର ପ୍ରଗତି ଉତ୍କଳ ସଂଘର ମୁଖପତ୍ର **ଉତ୍କଳଗୌରବ-୨୦୦୭** ପୁନଃ ମୁଦ୍ରିତ କରିଥିଲା । ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ **ଦେଶପ୍ରାଣ ମଧୁସୂଦନ** ପୁସ୍ତକରେ ଓଡ଼ିଆରେ ପ୍ରଦତ୍ତ ମଧୁବାବୁଙ୍କର କେତେକ ବକ୍ତୃତାର ସାରକଥା, ବିବୃତି ଆଦି ସଂଯୋଜିତ କରିଥିଲେ । ମଧୁସୂଦନଙ୍କୁ କୁହାଯାଉଛି 'ଓଡ଼ିଆ ଜାତିର ଜନକ'; ଅଥଚ ଓଡ଼ିଆ ଜାତି ତଥା ଓଡ଼ିଶା ସରକାର ମଧୁସୂଦନଙ୍କ ସମ୍ପର୍କରେ ବିଧିବଦ୍ଧ ଗବେଷଣା କରିବା ପାଇଁ କ୍ଷେତ୍ରପ୍ରସ୍ତୁତି ବା ତାଙ୍କ ରଚନାବଳୀର ଏକ ପ୍ରାମାଣିକ ସଂକଳନ ପ୍ରସ୍ତୁତି ସମ୍ପର୍କରେ ଚିନ୍ତା କରିନାହାନ୍ତି । ଏହିଭଳି ଏକ ଜାତୀୟ ଅଭାବ ପୂରଣ ଉଦ୍ଦେଶ୍ୟରେ **ଉତ୍କଳଗୌରବ ମଧୁସୂଦନଙ୍କ ଓଡ଼ିଆ ରଚନାବଳୀ** ପୁସ୍ତକର ପରିକଳ୍ପନା ।

ମଧୁସୂଦନଙ୍କ ଓଡ଼ିଆ କବିତା, ଓଡ଼ିଆରେ ପ୍ରଦତ୍ତ ବକ୍ତୃତା ବା ବକ୍ତୃତାର ସାରକଥା, ଓଡ଼ିଆରେ ଲିଖିତ ପ୍ରବନ୍ଧ, ପତ୍ର ଓ ବିଜ୍ଞାପନ ଆଦି ଏହି ପୁସ୍ତକରେ ସ୍ଥାନିତ । ପୁସ୍ତକଟିରେ ରହିଛି ଚାରୋଟି ବିଭାଗ । ପ୍ରଥମ ବିଭାଗରେ ରହିଛି ତାଙ୍କର ସାତଟି କବିତା । ଦ୍ୱିତୀୟ ବିଭାଗରେ ଉତ୍କଳ ସମ୍ମିଳନୀ ସମ୍ପର୍କରେ ଲିଖିତ ଉପକ୍ରମଣିକା, ସେଠାରେ ପ୍ରଦତ୍ତ ବକ୍ତୃତା, ଉତ୍କଳ ସମ୍ମିଳନୀ ତରଫରୁ ପ୍ରକାଶିତ ପ୍ରଚାରପତ୍ର ତଥା ଏକ ପତ୍ର ସଂଯୋଜିତ । ତୃତୀୟ ବିଭାଗରେ ଉତ୍କଳ ସମ୍ମିଳନୀ ବ୍ୟତୀତ ଅନ୍ୟତ୍ର ଓଡ଼ିଆରେ ପ୍ରଦତ୍ତ ବକ୍ତୃତାବଳୀ ସଂକଳିତ । ଚତୁର୍ଥ ବିଭାଗରେ ତାଙ୍କ ଦ୍ୱାରା (ଗୋଟିଏ ଗୌରୀଶଙ୍କର ରାୟଙ୍କ ସହଯୋଗରେ) ଲିଖିତ ଗୋଟିଏ ପ୍ରବନ୍ଧାବଳୀ, ପତ୍ରାବଳୀ, ବିବୃତି ଓ ବିଜ୍ଞାପନଆଦି

ପତ୍ରସ୍ଥ । ପ୍ରତ୍ୟେକ ବିଭାଗ ପାଇଁ ରହିଛି 'ପ୍ରାକ୍-କଥନ' । ତା' ସହିତ ଆବଶ୍ୟକସ୍ଥଳେ ସଂପାଦକୀୟ ସୂଚନା ପ୍ରଦତ୍ତ । ମଧୁବାବୁଙ୍କ ରଚନାବଳୀର ମୁଖ୍ୟ ବିଷୟ ଓଡ଼ିଆ ଅସ୍ମିତା । ତେଣୁ ଓଡ଼ିଆ ଅସ୍ମିତା ବା ଆତ୍ମ-ପରିଚିତି ନିର୍ମାଣରେ ମଧୁବାବୁଙ୍କର ରଚନାର ଗୁରୁତ୍ୱ 'ଭୂମିକା'ରେ ଉପସ୍ଥାପିତ ।

ପୁସ୍ତକଟିର ଉପାଦାନ-ସଂଗ୍ରହ, ସଂଯୋଜନ ତଥା ସଂପାଦନା ଦୁଇ ସଂପାଦକଙ୍କର ଯୌଥ ଉଦ୍ୟମର ଫଳଶ୍ରୁତି । ତେବେ 'ଭୂମିକା' ଓ 'ପ୍ରାକ୍-କଥନ'ଗୁଡ଼ିକର ପିତୃତ୍ୱ ନିର୍ଦ୍ଦିଷ୍ଟ କରାଯାଇପାରେ । 'ଭୂମିକା'ର ଲେଖକ ଦ୍ୱିତୀୟ ସମ୍ପାଦକ ହେଲାବେଳେ 'ପ୍ରାକ୍-କଥନ'ଗୁଡ଼ିକ ପ୍ରଥମ ସମ୍ପାଦକଙ୍କ ଦ୍ୱାରା ଲିଖିତ ।

ମଧୁବାବୁଙ୍କ ସମ୍ପର୍କରେ ଓଡ଼ିଶାରେ ସର୍ବାଧିକ କାର୍ଯ୍ୟ କରିଛି ରାଉରକେଲାର ପୁରାତନ ସାଂସ୍କୃତିକ ଅନୁଷ୍ଠାନ 'ପ୍ରଗତି ଉତ୍କଳ ସଂଘ' । ଏହି ଅନୁଷ୍ଠାନରେ କର୍ମକର୍ତ୍ତା ଓ ପତ୍ରିଷ୍ଠାତା-ସଦସ୍ୟମାନେ ଚାପ ପକାଇ ନ ଥିଲେ ଓ ଉଦ୍ୟମ କରି ନ ଥିଲେ ଏହି ପୁସ୍ତକ କେବେ ସଂକଳିତ ଓ ପ୍ରକାଶିତ ହୋଇପାରି ନ ଥାନ୍ତା । ଏହି ଅବସରରେ ତେଣୁ ସଂଘର ବର୍ତ୍ତମାନର ସଭାପତି ଶ୍ରୀଯୁକ୍ତ ନିକୁଞ୍ଜ କିଶୋର ସ୍ୱାଇଁ, ଅନ୍ୟତମ ଉପସଭାପତି ଡକ୍ଟର ଅଯୋଧ୍ୟାନାଥ ଦାଶ, ସାଧାରଣ ସମ୍ପାଦକ ଶ୍ରୀ ରାଧାମୋହନ ନାୟକ ଓ ପ୍ରତିଷ୍ଠାତା-ସଦସ୍ୟ ଶ୍ରୀ ବିରୂପାକ୍ଷ ପାଢ଼ୀଙ୍କୁ ତଥା ସଂଘର ଅନ୍ୟ ସମସ୍ତ କର୍ମକର୍ତ୍ତାଙ୍କ ନିକଟରେ ଆମେ କୃତଜ୍ଞତା ଜ୍ଞାପନ କରୁଛୁ । ସଂଘର ଅନ୍ୟତମ ଉପଦେଷ୍ଟା ଡକ୍ଟର ଶ୍ରୀଚରଣ ମହାନ୍ତି ସହଯୋଗର ହାତ ବଢ଼ାଇ ନ ଥିଲେ, ଏହା ମୁଦ୍ରିତ ଓ ପ୍ରକାଶିତ ହୋଇପାରି ନ ଥାନ୍ତା । ଡକ୍ଟର ମହାନ୍ତିଙ୍କର ମିଶନାରୀ ସୁଲଭ ନିଷ୍ଠା ଓ ସହଯୋଗ ପାଇଁ ଆମେ ତାଙ୍କଠାରେ ଚିର ଋଣୀ ହୋଇ ରହିବୁ ।

ପୁସ୍ତକର ଉପାଦାନ ସଂଗୃହୀତ ହୋଇଛି ଉତ୍କଳ ସାହିତ୍ୟ ସମାଜର ମଧୁସୂଦନ ପାଠାଗାର, ଓଡ଼ିଶା ରାଜ୍ୟ ଅଭିଲେଖାଗାର, ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ଓ ଉତ୍କଳ ବିଶ୍ୱବିଦ୍ୟାଳୟର ପରିଜା ପାଠାଗାରରୁ । ତେଣୁ ଏହିସବୁ ଅନୁଷ୍ଠାନର କର୍ତ୍ତା ଓ ଗ୍ରନ୍ଥାଗାରିକମାନଙ୍କ ନିକଟରେ ଆମେ କୃତଜ୍ଞ । ବିଶିଷ୍ଟ ଅନୁବାଦକ ଓ ପ୍ରଖ୍ୟାତ ଗବେଷକ-ସମାଲୋଚକ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟଙ୍କ ସୌଜନ୍ୟରୁ ଉତ୍କଳ ସମ୍ମିଳନୀର କେତେକ ବିବରଣୀ ପୁସ୍ତିକା ଆମେ ଦେଖିବାକୁ ସମର୍ଥ ହୋଇଛୁ । ଏହି ଅବସରରେ ପ୍ରଫେସର ଆଚାର୍ଯ୍ୟଙ୍କୁ ଆମର ଭକ୍ତିପୂତ ପ୍ରଣାମ । ପ୍ରଫେସର ଗଗନେନ୍ଦ୍ରନାଥ ଦାଶ, ପ୍ରଫେସର ଦାଶରଥି ଦାସ, ଡକ୍ଟର ନିଖିଳ ମୋହନ ପଟ୍ଟନାୟକ, ଡକ୍ଟର ଗୌରାଙ୍ଗ ଚରଣ ଦାଶ, ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ, ଡକ୍ଟର ପ୍ରସନ୍ନ କୁମାର ସ୍ୱାଇଁ, ଡକ୍ଟର ଲଲାଟେନ୍ଦୁ ଦାସ ମହାପାତ୍ର ପ୍ରମୁଖ ଗୁରୁଜନ ଓ ସତୀର୍ଥବର୍ଗଙ୍କ ସହ ଆଲୋଚନା କରି ବା ସେମାନଙ୍କ ସହଯୋଗ ଲାଭ କରିଥିବାରୁ ଆମେ କୃତାର୍ଥ ।

ଏହି ପୁସ୍ତକର ଅକ୍ଷର-ସଂଯୋଜନା କରିଛନ୍ତି ଶ୍ରୀମାନ୍ ଶଙ୍କର ପ୍ରସାଦ ମିଶ୍ର(ରାଉରକେଲା) ଓ ମୁଦ୍ରଣ କରିଛନ୍ତି ଅପ୍‌ଟିମା ଅଫ୍‌ସେଟ୍ ପ୍ରିଣ୍ଟର ପରିଚାଳକ ଶ୍ରୀମାନ ତପନ କୁମାର ମହାପାତ୍ର । ସେମାନଙ୍କୁ ଆମର ଧନ୍ୟବାଦ ।

ମଧୁସୂଦନଙ୍କ ରଚନାବଳୀ ମୌଳିକ ଉତ୍ସରୁ ସଂଗୃହୀତ ହୋଇଥିବାରୁ ସେ ସମୟର ପୁସ୍ତକାବଳୀ ଓ ପତ୍ରପତ୍ରିକାରେ ଥିବା ପାଠ ଓ ବନାନକୁ ଏଥିରେ ଗ୍ରହଣ କରାଯାଇଛି । ଅତି ଆବଶ୍ୟକ ସ୍ଥଳରେ ବର୍ଗ ବନ୍ଧନୀ ମଧ୍ୟରେ ସମ୍ପାଦକୀୟ ଅନୁପ୍ରବେଶ ରହିଛି ।

ପୁସ୍ତକଟିରେ ରହିଯାଇଥିବା କେତେକ ତ୍ରୁଟି ଓ ଅପୂର୍ଣ୍ଣତା ବିଷୟରେ ଆମେ ସଚେତନ । ଗବେଷକ/ପାଠକବର୍ଗ ସେ ସମ୍ପର୍କରେ ଆମକୁ ଅଧିକ ସଚେତନ କଲେ ଆମେ ସେମାନଙ୍କ ପ୍ରତି କୃତଜ୍ଞ ରହିବୁ ।

ଗଙ୍ଗାପୂର୍ଣ୍ଣିମା
୧୪୧୭ ସାଲ

ଦେବେନ୍ଦ୍ର କୁମାର ଦାଶ
ନଗେନ୍ ଦାସ

* * *

# ଭୂମିକା

ମଧୁବାବୁଙ୍କ ସମୟ ଥିଲା ଓଡ଼ିଶା ପାଇଁ ଏକ ସଂଘର୍ଷର ସମୟ । ଗୋଟିଏ ପଟେ ହିନ୍ଦୀ, ବଙ୍ଗଳା ତଥା ତେଲଗୁ କଥିତ ରାଜ୍ୟମାନଙ୍କର ଓଡ଼ିଆ ଭାଷା ଓ ଭୂଗୋଳ ଉପରେ ଶ୍ୟେନଦୃଷ୍ଟି ଏବଂ ଅନ୍ୟ ପଟେ ଦେଶୀୟ ତଥା ବିଦେଶୀ ଶାସକଙ୍କର ପ୍ରଜାମାନଙ୍କ ପ୍ରତି ଥିଲା କପଟପୂର୍ଣ୍ଣ ମନୋଭାବ । ଏହିପରି ସାମାଜିକ ରାଜନୀତିକ ଅସନ୍ତୁଳନ ଓ ବ୍ୟବସ୍ଥା-ଗତ ତ୍ରୁଟି ତତ୍କାଳୀନ କେତେଜଣ ଶିକ୍ଷିତ ସଚେତନ ଓଡ଼ିଆଙ୍କ ପ୍ରାଣରେ ସୃଷ୍ଟି କରିଥିଲା ଆତ୍ମପରିଚିତିର ସଂକଟ । ତେଣୁ ଏହି ଆତ୍ମପରିଚିତିର ସଂକଟରୁ ମୁକୁଳିବା ପାଇଁ ଓ ସେହି ଉଦ୍ଦେଶ୍ୟରେ ଅନୁରୂପ ବ୍ୟକ୍ତିତ୍ୱ ନିର୍ମାଣ ପାଇଁ ସେଇ ସମୟ ଥିଲା ଏକ ଉପଯୁକ୍ତ ସମୟ । ସେଇ ସମୟର ସ୍ପନ୍ଦନକୁ ଅନୁଭବ କରିଥିଲେ ମଧୁବାବୁ । ସ୍ୱତନ୍ତ୍ର ଉତ୍କଳ ଗଠନ ତଥା ଓଡ଼ିଆ ଅସ୍ମିତାର ପ୍ରତିଷ୍ଠା ପାଇଁ ମଧୁବାବୁ ଆପ୍ରାଣ ଉଦ୍ୟମ କରିଥିଲେ । ଉତ୍ତମ ନାଗରିକ ଜୀବନ ନିର୍ବାହ ସହିତ ଉତ୍କଳ ଜାତୀୟତାବୋଧ ସୃଷ୍ଟି କରିବା ପାଇଁ ସେ ଥିଲେ ସଂକଳ୍ପବଦ୍ଧ । ଓଡ଼ିଆ ଭାଷାଭାଷୀ ଓ ସଂସ୍କୃତିସମ୍ପନ୍ନ ମଣିଷମାନଙ୍କୁ ସଂଘବଦ୍ଧ କରି ସ୍ୱତନ୍ତ୍ର ଉତ୍କଳର ସ୍ୱପ୍ନ ସେ ଦେଖିଥିଲେ ।

ମଧୁବାବୁ ଥିଲେ ଧର୍ମନିରପେକ୍ଷତାରେ ବିଶ୍ୱାସୀ ଓ ଉଦାରବାଦୀ । ତାଙ୍କର ଜାତୀୟତାବୋଧ ସଂକୀର୍ଣ୍ଣ କିମ୍ବା ମୌଳବାଦଭିତ୍ତିକ ନୁହେଁ । ସେ ଅନୁଭବ କରିଥିଲେ ଉତ୍କଳମାତାର ଉନ୍ନତିରେ ଭାରତମାତାର ଉନ୍ନତି । ଔପନିବେଶିକ ଶାସକ ତଥା ଓଡ଼ିଶାର ରାଜା ଓ ଜମିଦାରଙ୍କ ପ୍ରତି ଅନୁରକ୍ତ ଥିଲେ ସୁଦ୍ଧା ସମାଜର ନିମ୍ନବର୍ଗ ପ୍ରତି ହେୟ ମନୋଭାବ ତାଙ୍କର ନଥିଲା । ପ୍ଲାଟୋ ଗୋଟିଏ ଭୂଖଣ୍ଡରେ ବସବାସ କରୁଥିବା ହେଲେନସ୍‌କୁ ଗୁରୁତ୍ୱାରୋପ କରିବା ସହିତ ବାରବାରୋଇ ଜାତିକୁ ଶତ୍ରୁତୁଲ୍ୟ ମନେ କରିଛନ୍ତି । କିନ୍ତୁ ମଧୁବାବୁ ଓଡ଼ିଆ ଜାତୀୟତାକୁ ପ୍ରତିଷ୍ଠା କରିବା ପାଇଁ ଓ ଏହାର ସ୍ୱାତନ୍ତ୍ର୍ୟ ପ୍ରତିପାଦନ କରିବା ପାଇଁ କୌଣସି ଏକ ନିର୍ଦ୍ଦିଷ୍ଟ ଜାତିକୁ ଦୋଷାରୋପ କରି ନାହାନ୍ତି; ପରନ୍ତୁ ଓଡ଼ିଶାର ସୀମାସରହଦ ମଧ୍ୟରେ ବସବାସ କରୁଥିବା ସମସ୍ତ ଜାତିକୁ ଓଡ଼ିଶାର ସନ୍ତାନ ବୋଲି ଅଭିହିତ କରିଛନ୍ତି ଏବଂ ଓଡ଼ିଶାର ସାମଗ୍ରିକ ବିକାଶ ଲାଗି ପ୍ରତ୍ୟେକ ଧର୍ମ, ଜାତିର ମଣିଷମାନଙ୍କୁ ଆହ୍ୱାନ ଦେଇଛନ୍ତି । ହିନ୍ଦୁ ଓ ମୁସଲମାନ ସମ୍ପ୍ରଦାୟର ଏକତ୍ର ସହାବସ୍ଥାନ ଓ ସାଂପ୍ରଦାୟିକ ସଦ୍‌ଭାବନା ବଜାଇ ରହିଲେ ଓଡ଼ିଶା ଏକ ସମୃଦ୍ଧ ତଥା ବିକଶିତ ସମାଜରେ ରୂପାନ୍ତରିତ ହୋଇପାରିବ ବୋଲି ମଧୁବାବୁ ଚିନ୍ତା କରିଥିଲେ । ବିଶେଷ କରି ମୁସଲମାନ ସମ୍ପ୍ରଦାୟର ଶିକ୍ଷା ଓ ଆର୍ଥନୀତିକ ଉନ୍ନତି ପାଇଁ ସେ ଆହ୍ୱାନ ଦେଇ କହିଥିଲେ:

ହିନ୍ଦୁର ଯେ ଅଭାବ ତାହା ମୁସଲମାନର ଅଭାବ ଓ ମୁସଲମାନଙ୍କର ଅଭାବ ମଧ୍ୟ ହିନ୍ଦୁର ଅଭାବ । ଅତଏବ କୌଣସି ଅଭାବ ଦୂର କରିବା କାରଣ ସମସ୍ତଙ୍କୁ ମିଶି କାର୍ଯ୍ୟ କରିବାକୁ ହେବ । ... ସମସ୍ତ ମୁସଲମାନମାନେ ସରକାରୀ ଚାକିରୀ ପାଇପାରିବେ ନାହିଁ, ଅଧିକାଂଶ ଲୋକ ଅନ୍ୟ ଉପାୟରେ ଜୀବିକା ନିର୍ବାହ କରିବେ । ଅତଏବ ସମସ୍ତଙ୍କର ଯହିଁରେ ମଙ୍ଗଳ ହେବ ତାହା କରିବା ଉଚିତ... ମୁସଲମାନମାନଙ୍କ ସେବାରେ ସେ ସର୍ବଦା ନିଯୁକ୍ତ ହେବାକୁ ସୁଖୀ ହେବେ ଏବଂ ତାହାଙ୍କ ସାଧାନୁସାରେ ସେମାନଙ୍କ ସାହାଯ୍ୟ କରିବାକୁ ତ୍ରୁଟି କରିବେ ନାହିଁ । **(ଉତ୍କଳ ଦୀପିକା: ୨୪.୩.୧୮୮୮)**

ଓଡ଼ିଆ ଜାତୀୟତା ରକ୍ଷଣଶୀଳ ଓ ପ୍ରଗତିଶୀଳ ଚେତନାର ସମିଶ୍ରିତ ରୂପ । ଓଡ଼ିଶୀ ସଂସ୍କୃତିକୁ ଧାରଣ କରୁଥିବା ପୁସ୍ତକ, ଐତିହାସିକ ଧାରା, ଭୂଖଣ୍ଡ ସମ୍ପର୍କିତ ମିଥ୍ ପ୍ରଭୃତି ଓଡ଼ିଆ ଜାତୀୟତାବାଦର ଭିତ୍ତି । ଏତଦ୍ ବ୍ୟତୀତ ଭାଷାଭିତ୍ତିକ ରାଜ୍ୟ ଗଠନର ଅନୁଚିନ୍ତା ତଥା ମୌଳିକ ସାଂସ୍କୃତିକ ଉପାଦାନର ସମଷ୍ଟି ଆଧାରରେ ନିଜର ସ୍ୱାତନ୍ତ୍ର୍ୟ ପ୍ରକଟ କରୁଥିବା ବ୍ୟକ୍ତି ବିଶେଷ ମଧ୍ୟରେ ଏହି ଜାତୀୟତାବୋଧଟି ଦେଖିବାକୁ ମିଳିଥାଏ । ଏହି ଭିତ୍ତି ଓ ବ୍ୟକ୍ତି ମଧ୍ୟରେ ସମନ୍ୱୟ ସମ୍ଭବ ହେଲେ ଏକ ସ୍ୱତନ୍ତ୍ର ଜାତି ଭାବେ ଆତ୍ମପରିଚିତିର ଅନ୍ୱେଷଣ ସମ୍ଭବ ହୁଏ । ଉନବିଂଶ ଶତକର ମଧ୍ୟଭାଗରୁ ଜାତୀୟତାବାଦର ଦୁଇଟି ଧାରା ଦେଖିବାକୁ ମିଳିଥାଏ । ଗୋଟିଏ ଥିଲା ହିନ୍ଦୁ/ଭାରତୀୟ ଜାତୀୟତା ଓ ଅପରଟି ହେଲା ଭାଷାଭିତ୍ତିକ ପ୍ରାଦେଶିକ ଜାତୀୟତା । ମଧୁବାବୁ ଥିଲେ ଏହି ଦୁଇ ଚିନ୍ତାଧାରାର ଏକ ସମିଶ୍ରିତ ମଣିଷ । ସ୍ୱତନ୍ତ୍ର ଦେଶଗଠନରେ ମଧ୍ୟବିତ୍ତ ବୁଦ୍ଧିଜୀବୀଙ୍କର ପ୍ରତିବଦ୍ଧତା ରହିବା ପରି ଔପନିବେଶିକ ପ୍ରକ୍ରିୟାରେ ସୃଷ୍ଟି ହୋଇଥିବା ବୁଦ୍ଧିଜୀବୀ ମଧୁବାବୁ ସ୍ୱତନ୍ତ୍ର ଉତ୍କଳ ଗଠନ ପାଇଁ ଯୋଜନାବଦ୍ଧ ଭାବେ କାର୍ଯ୍ୟ କରିଥିଲେ । ଗୋଟିଏ ଜାତିକୁ ପ୍ରବୋଧିତ କରିବା ମୂଳରେ ରହିଛି ଜାତୀୟତାବୋଧ – ଭାଷା, ସାହିତ୍ୟ, ସଂସ୍କୃତି ତଥା ଐତିହାସିକ ଗୌରବଗାଥା ହିଁ ଜାତୀୟତାବୋଧର ଉପାଦାନସମୂହ । ଯେଉଁ ସମୟରେ ଓଡ଼ିଶାର ନିଜସ୍ୱ ଭୌଗୋଳିକ ସୀମା ସରହଦ ନିର୍ଦ୍ଦିଷ୍ଟ ହୋଇନାହିଁ; ତାର ରାଜନୈତିକ ଅବସ୍ଥା,ଶିକ୍ଷାଦାନର ମାଧ୍ୟମ ଓ ପ୍ରଣାଳୀ ଅସ୍ପଷ୍ଟ ଅନ୍ୟ ପ୍ରଦେଶର ଲୋକ ତଥା ଔପନିବେଶିକ ପ୍ରଶାସନ ବ୍ୟବସ୍ଥା ଦ୍ୱାରା ନିୟନ୍ତ୍ରିତ ତାହାର ଶିକ୍ଷା ଓ ପ୍ରଶାସନ,ସେଇ ସମୟରେ ନିଜ ଆତ୍ମପରିଚିତିକୁ ଅନ୍ୱେଷଣ କରିବା ପାଇଁ ମଧୁବାବୁଙ୍କ ସତର୍କ ଦୂରଦୃଷ୍ଟି ଓ ଉଦ୍ୟମ ଓଡ଼ିଆମାନଙ୍କ ମଧ୍ୟରେ ଜାତୀୟତାବୋଧ ସୃଷ୍ଟି କରିବାରେ ସହାୟକ ହୋଇଥିଲା । ଓଡ଼ିଆ ଜାତିର ମହତ୍ତ୍ୱ ଏବଂ ଓଡ଼ିଆ ଆତ୍ମପରିଚିତି ଭଳି ମୌଳିକ ଉପାଦାନକୁ ଓଡ଼ିଶାବାସୀଙ୍କ ମନରେ ଜାଗରୁକ କରାଇବା ପାଇଁ ଯେଉଁ କେତୋଟି ହାତଗଣତି କବିତା ସେ ରଚନା କରିଥିଲେ, ସେଗୁଡ଼ିକରେ

ଓଡ଼ିଆ ଜାତୀୟତାବୋଧର ସ୍ୱର ଝଙ୍କୃତ । ଶହ ଶହ ବର୍ଷ ଧରି ଓଡ଼ିଆମାନଙ୍କ ମଧ୍ୟରେ ଥିବା ସ୍ଥାଣୁତ୍ୱକୁ ଭାଙ୍ଗିବା ସହିତ ଉଭୟ ମାନସିକ ଓ ଶାରୀରିକ କ୍ଷେତ୍ରରେ ଅପୂର୍ବ ଶକ୍ତିସଂଚାର ମଧୁବାବୁଙ୍କ ଉଦ୍‌ବୋଧନୀମୂଳକ କବିତାଗୁଡ଼ିକର ଲକ୍ଷ୍ୟ । ପୂର୍ବ ପୁରୁଷଙ୍କ ଐତିହ୍ୟପୂର୍ଣ୍ଣ ଜୀବନଗାଥାକୁ ସ୍ମରଣ ପୂର୍ବକ ସେହି ଗୌରବମୟ ପଦାଙ୍କ ଅନୁସରଣ କରିବାପାଇଁ ଅନୁପ୍ରେରିତ କରିଛନ୍ତି ମଧୁବାବୁ । ନିଃସ୍ୱାର୍ଥପର ଭାବେ ଜାତି ଓ ଜନନୀର ସେବାରେ ନିମଗ୍ନ ହୋଇ ଏକ ଉଦାତ୍ତ ଜାତୀୟଚରିତ୍ର ନିର୍ମାଣପାଇଁ ମଧୁବାବୁ ପ୍ରେରଣାପୁରୁଷ ଭାବେ ଅବତୀର୍ଣ୍ଣ ହୋଇଛନ୍ତି । ଜାତୀୟ ଚରିତ୍ରଗଠନ ଓ ଜାତିର ଉନ୍ନତିପଥରେ ତୋଷାମଦପଣିଆର ସ୍ଥାନ ନାହିଁ ବୋଲି ସେ ବିଶ୍ୱାସ କରୁଥିଲେ । ସେଥିପାଇଁ ସେ କହିଥିଲେ –

ତୋଷାମଦ ଛାଡ଼ି ସ୍ୱାର୍ଥ ପରିହରି
ସତ୍ୟକୁ ଆଶ୍ରୟ କର,
ଦୁଇଦିନ ପରେ ସ୍ୱାଧୀନ ରାଷ୍ଟ୍ରରେ
ମଙ୍ଗଳ ହୋଇବ ତୋର ।

ଓଡ଼ିଆମାନଙ୍କ ହୀନମନ୍ୟଭାବ ଦେଖି ସେ ଯେପରି ବିଚଳିତ ହୋଇପଡ଼ିଛନ୍ତି, ସେହିପରି ସ୍ୱାଭିମାନବୋଧରୁ ଦୂରେଇ ଯାଇଥିବା ଓଡ଼ିଆମାନଙ୍କ ଜାତୀୟଚରିତ୍ରର ଅଧଃପତିତ ଅବସ୍ଥା ତାଙ୍କ ପ୍ରାଣରେ ଭରି ଦେଇଛି ଅସରନ୍ତି ଯନ୍ତ୍ରଣା । ଦୀର୍ଘକାଳ ଧରି ପରାଧୀନତା ଓ ବିଚ୍ଛିନ୍ନତାର ଆତ୍ମଗ୍ଲାନିରେ ଜର୍ଜରିତ ଓଡ଼ିଆମାନଙ୍କୁ ଗୋଟିଏ ମଞ୍ଚରେ ଏକତ୍ରିତ କରି ଜାତୀୟମନ୍ତ୍ରରେ ଉଦ୍‌ବୁଦ୍ଧ କରିବାପାଇଁ ଚେଷ୍ଟା କରିଛନ୍ତି ମଧୁବାବୁ । ସେହି ମଞ୍ଚଟି କୌଣସି ନିର୍ଦ୍ଦିଷ୍ଟ ସମ୍ପ୍ରଦାୟ ଏବଂ ବର୍ଗ ମଧ୍ୟରେ ସୀମିତ ନ ଥିଲା । ସାମଗ୍ରିକ ଭାବେ ଉତ୍କଳ ଓ ଉତ୍କଳର ସନ୍ତାନମାନଙ୍କ ପ୍ରଗତି ପାଇଁ ସେ ତିଆରି କରିଥିଲେ 'ଉତ୍କଳ ସମ୍ମିଳନୀ' ମଞ୍ଚ । ସେ ଉଦ୍‌ବୋଧନ ଦେଇ ମାତୃଭୂମିର ଦର୍ଶନ ନିମନ୍ତେ କହିଥିଲେ–

ଜନନୀର ଦେଖା କରିବାରେ ଇଚ୍ଛା
ଯଦି ହୋଇଥାଏ ମନେ,
ଉତ୍କଳର ମାଟି ଆଲିଙ୍ଗନ କରି
ତା ଧୂଳି ଲେପ ବଦନେ ।

ପୂଣ୍ୟତୋୟା ଉତ୍କଳର ଗରିମାମୟ ଇତିହାସର ପୃଷ୍ଠାର ଉନ୍ମୋଚନ ଫଳରେ ଓଡ଼ିଆମାନଙ୍କ ମଧ୍ୟରେ ଜାତୀୟତାର ବୀଜ ବପନ ଯେ ସମ୍ଭବ ହେବ, ସେ କଥାକୁ ବୁଝିଥିଲେ ମଧୁବାବୁ । ସତେ ଯେପରି ମଧୁବାବୁ ହୋଇଛନ୍ତି ଉତ୍କଳ ଜନନୀଙ୍କ ମୁଖପାତ୍ର । ତେଣୁ ଉତ୍କଳ ଜନନୀର ଦୁଃଖଦପୂର୍ଣ୍ଣ ମହତ୍ତ୍ୱଗୁଡ଼ିକୁ ତାର ସନ୍ତାନମାନଙ୍କ ଆଗରେ ଉନ୍ମୋଚନ କରି ଜନନୀର ବିଷାଦ ଭାଙ୍ଗିବା ପାଇଁ ମଧୁବାବୁ ତତ୍ପର । ସେ ସ୍ୱପ୍ନ ଦେଖିଛନ୍ତି

ଉତ୍କଳ ଜନନୀର ଶୋଣିତକୁ ମସ୍ତକରେ ଲେପନ କରି ଉତ୍କଳୀୟ ବୀରମାନେ ପୁନଃ ଜାଗି ଉଠିବେ ଏବଂ ଏକାଗ୍ର ଚିତ୍ତରେ ମାତୃଭୂମିର ସେବାରେ ନିୟୋଜିତ ହେବେ । ସେଥିପାଇଁ ମଧୁବାବୁ କହିଛନ୍ତି –

ବୀରପ୍ରସବିନୀ ଶୋଣିତ ରହିଛି
ତୋ ଶିରାରେ ଦେବି ଢାଳି ।
ସେ ଶୋଣିତ ବଳେ ବୁଦ୍ଧିର କୌଶଳେ
ହେବୁ ତୁହି କର୍ମବୀର,

ଉତ୍କଳୀୟ ଜନଜୀବନରେ ଆର୍ଥନୀତିକ, ସାଂସ୍କୃତିକ, ରାଜନୈତିକ ଅବବୋଧର ପରିପକ୍ୱତା ଆଣିବା ପାଇଁ ମଧୁବାବୁ ଉତ୍କଳର ସନ୍ତାନମାନଙ୍କୁ କର୍ମବୀର ହେବା ପାଇଁ ପ୍ରବୋଧିତ କହିଛନ୍ତି । ସ୍ଥାଣୁତ୍ୱ ବଦଳରେ ଚଳଚଞ୍ଚଳତା, ତୋଷାମଦ ବଦଳରେ ଆତ୍ମଅଭିମାନକୁ ଧାରଣ କରି ସମଷ୍ଟିଗତ ଉଦ୍ୟମ ଅଭିଯାତ୍ରାରେ ଉତ୍କଳୀୟ ଚେତନା ଜାଗ୍ରତ ହେବ । ତାହା ଓଡ଼ିଆ ଜାତିର ଆତ୍ମବିଶ୍ୱାସକୁ ବଢ଼ାଇବା ସହ ଓଡ଼ିଶାକୁ ଦୁର୍ଦ୍ଦିନରୁ ରକ୍ଷା କରିବ । ଏଭଳି ଆଶା ପୋଷଣ କରି ମଧୁବାବୁ ନିଜ ଜୀବନକୁ ସମ୍ପୂର୍ଣ୍ଣ ରୂପେ ସମର୍ପି ଦେଇଛନ୍ତି ଉତ୍କଳ ଭୂମିର ଉନ୍ନତି ପାଇଁ । କିନ୍ତୁ ଜୀବନର ଅପରାହ୍ଣରେ ଆଶାନୁରୂପ ଫଳ ଉପଲବ୍ଧି କରିପାରିନାହାନ୍ତି । ଏକ ନାଗରିକ ଜୀବନର ସମସ୍ତ କର୍ତ୍ତବ୍ୟକୁ ସୁଚାରୁରୂପେ ସମ୍ପାଦନ କରି ଅବଶେଷରେ ଅବଶୋଷ ନେଇ ଏ ମାଟିକୁ ପରିତ୍ୟାଗ କରିଛନ୍ତି ଏବଂ ଅଦୃଷ୍ଟ ଈଶ୍ୱରଙ୍କ ଉପରେ ଏ ସମସ୍ତ ଭାର ସତେ ଯେପରି ଅର୍ପଣ କରି ଗାଇ ଉଠିଛନ୍ତି –

ଆଶା ଥିଲା ମନେ ଦେଖିବି ଜୀବନେ
ଉତ୍କଳ-ମାତାର ସହାସ୍ୟବଦନ,
ସେ ଆଶା ତୁଟିଲା ସ୍ୱପନ ଭାଙ୍ଗିଲା
ନ ଦେଖି ଉତ୍କଳେ କରତବ୍ୟ ଜ୍ଞାନ ।

ମଧୁବାବୁଙ୍କ କବିତାବଳୀ ଆବାଳ ବୃଦ୍ଧବନିତାଙ୍କ ଉଦ୍ଦେଶ୍ୟରେ ରଚିତ । ଶିଶୁ ହେଉଛି ଜାତିର ଭବିଷ୍ୟତ, ଦେଶଗଠନରେ ତାହାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ତାର କୋମଳ ହୃଦୟରେ ଜାତୀୟତାବୋଧ ରୂପକ ଅଙ୍କୁର ରୋପଣ କଲେ ଭବିଷ୍ୟତରେ ଯେ ତାହା ଏକ ମହାଦ୍ରୁମରେ ପରିଣତ ହେବ ତାହା ମଧୁବାବୁ ବେଶ୍ ଉପଲବ୍ଧି କରିଥିଲେ । ତେଣୁ ତାଙ୍କ ରଚିତ କବିତାଗୁଡ଼ିକ ସଭା ସମିତିରେ ଯେପରି ଗାନ କରାଯାଏ, ସେହିପରି ଶିଶୁ ଶ୍ରେଣୀଠାରୁ ଆରମ୍ଭ କରି ସ୍ନାତକୋତ୍ତର ଶ୍ରେଣୀରେ ପାଠ୍ୟ ଭାବେ ନିର୍ବାଚିତ ହୋଇଥାଏ । ତେଣୁ ଶିଶୁମାନଙ୍କ ନିକଟରେ ମଧୁବାବୁ ପାଲଟି ଯାଇଛନ୍ତି ଗୋଟିଏ ମିଥ୍ । ଯାହାର ଆନ୍ତରୀଣ ଉଦ୍ଦେଶ୍ୟ ହେଉଛି ସେହି ମହାନାୟକଙ୍କ ପରି ନିଜ ଜୀବନକୁ

ଗଠନ କରିବା ଓ ଦେଶମାତୃକା ସେବାରେ ଆତ୍ମବଳି ଦେବା ।

କେବଳ କବିତା ନୁହେଁ ତାଙ୍କ ପ୍ରଦତ୍ତ ଓ ଲିଖିତ ଓଡ଼ିଆ ଭାଷଣ ତଥା ପ୍ରବନ୍ଧାବଳୀରେ ଏହି ଜାତୀୟତାବୋଧ ବେଶ୍ ପ୍ରକଟିତ । ଉତ୍କଳୀୟ ଜାତୀୟତା ଓ ଭାରତୀୟ ଜାତୀୟତା ସମ୍ପର୍କରେ ମଧୁବାବୁଙ୍କର ରହିଛି ନିଜସ୍ୱ ଦୃଷ୍ଟିଭଙ୍ଗୀ । ଉତ୍କଳ ସମ୍ମିଳନୀ ଥିଲା ତାଙ୍କ ପାଇଁ 'ଜାତୀୟ ଜୀବନର ମହାଯଜ୍ଞ' ଯାହା ସମସ୍ତ ଉତ୍କଳବାସୀଙ୍କର ମଙ୍ଗଳସାଧନ ନିମନ୍ତେ ଅଭିପ୍ରେତ । ଏକ ନିର୍ଦ୍ଦିଷ୍ଟ ସମ୍ପ୍ରଦାୟର ଉନ୍ନତି ଏହାର ଉଦ୍ଦେଶ୍ୟ ନ ଥିଲା । ପୁରୀ ଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ନବମ ଅଧିବେଶନରେ ସଭାପତି ଅଭିଭାଷଣ ଦେଇ ମଧୁବାବୁ ଏ ପ୍ରସଙ୍ଗରେ କହିଥିଲେ,

> ମୁଁ ଉତ୍କଳ ମାତାର ସନ୍ତାନ ଏବଂ ଉତ୍କଳ ଭୂମିରେ ଯେଉଁମାନେ ଜନ୍ମଗ୍ରହଣ କରିଅଛନ୍ତି ଓ ଯେଉଁମାନେ ମରଣାନ୍ତେ ତାଙ୍କର ମୃତ ଦେହକୁ ଉତ୍କଳ ମାତାର କ୍ରୋଡ଼ରେ ଅର୍ପଣ କରିବାକୁ ଇଚ୍ଛା କରନ୍ତି, ସେମାନେ ଯେଉଁ ଜାତି ହୁଅନ୍ତୁ, କି ବଙ୍ଗାଳୀ, କି ମୁସଲମାନ, କି ବ୍ରାହ୍ମଣ, କି କରଣ, କି କଣ୍ଡରା, କି ପାଣ, କି ପଞ୍ଜାବୀ, ଏ ସମସ୍ତେ ଉତ୍କଳ ସନ୍ତାନ, ଯେ ଉତ୍କଳ ମାତାର କ୍ରୋଡ଼ରେ ଜନ୍ମଗ୍ରହଣ କରିଅଛି ଏବଂ ଯେ ବିଶ୍ୱାସ କରେ କି ମୃତ୍ୟୁପରେ ଦୁର୍ଗନ୍ଧ ହେତୁ ତାହାର ମୃତ ଦେହକୁ ଜନ୍ମ ଦେଇଥିବା ମାତା ଘରୁ ବାହାର କରିଦେଲେ ସେହି ଦୁର୍ଗନ୍ଧ ଶରୀରକୁ ଉତ୍କଳମାତା ଆପଣାର କ୍ରୋଡ଼ରେ ଗ୍ରହଣ କରିବେ, ସେହି ହେଉଛି ଉତ୍କଳର ସନ୍ତାନ ।

ସମ୍ବଲପୁର ହେଉ କିମ୍ବା ଗଞ୍ଜାମ ହେଉ ତତ୍କାଳୀନ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳଗୁଡ଼ିକୁ ଓଡ଼ିଶା ସହ ଏକତ୍ର କରି ଏକ ବୃହତ୍ତର ଓଡ଼ିଆ ଜାତିର ପ୍ରତିଷ୍ଠା କରିବା ଥିଲା ମଧୁବାବୁଙ୍କ ଇଚ୍ଛା । ତେବେ ଭାରତୀୟ ଜାତୀୟତା ଏବଂ ଉତ୍କଳୀୟ ଜାତୀୟତା ସମ୍ପର୍କରେ ସେ କୁହନ୍ତି, ''ଉତ୍କଳ-ଜନନୀ ଓ ଭାରତ-ଜନନୀଙ୍କର କିଛି ପ୍ରଭେଦ ନାହିଁ । ଶରୀରର କୌଣସି ଅଂଶରେ ପୀଡ଼ା ହେଲେ, ସେହି ଅଂଶର ଚିକିତ୍ସା କରିବାକୁ ହେବ । କିନ୍ତୁ ଏହି ଅଂଶ ବିଶେଷର ଚିକିତ୍ସା ଦ୍ୱାରା ସମସ୍ତ ଶରୀରର ଉନ୍ନତି ହେବ । ଉତ୍କଳର ଚିକିତ୍ସାର ଉଦ୍ଦେଶ୍ୟ ଭାରତର ଉନ୍ନତି ।'' ତାଙ୍କ ଦୃଷ୍ଟିରେ ଉତ୍କଳ ପରି ଅନ୍ୟାନ୍ୟ ପ୍ରଦେଶଗୁଡ଼ିକ ଭାରତ ଜନନୀର ସପତ୍ନୀ ନୁହନ୍ତି ପରନ୍ତୁ ଏକାଧିକ ଶିଶୁପୁତ୍ର । ସେ ଗଭୀର ଆଶାବାଦୀ ଥିଲେ ଯେ ଏହି ଶିଶୁପୁତ୍ରମାନଙ୍କ ସହଯୋଗ ଏବଂ ସଦିଚ୍ଛାରେ ଭାରତ ଜନନୀ ହେବ ସମୃଦ୍ଧିଶାଳିନୀ । ତେବେ ଭାରତ ଅପେକ୍ଷା ଉତ୍କଳଭୂମିର ଯଥାଯଥ ଉନ୍ନତି ପାଇଁ ସେ ଥିଲେ ଅଧିକ କର୍ମତତ୍ପର ।

ମଧୁବାବୁ ଧର୍ମ ପରିବର୍ତ୍ତନ କରିଥିଲେ, କିନ୍ତୁ ସାଂପ୍ରଦାୟିକ ମନୋଭାବ ପୋଷଣ କରୁ ନଥିଲେ । ସେ ଅନୁଭବ କରିଥିଲେ ଯେ ଉତ୍କଳୀୟ ଆରାଧ୍ୟ ଦେବତା ଜଗନ୍ନାଥ

ଉତ୍କଳ ଜନନୀର ଶୋଣିତକୁ ମସ୍ତକରେ ଲେପନ କରି ଉତ୍କଳୀୟ ବୀରମାନେ ପୁନଃ ଜାଗି ଉଠିବେ ଏବଂ ଏକାଗ୍ର ଚିତ୍ତରେ ମାତୃଭୂମିର ସେବାରେ ନିୟୋଜିତ ହେବେ । ସେଥିପାଇଁ ମଧୁବାବୁ କହିଛନ୍ତି –

ବୀରପ୍ରସବିନୀ ଶୋଣିତ ରହିଛି
ତୋ ଶିରାରେ ଦେବି ଢାଳି ।
ସେ ଶୋଣିତ ବଳେ ବୁଦ୍ଧିର କୌଶଳେ
ହେବୁ ତୁହି କର୍ମବୀର,

ଉତ୍କଳୀୟ ଜନଜୀବନରେ ଆର୍ଥନୀତିକ, ସାଂସ୍କୃତିକ, ରାଜନୈତିକ ଅବବୋଧର ପରିପକ୍ୱତା ଆଣିବା ପାଇଁ ମଧୁବାବୁ ଉତ୍କଳର ସନ୍ତାନମାନଙ୍କୁ କର୍ମବୀର ହେବା ପାଇଁ ପ୍ରବୋଧିତ କହିଛନ୍ତି । ସ୍ଥାଣୁତ୍ୱ ବଦଳରେ ଚଳଚଞ୍ଚଳତା, ତୋଷାମଦ ବଦଳରେ ଆତ୍ମଅଭିମାନକୁ ଧାରଣ କରି ସମଷ୍ଟିଗତ ଉଦ୍ୟମ ଅଭିଯାତ୍ରାରେ ଉତ୍କଳୀୟ ଚେତନା ଜାଗ୍ରତ ହେବ । ତାହା ଓଡ଼ିଆ ଜାତିର ଆତ୍ମବିଶ୍ୱାସକୁ ବଢ଼ାଇବା ସହ ଓଡ଼ିଶାକୁ ଦୁର୍ଦ୍ଦିନରୁ ରକ୍ଷା କରିବ । ଏଭଳି ଆଶା ପୋଷଣ କରି ମଧୁବାବୁ ନିଜ ଜୀବନକୁ ସମ୍ପୂର୍ଣ୍ଣ ରୂପେ ସମର୍ପି ଦେଇଛନ୍ତି ଉତ୍କଳ ଭୂମିର ଉନ୍ନତି ପାଇଁ । କିନ୍ତୁ ଜୀବନର ଅପରାହ୍ନରେ ଆଶାନୁରୂପ ଫଳ ଉପଲବ୍ଧି କରିପାରିନାହାନ୍ତି । ଏକ ନାଗରିକ ଜୀବନର ସମସ୍ତେ କର୍ତ୍ତବ୍ୟକୁ ସୁଚାରୁରୂପେ ସମ୍ପାଦନ କରି ଅବଶେଷରେ ଅବଶୋଷ ନେଇ ଏ ମାଟିକୁ ପରିତ୍ୟାଗ କରିଛନ୍ତି ଏବଂ ଅଦୃଷ୍ଟ ଈଶ୍ୱରଙ୍କ ଉପରେ ଏ ସମସ୍ତ ଭାର ସତେ ଯେପରି ଅର୍ପଣ କରି ଗାଇ ଉଠିଛନ୍ତି –

ଆଶା ଥିଲା ମନେ ଦେଖିବି ଜୀବନେ
ଉତ୍କଳ-ମାତାର ସହାସ୍ୟବଦନ,
ସେ ଆଶା ତୁଟିଲା ସ୍ୱପନ ଭାଙ୍ଗିଲା
ନ ଦେଖି ଉତ୍କଳେ କରତବ୍ୟ ଜ୍ଞାନ ।

ମଧୁବାବୁଙ୍କ କବିତାବଳୀ ଆବାଳ ବୃଦ୍ଧବନିତାଙ୍କ ଉଦ୍ଦେଶ୍ୟରେ ରଚିତ । ଶିଶୁ ହେଉଛି ଜାତିର ଭବିଷ୍ୟତ, ଦେଶଗଠନରେ ତାହାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ତାର କୋମଳ ହୃଦୟରେ ଜାତୀୟତାବୋଧ ରୂପକ ଅଙ୍କୁର ରୋପଣ କଲେ ଭବିଷ୍ୟତରେ ଯେ ତାହା ଏକ ମହାଦ୍ରୁମରେ ପରିଣତ ହେବ ତାହା ମଧୁବାବୁ ବେଶ୍ ଉପଲବ୍ଧି କରିଥିଲେ । ତେଣୁ ତାଙ୍କ ରଚିତ କବିତାଗୁଡ଼ିକ ସଭା ସମିତିରେ ଯେପରି ଗାନ କରାଯାଏ, ସେହିପରି ଶିଶୁ ଶ୍ରେଣୀଠାରୁ ଆରମ୍ଭ କରି ସ୍ନାତକୋତ୍ତର ଶ୍ରେଣୀରେ ପାଠ୍ୟ ଭାବେ ନିର୍ବାଚିତ ହୋଇଥାଏ । ତେଣୁ ଶିଶୁମାନଙ୍କ ନିକଟରେ ମଧୁବାବୁ ପାଲଟି ଯାଇଛନ୍ତି ଗୋଟିଏ ମିଥ୍ । ଯାହାର ଆନ୍ତରୀଣ ଉଦ୍ଦେଶ୍ୟ ହେଉଛି ସେହି ମହାନାୟକଙ୍କ ପରି ନିଜ ଜୀବନକୁ

ଗଠନ କରିବା ଓ ଦେଶମାତୃକା ସେବାରେ ଆତ୍ମବଳି ଦେବା ।

କେବଳ କବିତା ନୁହେଁ ତାଙ୍କ ପ୍ରଦତ୍ତ ଓ ଲିଖିତ ଓଡ଼ିଆ ଭାଷଣ ତଥା ପ୍ରବନ୍ଧାବଳୀରେ ଏହି ଜାତୀୟତାବୋଧ ବେଶ୍ ପ୍ରକଟିତ । ଉତ୍କଳୀୟ ଜାତୀୟତା ଓ ଭାରତୀୟ ଜାତୀୟତା ସମ୍ପର୍କରେ ମଧୁବାବୁଙ୍କର ରହିଛି ନିଜସ୍ୱ ଦୃଷ୍ଟିଭଙ୍ଗୀ । ଉତ୍କଳ ସମ୍ମିଳନୀ ଥିଲା ତାଙ୍କ ପାଇଁ 'ଜାତୀୟ ଜୀବନର ମହାଯଜ୍ଞ' ଯାହା ସମସ୍ତ ଉତ୍କଳବାସୀଙ୍କର ମଙ୍ଗଳସାଧନ ନିମନ୍ତେ ଅଭିପ୍ରେତ । ଏକ ନିର୍ଦ୍ଦିଷ୍ଟ ସମ୍ପ୍ରଦାୟର ଉନ୍ନତି ଏହାର ଉଦ୍ଦେଶ୍ୟ ନ ଥିଲା । ପୁରୀ ଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ନବମ ଅଧିବେଶନରେ ସଭାପତି ଅଭିଭାଷଣ ଦେଇ ମଧୁବାବୁ ଏ ପ୍ରସଙ୍ଗରେ କହିଥିଲେ,

> ମୁଁ ଉତ୍କଳ ମାତାର ସନ୍ତାନ ଏବଂ ଉତ୍କଳ ଭୂମିରେ ଯେଉଁମାନେ ଜନ୍ମଗ୍ରହଣ କରିଅଛନ୍ତି ଓ ଯେଉଁମାନେ ମରଣାନ୍ତେ ତାଙ୍କର ମୃତ ଦେହକୁ ଉତ୍କଳ ମାତାର କ୍ରୋଡ଼ରେ ଅର୍ପଣ କରିବାକୁ ଇଚ୍ଛା କରନ୍ତି, ସେମାନେ ଯେଉଁ ଜାତି ହୁଅନ୍ତୁ, କି ବଙ୍ଗାଳୀ, କି ମୁସଲମାନ, କି ବ୍ରାହ୍ମଣ, କି କରଣ, କି କଣ୍ଡରା, କି ପାଣ, କି ପଞ୍ଜାବୀ, ଏ ସମସ୍ତେ ଉତ୍କଳ ସନ୍ତାନ, ଯେ ଉତ୍କଳ ମାତାର କ୍ରୋଡ଼ରେ ଜନ୍ମଗ୍ରହଣ କରିଅଛି ଏବଂ ଯେ ବିଶ୍ୱାସ କରେ କି ମୃତ୍ୟୁପରେ ଦୁର୍ଗନ୍ଧ ହେତୁ ତାହାର ମୃତ ଦେହକୁ ଜନ୍ମ ଦେଇଥିବା ମାତା ଘରୁ ବାହାର କରିଦେଲେ ସେହି ଦୁର୍ଗନ୍ଧ ଶରୀରକୁ ଉତ୍କଳମାତା ଆପଣାର କ୍ରୋଡ଼ରେ ଗ୍ରହଣ କରିବେ, ସେହି ହେଉଛି ଉତ୍କଳର ସନ୍ତାନ ।

ସମ୍ବଲପୁର ହେଉ କିମ୍ବା ଗଞ୍ଜାମ ହେଉ ତତ୍କାଳୀନ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳଗୁଡ଼ିକୁ ଓଡ଼ିଶା ସହ ଏକତ୍ର କରି ଏକ ବୃହତ୍ତର ଓଡ଼ିଆ ଜାତିର ପ୍ରତିଷ୍ଠା କରିବା ଥିଲା ମଧୁବାବୁଙ୍କ ଇଚ୍ଛା । ତେବେ ଭାରତୀୟ ଜାତୀୟତା ଏବଂ ଉତ୍କଳୀୟ ଜାତୀୟତା ସମ୍ପର୍କରେ ସେ କୁହନ୍ତି, ''ଉତ୍କଳ-ଜନନୀ ଓ ଭାରତ-ଜନନୀଙ୍କର କିଛି ପ୍ରଭେଦ ନାହିଁ । ଶରୀରର କୌଣସି ଅଂଶରେ ପୀଡ଼ା ହେଲେ, ସେହି ଅଂଶର ଚିକିତ୍ସା କରିବାକୁ ହେବ । କିନ୍ତୁ ଏହି ଅଂଶ ବିଶେଷର ଚିକିତ୍ସା ଦ୍ୱାରା ସମସ୍ତ ଶରୀରର ଉନ୍ନତି ହେବ । ଉତ୍କଳର ଚିକିତ୍ସାର ଉଦ୍ଦେଶ୍ୟ ଭାରତର ଉନ୍ନତି ।'' ତାଙ୍କ ଦୃଷ୍ଟିରେ ଉତ୍କଳ ପରି ଅନ୍ୟାନ୍ୟ ପ୍ରଦେଶଗୁଡ଼ିକ ଭାରତ ଜନନୀର ସପତ୍ନୀ ନୁହନ୍ତି ପରନ୍ତୁ ଏକାଧିକ ଶିଶୁପୁତ୍ର । ସେ ଗଭୀର ଆଶାବାଦୀ ଥିଲେ ଯେ ଏହି ଶିଶୁପୁତ୍ରମାନଙ୍କ ସହଯୋଗ ଏବଂ ସଦିଚ୍ଛାରେ ଭାରତ ଜନନୀ ହେବ ସମୃଦ୍ଧିଶାଳିନୀ । ତେବେ ଭାରତ ଅପେକ୍ଷା ଉତ୍କଳଭୂମିର ଯଥାଯଥ ଉନ୍ନତି ପାଇଁ ସେ ଥିଲେ ଅଧିକ କର୍ମତତ୍ପର ।

ମଧୁବାବୁ ଧର୍ମ ପରିବର୍ତ୍ତନ କରିଥିଲେ, କିନ୍ତୁ ସାଂପ୍ରଦାୟିକ ମନୋଭାବ ପୋଷଣ କରୁ ନଥିଲେ । ସେ ଅନୁଭବ କରିଥିଲେ ଯେ ଉତ୍କଳୀୟ ଆରାଧ୍ୟ ଦେବତା ଜଗନ୍ନାଥ

ଓଡ଼ିଆର ଜାତୀୟ ଜୀବନର ଏକ ଅବିଚ୍ଛିନ୍ନ ଅଙ୍ଗ ଏବଂ ଯଦି ଓଡ଼ିଶାକୁ ଗୋଟିଏ ସୂତ୍ରରେ ବାନ୍ଧି ହେବ ଧର୍ମର ଦ୍ୱାହି ଦେଇ ତେବେ ତାହା ହେବ ଜଗନ୍ନାଥ ଧର୍ମ । ତେଣୁ ଏହି ଧର୍ମର ପ୍ରତୀକ ଜଗନ୍ନାଥଙ୍କୁ ମାଧମ/ ପ୍ରତୀକ ରୂପେ ସେ ବ୍ୟବହାର କରିଛନ୍ତି ଜାତୀୟତା ବୋଧ ସୃଷ୍ଟି କରିବା ପାଇଁ । ତେବେ ଜଗନ୍ନାଥଚେତନା ପ୍ରସାର ପାଇଁ ଭାବବାଦୀ ହୋଇନାହାନ୍ତି ମଧୁବାବୁ । ପରନ୍ତୁ ହିନ୍ଦୁଧର୍ମାବଲମ୍ବୀ ଓଡ଼ିଶାର ଅଧିବାସୀମାନଙ୍କ ଜଗନ୍ନାଥ ତତ୍ତ୍ୱର ମହନୀୟତା ଓ କ୍ଷେତ୍ର ମାହାତ୍ମ୍ୟକୁ ମଧୁବାବୁ ଜାତୀୟତାବୋଧରେ ରୂପାନ୍ତରିତ କରିଛନ୍ତି । ଉତ୍କଳର ଇତିହାସରେ ଜଗନ୍ନାଥ ଏକ ଅକଳ୍ପନୀୟ ପ୍ରତୀକ ଭାବେ ଅବତୀର୍ଣ୍ଣ ହୋଇଛନ୍ତି । ଖ୍ରୀଷ୍ଟିୟାନ ହେଲେ ମଧ ସତୀ ପ୍ରଥାକୁ ସେ ସମର୍ଥନ କରନ୍ତି ତଥା ପରଂପରା ମଧରେ ବ୍ୟକ୍ତିର ଯଥାର୍ଥ ବିକାଶ ଯେ ସମ୍ଭବ, ତାହା ଦୃଢ଼ତାର ସହ କହିଥାନ୍ତି । ତାଙ୍କ ଧମନୀରେ ସତୀ ରକ୍ତ ପ୍ରବାହିତ ହେଉଥିବାର ଗୌରବକୁ ସେ ବାରମ୍ବାର ସ୍ମରଣ କରିଛନ୍ତି । ଏତଦ୍ ବ୍ୟତୀତ ମୁସଲମାନମାନଙ୍କୁ ବିଭିନ୍ନ ସଭାସମିତିରେ ଉଦ୍‌ବୋଧନ ଦେଇ ସେମାନଙ୍କ ଉନ୍ନତି ପାଇଁ ଚିନ୍ତାପ୍ରକଟ କରିଛନ୍ତି । ଅପର ପକ୍ଷରେ ଗୋବଧନିବାରଣ ପାଇଁ ମଧ ଜନଜାଗରଣ ସୃଷ୍ଟି କରିଛନ୍ତି ମଧୁବାବୁ । ହିନ୍ଦୁ, ମୁସଲମାନ ଏବଂ ଖ୍ରୀଷ୍ଟିୟାନ – ଏହି ତିନି ଧର୍ମାବଲମ୍ବୀ ଓଡ଼ିଶାବାସୀଙ୍କୁ ଧାର୍ମିକ ଆଚାର ବିଚାର ନିର୍ବିଶେଷରେ ଏକତ୍ର ସହାବସ୍ଥାନ ପାଇଁ ମଧୁବାବୁ ଆହ୍ୱାନ ଦେଇଛନ୍ତି । ଧର୍ମ ଦୃଷ୍ଟିରୁ କେବଳ ନୁହେଁ, ଭାରତର ବିଭିନ୍ନ ପ୍ରାନ୍ତରୁ ଦୀର୍ଘଦିନ ଧରି ଯେଉଁମାନେ ଓଡ଼ିଶାରେ ଅବସ୍ଥାନ କରିଛନ୍ତି ସେମାନେ ଓଡ଼ିଶାକୁ ନିଜ ମାତୃଭୂମି ଭାବେ ଗ୍ରହଣ କରିବା ଉଚିତ । ଏହି ପରିପ୍ରେକ୍ଷୀରେ ଉତ୍କଳ ସମ୍ମିଳନୀର ଦ୍ୱିତୀୟ ଅଧିବେଶନରେ ମଧୁବାବୁ ଭାରତୀୟ ଜାତୀୟ କଂଗ୍ରେସ ସହିତ ଉତ୍କଳ ସମ୍ମିଳନୀକୁ ତୁଳନା କରି କୁହନ୍ତି :

> ଏହି ସମ୍ମିଳନୀ ସଭାରେ ଉତ୍କଳୀୟ, ବଙ୍ଗୀୟ, ତେଲୁଗୁ, ରାଜପୁତ,ମାରୱାଡ଼ି ପ୍ରଭୃତି ବିଭିନ୍ନ ଜାତୀୟ ପ୍ରତିନିଧିମାନେ ଉପସ୍ଥିତ ହୋଇଅଛନ୍ତି । ଏହା ଯେବେ ଭାରତୀୟ ଅନୁଷ୍ଠାନ ମଧରେ ଗଣ୍ୟ ନ ହେବ, ତେବେ କଂଗ୍ରେସ କଦାପି ଜାତୀୟ ଅନୁଷ୍ଠାନ ମଧରେ ଗଣ୍ୟ ହୋଇ ନ ପାରେ ।

ଯଦିଓ ମଧୁବାବୁ ଭାରତୀୟ ମୁକ୍ତି ସଂଗ୍ରାମରେ କଂଗ୍ରେସର ଆଭିମୁଖ୍ୟକୁ ବିରୋଧ କରିନାହାନ୍ତି ତେବେ ତାଙ୍କ ଦୃଷ୍ଟିରେ କଂଗ୍ରେସ ପରି ଉତ୍କଳ ସମ୍ମିଳନୀ ହୋଇଛି ସମ ମର୍ଯ୍ୟାଦାପୂର୍ଣ୍ଣ ଜାତୀୟ ଅନୁଷ୍ଠାନ । ଉତ୍କଳ ସମ୍ମିଳନୀର ପ୍ରାଥମିକ କାର୍ଯ୍ୟ ହୋଇଛି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଏବଂ ଉତ୍କଳୀୟମାନଙ୍କ ସାମୂହିକ ଉନ୍ନତି ପାଇଁ ସଂଘବଦ୍ଧ ନିଷ୍ପତ୍ତି । ମଧୁବାବୁ ଇଂଲଣ୍ଡ ଏବଂ ଏହାର ଅଧିବାସୀଙ୍କୁ ମଡ଼େଲ ଭାବେ ଗ୍ରହଣ କରିଛନ୍ତି । ଇଂରେଜ ଜାତିର ଜାତୀୟ ଭାବନା ଏବଂ ସେମାନଙ୍କ କର୍ମନିଷ୍ଠା ଉତ୍କଳୀୟମାନେ ଗ୍ରହଣ କଲେ ଏହି ଭୂମି ନିଶ୍ଚୟ ଉନ୍ନତି ପଥରେ ଅଗ୍ରସର ହେବ ବୋଲି ମଧୁବାବୁ ବହୁ ସ୍ଥାନରେ

ଉଲ୍ଲେଖ କରିଛନ୍ତି । ଏହାକୁ ମଧୁବାବୁଙ୍କ ଆଧୁନିକମନସ୍କତା ବୋଲି କୁହାଯାଇପାରେ । ସେ ଅନୁଭବ କରିଥିଲେ, ଗୋଟିଏ ଜାତିର ସ୍ୱାଭିମାନ ପ୍ରତିଷ୍ଠିତ ହୋଇଥାଏ ତାର ଭାଷା, ସାହିତ୍ୟ, ଶିଳ୍ପ, ସଂସ୍କୃତି, ଅର୍ଥନୀତି, ଶିକ୍ଷାନୀତି ତଥା ରାଜନୈତିକ କାର୍ଯ୍ୟକାରିତାକୁ କେନ୍ଦ୍ରକରି । ଏଗୁଡ଼ିକର ଉତ୍ତରଣ ପାଇଁ ଯେଉଁ ପ୍ରତିବଦ୍ଧତାର ଆବଶ୍ୟକ ହୁଏ ତାର ମୂଳକେନ୍ଦ୍ରରେ ରହିଛି ଆଧୁନିକମନସ୍କତା । ଏହି ଆଧୁନିକମନସ୍କତାକୁ ଧାରଣ କରିବା ନିମନ୍ତେ ମଧୁବାବୁଙ୍କର ଥିଲା ଏକ ପରିଶୀଳିତ ଚିତ୍ତବୃତ୍ତି । ସେ ଅନୁଭବ କରିଥିଲେ, ଆଧୁନିକତା ପ୍ରାପ୍ତିର ମାର୍ଗ ସହଜ ସୁଗମ ନୁହେଁ, ପରନ୍ତୁ ଏହା ସଂଘର୍ଷ, ଯନ୍ତ୍ରଣା, ରକ୍ତକ୍ଷରଣ ଉପରେ ପର୍ଯ୍ୟବସିତ; ଏହା ବ୍ୟକ୍ତିକୁ ଆତ୍ମପରିଚୟର ସଂକଟରୁ ମୁକ୍ତ କରିବା ସହିତ ତାହା ମଧ୍ୟରେ ଅସ୍ମିତାବୋଧକୁ ଉଦ୍ଦୀପ୍ତ କରେ, ନିଜସ୍ୱ ପରିମଣ୍ଡଳଟିଏ ନିର୍ମାଣ କରି ସ୍ୱଚ୍ଛନ୍ଦରେ ଆତ୍ମଅଭିମାନ ସହିତ ବଞ୍ଚିବାକୁ ସମର୍ଥ କରେ । ସ୍ୱାଭିମାନ ଓ ଆତ୍ମପରିଚିତ ସହ ଓଡ଼ିଆ ଜାତି ସକ୍ଷମ ହେବା ଆବଶ୍ୟକ ବୋଲି ମଧୁବାବୁ ଚାହୁଁଥିଲେ । ଶହ ଶହ ବର୍ଷ ଧରି ଯେଉଁ ପ୍ରାଚୁର୍ଯ୍ୟପୂର୍ଣ୍ଣ ସଂସ୍କୃତି ତଥା ଐତିହ୍ୟକୁ ଆଶ୍ରୟ କରି ଓଡ଼ିଆ ଜାତିର ଅସ୍ତିତ୍ୱ ବିକଶିତ ହୋଇଛି ତା'ର ସ୍ୱରୂପଟିକୁ ଆକଳନ କରିବା ପାଇଁ ମଧୁବାବୁ ଚେଷ୍ଟା କରିଥିଲେ । ତେଣୁ ଏହି ମାଟିର ପରମ୍ପରା ଓ ମୂଲ୍ୟବୋଧ ସମ୍ପର୍କରେ ସେ ଥିଲେ ଗଭୀର ଭାବେ ସଚେତନ ।

ଇଉରୋପୀୟ ଶିଳ୍ପ ବିପ୍ଳବ ଏବଂ ତହିଁରୁ ଉଦ୍ଭୁତ ଶ୍ରମ, ଶ୍ରମିକ ଓ ଉଦ୍‌ବୃତ୍ତ ଅର୍ଥ ସମ୍ପର୍କୀୟ କାର୍ଲମାର୍କସ୍‌ଙ୍କ ଦର୍ଶନ ତଥା ଋଷ ବିପ୍ଳବର ମୂଳକାରଣଗୁଡ଼ିକୁ ମଧୁବାବୁ ତର୍ଜମା କରିଥିଲେ ନିଜ ମାନସ ରାଜ୍ୟରେ । ଶିଳ୍ପର ବିକାଶ ପାଇଁ ଯୋଜନାବଦ୍ଧ ଭାବେ କାର୍ଯ୍ୟ ଆରମ୍ଭ କରିଥିଲେ । ଏ ସମ୍ପର୍କରେ ସୁରେନ୍ଦ୍ର ମହାନ୍ତି କହନ୍ତି :

> ବିଲାତରୁ ଫେରିବା ପରଠାରୁ ମଧୁସୂଦନଙ୍କ ଭାବନାରେ ଶିଳ୍ପ ବିପ୍ଳବର ଯେଉଁ ଆଲୋଡ଼ନ ସୃଷ୍ଟି କରିଥିଲା; ଓଡ଼ିଶା ଆର୍ଟ ୱେଆରସ ଥିଲା ତାହାର ଏକ ପରିଣତି । ମାତ୍ର ବୃହତ୍ତର ଓ ବ୍ୟାପକତର ପରିବେଶରେ ଓଡ଼ିଶାର ଶିଳ୍ପାୟନ ପାଇଁ ତାଙ୍କର ଉଦ୍ୟମ ଓ ଯୋଜନାର ଅନ୍ତ ନ ଥିଲା । ବସ୍ତୁତଃ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଉଦ୍ୟମ ସହିତ ଓଡ଼ିଶାର ଶିଳ୍ପାୟନକୁ ସମନ୍ୱିତ କରିବା ତାଙ୍କ ରାଜନୈତିକ ଚିନ୍ତାର କେନ୍ଦ୍ରବିନ୍ଦୁରେ ପରିଣତ ହୋଇପଡ଼ିଥିଲା । (୧୯୭୭: ପୃ.୫୦୭)

ମଧୁବାବୁ ବୁଝିଥିଲେ ଓଡ଼ିଶା ଅର୍ଥନୀତିର ଅଧୋଗତିର ମୂଳ କାରଣ ହେଉଛି ଦେଶୀୟ ଶିଳ୍ପର ଅଧଃପତନ । ଶ୍ରମର ମର୍ଯ୍ୟାଦା ହିଁ ଜାତି ଗଠନର ମୂଳଦୁଆ ଏବଂ ଶିଳ୍ପ ଉଦ୍ୟୋଗ ପାଇଁ ପୁଞ୍ଜି ଅଭିନିବେଶ ବାହାର ପୁଞ୍ଜିରୁ ନୁହେଁ ପରନ୍ତୁ ଦେଶୀୟ ପୁଞ୍ଜି ଏବଂ ସାଧାରଣ ମଣିଷର ଶ୍ରମରୁ ସଂଜାତ ହେବା ଉଚିତ । ସାଧାରଣ ମଣିଷ ନିଜ ଶ୍ରମ ଦେଇ ଉତ୍ପାଦନ କରିବ ଉତ୍କୃଷ୍ଟ ସାମଗ୍ରୀ ଏବଂ ତାହା କେବଳ ତାର

ଭରଣପୋଷଣରେ ସହାୟକ ହେବନି ପରନ୍ତୁ ତା' ଜାତିର ମହାନୀୟତା ସେଥିରେ ପ୍ରକାଶିତ ହେବ । ମଧୁବାବୁଙ୍କ ଶିକ୍ଷନୀତି ସମ୍ପର୍କରେ କର୍ଟନୀ ଟେରେଲ କୁହନ୍ତି,

> In the realisation that material prosperity could come only from industry and practical effort and was no matter political catch words he was for in advance of his people and his age. His courage in undertaking industrial enterprise for the common good, ill equipped as he was with technical knowledge and disinterested assistance, was very wonderful. His very failures should be a source of inspiration for the future. (Dash: 2002: P. 54)

ଶିଳ୍ପ ପ୍ରତିଷ୍ଠା କରି ସାମନ୍ତ ହେବାକୁ ମଧୁବାବୁ ଚାହିଁ ନଥିଲେ ଅବା ତଥାକଥିତ ପାର୍ଥିବ ସାଫଲ୍ୟର ଆକାଂକ୍ଷିତ କୁଞ୍ଜବନକୁ ସେ ଫେରିଯାଇ ନ ଥିଲେ । ତାଙ୍କର ଇଚ୍ଛା, ଆକାଂକ୍ଷା ଏବଂ ସ୍ୱପ୍ନ କେନ୍ଦ୍ରୀଭୂତ ହୋଇଥିଲା ଓଡ଼ିଶା ମାଟି ପାଇଁ । ଯାହା ତାଙ୍କ ଜୀବନକୁ ନିତ୍ୟ ନୂତନ କରି ଗଢ଼ିତୋଳିଛି ଏବଂ ସେଇ ଅବିଶ୍ରାନ୍ତ ଧାରା ଭିତରେ ସେ ବହୁ କିଛି ପରିକଳ୍ପନା କରିଛନ୍ତି ।

ଉତ୍କଳ ସମ୍ମିଳନୀ ଥିଲା ଓଡ଼ିଆ ଆତ୍ମାର ମିଳନ କ୍ଷେତ୍ର । ଉତ୍କଳ ସମ୍ମିଳନୀର ଅଙ୍ଗନରେ ସେ ସ୍ୱପ୍ନ ଦେଖିଥିଲେ ପ୍ରାକୃତିକ ଉତ୍କଳର ସ୍ୱାଧୀନତା, ପ୍ରବାସୀ ଉତ୍କଳୀୟମାନଙ୍କ ସ୍ୱାର୍ଥ ସଂରକ୍ଷଣ ସହିତ ଗୋଟିଏ ସୂତ୍ରରେ ସମସ୍ତଙ୍କୁ ବାନ୍ଧି ରଖିବାର ପ୍ରୟାସ ଏବଂ ମା' ମାଟି ଓ ମାତୃଭୂମିର ସନ୍ଧାନ – ଜଗତାୟନ ପରିପ୍ରେକ୍ଷୀରେ ବର୍ତ୍ତମାନ ଯାହାର ଗୁରୁତ୍ୱକୁ ଆମେ ଅସ୍ୱୀକାର କରିପାରିବା ନାହିଁ । ବହୁ ଅସ୍ମିତାର ଅଧିକାରୀ ମଧୁବାବୁ ପ୍ରଥମେ ନିଜ ଜାତିର ପ୍ରାଣ ସ୍ପନ୍ଦନକୁ ଅନୁଭବ କରିଥିଲେ; ପରେ ସେ ରାଷ୍ଟ୍ରର କଥା କହୁଥିଲେ । ମାଟି ମା' ପାଇଁ ବ୍ୟାକୁଳତାର ତୀବ୍ରତା ସୃଷ୍ଟି ନ ହେଲେ ଜାତୀୟ ଭାବନା ସୃଷ୍ଟି ଯେ ଅସମ୍ଭବ ତାହା ସେ ବୁଝିଥିଲେ । ତାଙ୍କର ହାତଗଣତି କେତୋଟି କବିତା ଓଡ଼ିଆ ପ୍ରାଣରେ ସଂଚାରିତ କରିଛି ଜାତୀୟତାବାଦର ଜୁଆର ଯାହା ପୂର୍ବରୁ ଆଲୋଚିତ ହୋଇଛି । ଓଡ଼ିଆମାନଙ୍କ ମଧ୍ୟରେ ଥିବା କୁତ୍ସିତ ଜାତିଆଣକୁ ସେ କେବଳ ଘୃଣା କରୁ ନଥିଲେ ବରଂ ମାନବବାଦର ମହତ୍ତ୍ୱକୁ ଉପଲବ୍ଧି କରି ମୋଚିମାନଙ୍କ କାନ୍ଧରେ କାନ୍ଧ ମିଳାଇ ନିର୍ମାଣ କରିଥିଲେ ଉତ୍କଳ ଟାନେରୀ କମ୍ପାନୀ । ଏପରିକି ଉତ୍କଳ ସମ୍ମିଳନୀର ସଭା ମଞ୍ଚ ଉପରେ ନ ବସି ସେଇ ଦଳିତ ନିମ୍ନଜାତିମାନଙ୍କ ସହିତ ମଞ୍ଚ ତଳେ ବସୁଥିଲେ । ଅସ୍ପୃଶ୍ୟତା ତଥା ପଛୁଆବର୍ଗ ପ୍ରତି ହେୟ ମନୋଭାବକୁ ମଧୁବାବୁ ତୀବ୍ର ନିନ୍ଦା କରିଛନ୍ତି । ଗାନ୍ଧିଜୀଙ୍କୁ ତାହା ବିଶେଷ ଭାବେ ପ୍ରୋତ୍ସାହିତ କରିଛି ଭାରତୀୟ ମୁକ୍ତି ସଂଗ୍ରାମରେ । ମଧୁବାବୁଙ୍କ ଦେହାନ୍ତ ଅବସରରେ (ପ୍ରକୃତରେ ସେତେବେଳେ

ମଧୁବାବୁଙ୍କର ଦେହାନ୍ତ ହୋଇ ନ ଥିଲା) ବମ୍ବେ କ୍ରୋନିକିଲସ୍‌ରେ ୧୫ ନଭେମ୍ବର ୧୯୩୨ ମସିହାରେ ଗାନ୍ଧିଜୀ ମଧୁବାବୁଙ୍କ ସ୍ମୃତି ଚାରଣ କରି ଲେଖିଥିଲେ –

The late Madhusudan Das was a great philanthropist and had himself learnt the modern process of tanning, had prepared statistics to show what the country was losing annually owing to the superistition of untouchability masquerdding under the name of religion. Harijan workers can learn the modern method and acquaint the tanners with it in so for as it is practicable.(Dash: 2002: P. 76)

ଓଡ଼ିଶାର ଅର୍ଥନୀତିର ବିକାଶ କ୍ଷେତ୍ରରେ ଶିଳ୍ପର ଆବଶ୍ୟକତାକୁ ମଧୁବାବୁ ଅନୁଭବ କରୁଥିଲେ ମଧ କୃଷି ଓ କୃଷକର ସାମାଜିକ ତଥା ଅର୍ଥନୈତିକ ଦାୟିତ୍ୱବୋଧକୁ ସେ ହୃଦୟଙ୍ଗମ କରିଥିଲେ । ଦେଶୀୟ ତଥା ବଂଗୀୟ ଜମିଦାରମାନଙ୍କ ଦ୍ୱାରା କୃଷକମାନଙ୍କ ଉପରେ ବାରମ୍ବାର ବିବିଧ କର ବସାଇବା ଦ୍ୱାରା କୃଷକମାନଙ୍କ ଅର୍ଥନୈତିକ ମେରୁଦଣ୍ଡ ଭାଙ୍ଗିଯାଇଥିଲା । ଏହାର ପ୍ରତିକାର ପାଇଁ ଏବଂ ବଂଗୀୟ ଜମିଦାରମାନଙ୍କ ସ୍ୱାର୍ଥାନ୍ୱେଷୀ ମନୋଭାବକୁ ବିରୋଧ କରି ବେଙ୍ଗଲ ଆସେମ୍ବିଲରେ ଆଗତ ବିଲ୍‌କୁ ନିନ୍ଦା କରିଥିଲେ ଏବଂ ସେଥିରେ ସେ ସଫଳ ମଧ ହୋଇଥିଲେ । କୃଷି ଓ କୃଷକ ସମ୍ପର୍କରେ ମଧୁବାବୁ ଉତ୍କଳ ସମ୍ମିଳନୀର ମଞ୍ଚରେ କହିଥିଲେ :

ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ ଓଡ଼ିଆ ଜାତିକୁ ଉଠାଇବା । ଓଡ଼ିଆ ଜାତିରେ କୃଷକମାନଙ୍କ ସଂଖ୍ୟା ବେଶୀ; ତେଣୁ ସେମାନଙ୍କ ଉନ୍ନତି ନ ହେଲେ, ଦେଶର ଆଉ କି ଉନ୍ନତି ? ସେମାନେ ଭୂମି କର୍ଷଣ କରି ଆମ୍ଭମାନଙ୍କୁ ଧାନ ଚାଉଳ ଦେଉଛନ୍ତି । ସେମାନେ ହିଁ ଉତ୍କଳ ମାତାଙ୍କର ପ୍ରଧାନ ସେବକ, ସେମାନଙ୍କୁ ଉତ୍କଳ ଜନନୀ ସ୍ତନ୍ୟପାନ କରାନ୍ତି । ଆମ୍ଭମାନଙ୍କ ଦେଶର ରାଜା ଜମିଦାରଗଣ ଶରୀରର ବକ୍ଷ ପରି । ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗର ଶିରା ପ୍ରଶିରାରୁ ବକ୍ଷକୁ ରକ୍ତ ଯାଏ । ବକ୍ଷ ରକ୍ତ ପରିଷ୍କାର କରି ଶରୀରର ନାନା ସ୍ଥାନକୁ ପ୍ରେରଣ କଲେ ଅଙ୍ଗ ପ୍ରତ୍ୟଙ୍ଗ ସବଳ ସତେଜ ହୁଅନ୍ତି । ପ୍ରଜାଗଣ ଅଙ୍ଗ ପ୍ରତ୍ୟଙ୍ଗ ପରି । ସେମାନଙ୍କ ଉପାର୍ଜିତ ଶକ୍ତି ରକ୍ତ ସ୍ୱରୂପ ଜମିଦାର ଖମାରରେ ପ୍ରବେଶ କରୁଅଛି । ଜମିଦାରି ଯଦି ସେ ସବୁ ନିର୍ମଳ କରି ପ୍ରଜାମାନଙ୍କ ମଧ୍ୟରେ ସେମାନଙ୍କ ଉନ୍ନତି ସାଧନରେ ବ୍ୟୟ କରନ୍ତି, ସମାଜର ଶରୀର ସୁସ୍ଥ ଅବସ୍ଥାରେ ରହିବ । (ଦାଶ: ୧୯୭୧: ପୃ.୨୪୩-୪୪)

ଜାତୀୟ ଆତ୍ମବୋଧ ସମସ୍ତଙ୍କ ପ୍ରାଣରେ ଆଣିବା ପାଇଁ ମଧୁବାବୁ ସଯତ୍ନ ପ୍ରୟାସ କରିଥିଲେ । ସେ ବୁଝିଥିଲେ ଯେ କୃଷକ ହିଁ ଏ ଜାତିର ଆତ୍ମା । ତେଣୁ କୃଷକର ସକଳ କ୍ଷେତ୍ରରେ ଉନ୍ନତି ଆଣିବା ପାଇଁ ସେ ପ୍ରାଣପଣେ ଚେଷ୍ଟା କରିଥିଲେ । ତାଙ୍କର ଏହି ଉଦ୍ୟମକୁ

ଭୂୟସୀ ପ୍ରଶଂସା କରି ହ୍ୟୁଗ୍ ମାକ୍‌ଫରସନ୍ କହିଥିଲେ, ''When any question arose affecting the rights and interests of the cultivators, he always championed their cause."(Dash: 2002. P.52)

ସମାଜରେ ନାରୀ ପ୍ରତି ଥିବା ମଧ୍ୟଯୁଗୀୟ ମନୋବୃତ୍ତିକୁ ମଧୁବାବୁ ଭାଙ୍ଗିବାକୁ ଚେଷ୍ଟା କରିଛନ୍ତି । ନାରୀ ଜାତିର ଶିକ୍ଷା ଏକାନ୍ତ ଅନିବାର୍ଯ୍ୟ ବୋଲି ମଧୁବାବୁ ଅନୁଭବ କରିଛନ୍ତି । ତତ୍କାଳୀନ ସାହିତ୍ୟରେ ନାରୀର ରୂପସୌନ୍ଦର୍ଯ୍ୟ ବର୍ଣ୍ଣନାରେ ମଧୁବାବୁ ପୁରୁଷତନ୍ତ୍ରର ପ୍ରାବଲ୍ୟ ଲକ୍ଷ୍ୟ କରିଛନ୍ତି । ତେଣୁ ଲେଖକମାନେ ନାରୀ ଜାତିର ଅଭ୍ୟୁଥାନର ପରିପନ୍ଥୀ ବୋଲି ସେ ଦର୍ଶାଇଛନ୍ତି । ୧୯୧୩ ମସିହା ଉତ୍କଳ ସମ୍ମିଳନୀର ସଭାପତି ଅଭିଭାଷଣରେ ମଧୁବାବୁ କହିଛନ୍ତି :

ଇତିହାସ ଲିଖିତ ପୁରାକାଳରେ ଆମ୍ଭମାନଙ୍କର ଗୌରବାନ୍ୱିତ ଅବସ୍ଥା ସ୍ମରଣ କରି ଆମ୍ଭେମାନେ ଆସ୍ଫାଳନ କରିଥାଉ । କିନ୍ତୁ ତେତେବେଳେ ଜାତି ବୋଇଲେ କେବଳ ପୁରୁଷମାନଙ୍କୁ ବୁଝାଏ । ଜାତିର କୌଣସି କାର୍ଯ୍ୟରେ ସ୍ତ୍ରୀମାନେ ଯୋଗ ଦିଅନ୍ତି ନାହିଁ କିମ୍ବା ସେରୂପ କାର୍ଯ୍ୟରେ ସେମାନେ ଆମ୍ଭଙ୍କୁ ସାହାଯ୍ୟ କରିବା ଆମ୍ଭେମାନେ ଇଚ୍ଛା କରନାହୁଁ । ଓଡ଼ିଶାର ବର୍ତ୍ତମାନ ସୁଶିକ୍ଷିତ ଲୋକମାନଙ୍କ ମଧରେ ପୁସ୍ତକ ଲେଖିବାର ଇଚ୍ଛା ଅତିଶୟ ବଳବତୀ ହେବାର ଦେଖାଯାଏ । ଅନେକ କବିତା ରଚିତ ହେଉଅଛି । ନାଟକ ଲେଖିବାର ଇଚ୍ଛା ମଧ ପ୍ରବଳ ହୋଇଥିବାର ବୋଧ ହୁଏ । ମୁଁ ଗ୍ରନ୍ଥକର୍ତ୍ତାମାନଙ୍କ ଅନୁଗ୍ରହରୁ ପୁସ୍ତକ ସବୁ ପାଇଥାଏ । ସେ ସବୁ ପୁସ୍ତକ ମଧରୁ ଅଧିକାଂଶରେ ଦେଖାଯାଏ ଯେ ଲେଖକ ମାନସିକ ଚିତ୍ରପଟରେ ସ୍ତ୍ରୀ ଜାତିର ମାଧୁର୍ଯ୍ୟ ପ୍ରକୃତି ସ୍ଥାପନ କରି ଲେଖନୀ ପରିଚାଳନା କରିଅଛନ୍ତି । ଅଥଚ ଅନୁସନ୍ଧାନ କଲେ ଦେଖାଯାଏ ଯେ ଅନେକ ସ୍ଥଳରେ ଲେଖକ କାର୍ଯ୍ୟରେ ସ୍ତ୍ରୀ ଶିକ୍ଷାର ବିରୋଧୀ । (ଦାଶ: ୨୦୦୫: ପୃ. ୨୯୫-୨୯୬)

ମଧୁବାବୁଙ୍କ ଉପରୋକ୍ତ ବୟାନରୁ ନାରୀ ସମ୍ପର୍କିତ ଦୁଇଟି ତଥ୍ୟ ଉନ୍ମୋଚିତ । ପ୍ରଥମଟି ହେଲା ଇତିହାସ ପୃଷ୍ଠପଟରେ ନାରୀ ସମ୍ପର୍କୀୟ ମିଥ, ଯାହାକୁ ଆଧାର କରି ପୁରୁଷମାନେ ସମାଜରେ ନାରୀକୁ ମହିୟସୀ, ମାତୃତୁଲ୍ୟ ମଣିଛନ୍ତି, କିନ୍ତୁ ବାସ୍ତବ ଜୀବନରେ ତାର ସ୍ୱାଧିକାରବୋଧକୁ ଅସ୍ୱୀକାର କରିଛନ୍ତି । ଦ୍ୱିତୀୟଟି ହେଉଛି ନାରୀକୁ ଏକ ଯୌନ ଉପାଦାନ ଭାବେ ପୁରୁଷ ଗ୍ରହଣ କରିଥାଏ ଯାହା ପୁରୁଷ ଲିଖିତ କାବ୍ୟକବିତାରେ ସ୍ପଷ୍ଟ ଉପଲବ୍ଧ । ପୁରୁଷ ରଚିତ କାବ୍ୟରେ ନାରୀ ହୋଇଥାଏ ରୂପସୌନ୍ଦର୍ଯ୍ୟ ପ୍ରଦାନକାରୀ ଏକ ମନୋରମ ଉପାଦାନ । ସମାଜରେ ନାରୀର ବାସ୍ତବ ରୂପରେଖଟିକୁ ଉନ୍ମୋଚନ କରି ତାର ପ୍ରତିକାର ପାଇଁ ମଧୁବାବୁ ଜାତି କଥାଟିକୁ ସ୍ମରଣ କରାଇଛନ୍ତି । ତାହା ହେଉଛି ଜାତି କହିଲେ ସାଧାରଣତଃ ପୁରୁଷ ଜାତିକୁ ବୁଝାଏ ।

ଏହି ଅବଧାରଣାକୁ ଭାଙ୍ଗି ତାହା ନାରୀ ଏବଂ ପୁରୁଷର ସମିଶ୍ରିତ ରୂପ ବୋଲି ମଧୁବାବୁ କହିଛନ୍ତି, ଆଧୁନିକମନସ୍କ ମଧୁବାବୁ ତାଙ୍କର ଅନୁଭବସିଦ୍ଧ ଜ୍ଞାନ ତଥା ପାଶ୍ଚାତ୍ୟ ଜୀବନଧାରା ସମ୍ପର୍କିତ ଅବଧାରଣାକୁ ପାଥେୟ କରି ରଢ଼ିବାଦୀ ସମାଜରେ ପ୍ରଚଳିତ ନାରୀ ସମ୍ପର୍କିତ ଦୃଷ୍ଟିଭଙ୍ଗୀକୁ ଉପସ୍ଥାପନ କରିଛନ୍ତି । ସତୀରକ୍ତ ଧମନୀରେ ପ୍ରବାହିତ ହେଉଥିବାର ସେ ଯେଉଁ ଆସ୍ଫାଳନ କରିଛନ୍ତି ତାହା ସତୀଦାହର ସପକ୍ଷରେ ନୁହେଁ ପରନ୍ତୁ ନାରୀର ମର୍ଯ୍ୟାଦାପୂର୍ଣ୍ଣ ଜୀବନ ସମ୍ପର୍କିତ ବୋଲି ଧରିବାକୁ ହେବ । ନିଜ ପାଳିତ କନ୍ୟା ଶୈଳବାଳାଙ୍କୁ ଉଚ୍ଚ ଶିକ୍ଷା ପାଇଁ ବିଦେଶ ପଠାଇବା ମୂଳରେ ରହିଛି ନାରୀର ପୂର୍ଣ୍ଣ ସ୍ୱାଧୀନତା ଏବଂ ପୁରୁଷ ପରି ନିଜ ଅସ୍ତିତ୍ୱକୁ ଜାହିର କରିବାର ପ୍ରେରଣା, ଯାହା ନାରୀ ଜାତି ପାଇଁ ସମ୍ମାନସ୍ପଦ ଅନୁଚିନ୍ତା । ସମାଜରେ ନାରୀର ସ୍ଥାନକୁ ଦୃଢ଼ କରିବା ପାଇଁ ଉତ୍କଳ ସମ୍ମିଳନୀର ପ୍ରାୟତଃ ପ୍ରତ୍ୟେକ ଅଧିବେଶନର ସଭାପତି ଅଭିଭାଷଣରେ ଭିନ୍ନ ଭିନ୍ନ ଜ୍ଞାନୀ ଗୁଣୀମାନେ ନାରୀମାନଙ୍କର ଉନ୍ନତି କିଭଳି ସମ୍ଭବ ହେବ, ସେ ସମ୍ପର୍କରେ ନିଜର ମନ୍ତବ୍ୟମାନ ପ୍ରଦାନ କରିଛନ୍ତି । ଓଡ଼ିଶାରେ ନାରୀ ଶିକ୍ଷାର ପ୍ରସାର ପାଇଁ ବିଦ୍ୟାଳୟ ଖୋଲିବା ଏବଂ ଏକ ଶିକ୍ଷିତ ମାତୃଶ୍ରେଣୀ ସୃଷ୍ଟି କରିବା ପାଇଁ ସେ ପ୍ରୟାସ କରିଛନ୍ତି । କାରଣ ସେ ବୁଝିଥିଲେ ଯେ ଏକ ଶିକ୍ଷିତ ମାତୃଶ୍ରେଣୀ ହିଁ ଏକ ଶିକ୍ଷିତ ସମାଜ ଗଢ଼ିପାରିବେ ଯାହା ଫଳରେ ସେମାନଙ୍କ ହୃଦୟରେ ଉତ୍କଳୀୟ ଜାତୀୟତାବାଦ ସୃଷ୍ଟି ହୋଇ ଉତ୍କଳର ପ୍ରଭୂତ ଉନ୍ନତିରେ ସହାୟକ ହୋଇପାରିବେ । ମଧୁବାବୁଙ୍କର ଏଭଳି ପ୍ରୟାସକୁ ପ୍ରଶଂସା କରି ୧୩ ଫେବୃୟାରୀ ୧୯୫୩ ମସିହାରେ ଶୈଳବାଳା ମହିଳା ମହାବିଦ୍ୟାଳୟ ପରିସରରେ ମଧୁବାବୁଙ୍କ ପ୍ରତିମୂର୍ତ୍ତି ଉନ୍ମୋଚନ ଅବସରରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଜବାହାରଲାଲ ନେହେରୁ କହିଥିଲେ,

> This college is the proof of his far sight and vision. If he had not moved for the progress of female education this institution could not have raised it's head. The progress of civilization of a country is to be measured by female education. (Dash: 2002: P.79)

ମଧୁବାବୁ ଥିଲେ ବହୁ ଆୟାମ ବିଶିଷ୍ଟ ବ୍ୟକ୍ତିତ୍ୱର ଅଧିକାରୀ । ସମସାମୟିକ ବ୍ୟକ୍ତିମାନଙ୍କ କୁତ୍ସାରଟନା ଫଳରେ ଦୁର୍ନାମ ଅର୍ଜନ କରିଥିଲେ ମଧ ମଧୁବାବୁଙ୍କ ବ୍ୟକ୍ତିତ୍ୱର ପରାକାଷ୍ଠା ହିଁ ଉତ୍ତର ପିଢ଼ି ପାଇଁ ଆଣି ଦେଇଛି ସୁନାମର ସୁବର୍ଣ୍ଣ ପାହାଚ । ଯେଉଁ ପାହାଚ ଉପରେ ଚଢ଼ି ଓଡ଼ିଆ ଜାତି ତାର ଦିଗ୍‌ବଳୟକୁ କରିଛି ପ୍ରସାରିତ । ସାହିତ୍ୟ, ସଂସ୍କୃତି, କଳା ଭାସ୍କର୍ଯ୍ୟ ତଥା ଜଗନ୍ନାଥ କୈନ୍ଦ୍ରିକ ଭାବ-ବଳୟ ଓଡ଼ିଶାର

ସୀମା ସରହଦ ଅତିକ୍ରମ କରି ଯେଉଁ କୀର୍ତ୍ତିସ୍ତମ୍ଭ ସ୍ଥାପନ କରିଛି ତାର ମୂଳଦୁଆ ପକାଇବା ପାଇଁ ମଧୁବାବୁ କରିଛନ୍ତି ଅଦମ୍ୟ ପ୍ରୟାସ । ଜୀବନସାରା ଅର୍ଜିତ ଅର୍ଥକୁ ପାଣି ପରି ଖର୍ଚ୍ଚ କରିଦେଇଛନ୍ତି ଓଡ଼ିଆ ଜାତିର ମାନ ଓ ମର୍ଯ୍ୟାଦାକୁ ଅକ୍ଷୁଣ୍ଣ ରଖିବା ପାଇଁ । ସେ ଦେବାଳିଆ ହୋଇଛନ୍ତି । କିନ୍ତୁ ନିଜର ଆତ୍ମ ଅଭିମାନକୁ ଜଳାଞ୍ଜଳି ଦେଇ ୫୦ ହଜାର ଟଙ୍କା ପାଇଁ ଜୋତାରେ ଉତ୍କଳ ଟାନେରୀ ମୋହର ବଦଳରେ ହ୍ୱାଇଟ୍‌ୱେ କମ୍ପାନୀର ମୋହର ଲଗାଇ ବିଦେଶକୁ ରପ୍ତାନୀ କରିବା ପାଇଁ ରାଜି ହୋଇନାହାନ୍ତି । ଉତ୍କଳ ଟାନେରୀ ଆର୍ଥିକ ସଂକଟରେ ଗତି କରୁଥିଲେ ମଧ୍ୟ ନିଜ ସିଦ୍ଧାନ୍ତରେ ଅଟଳ ରହିଥିଲେ । ତାଙ୍କର ଆତ୍ମାଭିମାନ ଥିଲା ଓଡ଼ିଆ ଜାତିର ସ୍ୱାଭିମାନ । ତାଙ୍କର ବ୍ୟକ୍ତିଗତ ଜୀବନ କ୍ରମଶଃ ଜାତୀୟ ଜୀବନରେ ରୂପାନ୍ତରିତ ହୋଇଥିଲା । ଜାତୀୟ ଜୀବନ ସହ ବ୍ୟକ୍ତି ଜୀବନର ସମ୍ପର୍କକୁ ମଧୁବାବୁ ମାଳତୀ ଲତା ଏବଂ ଆମ୍ବଗଛ ସହିତ ଥିବା ସମ୍ପର୍କକୁ ତୁଳନା କରି କୁହନ୍ତି:

> ମାଳତୀ ଲତା ଆମ୍ବଗଛରେ ଉଠେ, ମୋଟ ହୁଏ, ଶେଷରେ ଆମ୍ବଗଛକୁ ମାରିପକାଏ । ଆମ୍ବଗଛର ଫଳ କମ୍ ଲୋକ ଖାଉଥିଲେ । ଏହା ତୁଳନାରେ ମାଳତୀ ପୁଷ୍ପର ସୁଗନ୍ଧ ସହସ୍ର ଲୋକଙ୍କୁ ମୋହିତ କରୁଛି । ଜାତୀୟ ଜୀବନ ଯେତେବେଳେ ବ୍ୟକ୍ତିକୁ ମାଳତୀ ଲତା ପରି ବେଢ଼ି ଧରିବ, ସେତେବେଳେ ସେ (ଆମ୍ବଗଛ ପରି) ମରିବ କିନ୍ତୁ ମାଳତୀର ସୁଗନ୍ଧ ଚାରିଆଡ଼େ ମହକିବ । (ଦାଶ: ୧୯୭୧: ପୃ.୨୬୫)

ଜାତୀୟ ଜୀବନର ଆବଶ୍ୟକତା ସମ୍ପର୍କରେ ତେଣୁ ସେ କହିଥିଲେ,

> ଜାତି ଜାତି ମଧ୍ୟରେ ଭାବ ହେବା ନିମନ୍ତେ ଜାତୀୟ ଜୀବନର ଆବଶ୍ୟକ । ଆମ୍ଭମାନଙ୍କ ମଧ୍ୟରେ ଯେଉଁ ଜୀବନ ପରିଲକ୍ଷିତ ହୁଏ ତାହା ବ୍ୟକ୍ତିଗତ ଜୀବନ । ବ୍ୟକ୍ତିଗତ ଜୀବନ କ୍ଷଣସ୍ଥାୟୀ; ତାହା କାଲି ଶ୍ମଶାନରେ ଶେଷ ହେବ । ଜାତୀୟ ଜୀବନ ପ୍ରତିଷ୍ଠିତ ହେଲେ, ଜାତି ଜାତି ମଧ୍ୟରେ ସଭାବ ହେବ । ଜାତି ଜାତି ମଧ୍ୟରେ ଯେଉଁ ସଭାବ ତହିଁର ବିଚ୍ଛେଦ ହେବ ନାହିଁ; କିନ୍ତୁ ବ୍ୟକ୍ତିଗତ ସଭାବ ଚିରସ୍ଥାୟୀ ନୁହେଁ, ତାହା କ୍ଷଣ ଭଙ୍ଗୁର । (ଦାଶ: ୧୯୭୧: ପୃ.୨୬୬)

ଜାତୀୟ ଜୀବନର ମହାମନ୍ତ୍ରରେ ଉଦ୍‌ବୋଧିତ ମଧୁବାବୁ ଓଡ଼ିଆ ଜାତିର ଆତ୍ମପରିଚିତ ଉନ୍ମୋଚନରେ ପ୍ରଥମ ଐତିହାସିକ ପଦକ୍ଷେପ ନେଇଛନ୍ତି । ଓଡ଼ିଆ ଅସ୍ମିତାର ମନ୍ତ୍ରରେ ଦୀକ୍ଷିତ କରିଛନ୍ତି ଉତ୍କଳବାସୀଙ୍କୁ । ମଧୁବାବୁଙ୍କୁ ପ୍ରଥମ ଓଡ଼ିଆ ଜାତୀୟ ଚେତନା ଉଦ୍ରେକକାରୀ ଜନନାୟକ ଭାବେ ସୁଦାମ ଚରଣ ନାୟକ ବର୍ଣ୍ଣନା କରିଛନ୍ତି । ୧୯୧୬ ଜାନୁୟାରୀ ୧ ତାରିଖଠାରୁ **ଉତ୍କଳ ଦୀପିକାର** ସମ୍ପାଦକ କାର୍ଯ୍ୟନିର୍ବାହ ପାଇଁ ମଧୁବାବୁ ସମ୍ମତି ପ୍ରଦାନ କରିଥିଲେ ମାତ୍ର ପରିଶେଷରେ ଅନିଚ୍ଛା ପ୍ରକାଶ କରିବାରୁ ସୁଦାମ ଚରଣ ନାୟକ ଏହି ଦାୟିତ୍ୱ ନେଇଥିଲେ । ୧୫.୧.୧୯୧୬

ଉତ୍କଳ ଦୀପିକାର ସମ୍ପାଦକୀୟରେ ସୁଦାମ ଚରଣ ନାୟକ ଲେଖିଥିଲେ :

ଆଜି ସମସ୍ତ ପ୍ରାକୃତିକ ଉତ୍କଳର ଯେଉଁ ଜାତୀୟ ଭାବ(Nationalism)ର ତରଙ୍ଗ ଖେଳୁଅଛି, ଏଥିର କର୍ତ୍ତା କିଏ ? ତାଙ୍କରି ନାମକୁ ବିକି ଆମ୍ଭେମାନେ ଆପଣାକୁ ଦେଶ ବିଦେଶରେ କୃତାର୍ଥ ମଣୁଅଛୁ । ଯେଉଁ ନୂତନ ନୂତନ ଭାବମାନ (ideas) ସେ କଥାରେ ଏବଂ କାର୍ଯ୍ୟରେ ଦେଖାଇ ଅଛନ୍ତି, ଦେଖାଉଅଛନ୍ତି ଏବଂ ଈଶ୍ୱରଙ୍କ କୃପାରେ ବହୁ କାଳ ଦେଖାଇବେ, ଏ ସମସ୍ତ କି ଜଳର ବୁଦ୍‌ବୁଦ୍ ବତ ମିଳେଇଯିବ ? ସେ ଚାହାନ୍ତି ତାହାଙ୍କ ପରି କର୍ମବୀର ଜଣକେତେ ଓଡ଼ିଆ ସେ ଦେଖନ୍ତେ ।

ମଧୁବାବୁ ଯେଉଁ ନୂତନ ଭାବମାନ, ରାଜନୀତି ଠାରୁ ସମାଜ ତଥା ଶିକ୍ଷନୀତି ପର୍ଯ୍ୟନ୍ତ ଓଡ଼ିଆମାନଙ୍କ ମଧ୍ୟରେ ପ୍ରବେଶ କରାଇ ଚିନ୍ତା କରିବାର ଅବକାଶ ସୃଷ୍ଟି କରିଛନ୍ତି ତାହା ତାଙ୍କ ବିଦ୍‌ବତ୍ତା ତଥା କାର୍ଯ୍ୟ କରିବାର ଦକ୍ଷତାକୁ ପ୍ରମାଣ କରେ । ତେଣୁ ସ୍ୱଭାବତଃ ସେ ନିଜ ପରି ଅନୁରୂପ ମଣିଷଟିକୁ ଦେଖିବାକୁ ଇଚ୍ଛା କରିଛନ୍ତି ଯିଏ ଜାତୀୟ ଜୀବନ ସ୍ରୋତରେ ସାମିଲ ହୋଇ ଓଡ଼ିଆ ଜାତିର ପ୍ରଗତି ପଥକୁ ସୁଦୃଢ଼ କରିବ । ମଧୁବାବୁଙ୍କର ଜାତିର ଉନ୍ନତି ଚିନ୍ତା ତଥା ଦେଶ ଗଠନ ଯୋଜନାର ସାଫଲ୍ୟକୁ ଓଡ଼ିଶା ତଥା ଓଡ଼ିଶା ବାହାରର ରାଷ୍ଟ୍ରନାୟକଙ୍କ ଦୃଷ୍ଟିକୋଣକୁ ପରିବର୍ତ୍ତନ କରିଥିଲା, ସେଥିପାଇଁ ସେ ଉତ୍କଳଗୌରବ, ଭାରତଗୌରବ, ଓଡ଼ିଶାର ଜନକ, ଦେଶପ୍ରାଣ, କୁଳବୃଦ୍ଧ ପ୍ରଭୃତି ବହୁ ଉପାଧିରେ ଭୂଷିତ । ସେଇ ବିରଳ ସାଂସ୍କୃତିକ ବ୍ୟକ୍ତିତ୍ୱର ପରିଚୟ ଦେଇ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଯାହା କହିଛନ୍ତି, ତାହା ସ୍ମରଣଯୋଗ୍ୟ :

୧୮୮୨ ମସିହାରେ 'ଉତ୍କଳ-ସଭା' ସ୍ଥାପନ ଠାରୁ ଆରମ୍ଭ କରି ବିଭିନ୍ନ ସ୍ୱାୟତ୍ତ-ଶାସନ ସଂସ୍ଥାର ନେତୃତ୍ୱ ନେବା, ତଥା ଭାରତୀୟ ଜାତୀୟ କଂଗ୍ରେସରେ ଯୋଗଦାନ କରି ତାହାର ବାଣୀ ଓ କାର୍ଯ୍ୟକ୍ରମକୁ ଓଡ଼ିଶାରେ ପରିଚିତ କରାଇବା ପର୍ଯ୍ୟନ୍ତ ବିବିଧ କାର୍ଯ୍ୟରେ ମଧୁସୂଦନ ଅଗ୍ରଣୀ ଭୂମିକା ନେଇଥିଲେ । ଓଡ଼ିଶାରେ ରଙ୍ଗମଞ୍ଚ ସ୍ଥାପନ, ଓଡ଼ିଶୀ ସଂଗୀତର ଚର୍ଚ୍ଚା ପାଇଁ କ୍ଷେତ୍ର ପ୍ରସ୍ତୁତି ଓ ବିଭିନ୍ନ ଲେଖକଙ୍କର ପୁସ୍ତକ ପ୍ରକାଶନ ପାଇଁ ଅକାତର ଭାବରେ ଯେଉଁଭଳି ସେ ଧନ ଢାଳି ଦେଇଛନ୍ତି ଠିକ୍ ସେହିଭଳି ଭାରତର ପ୍ରଥମ ସହଯୋଗ ସମିତି ସ୍ଥାପନ କରି ଓ କୁଷ୍ଠାଶ୍ରମ ପ୍ରତିଷ୍ଠା କରାଇ ସାଧାରଣ ଜୀବନକୁ ସେ ଋଦ୍ଧିମନ୍ତ କରିଛନ୍ତି । ଏହା ବ୍ୟତୀତ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକୀକରଣ ଏବଂ ସେଥିପାଇଁ ସଂଗ୍ରାମ ତାଙ୍କ ଜୀବନର ଥିଲା ସର୍ବଶ୍ରେଷ୍ଠ ସାଧନା । (ଦାଶ: ୧୯୭୧ : ପୃ. ୧୨) ।

ଏତଦ୍‌ବ୍ୟତୀତ ତାଙ୍କ ଜାତିପ୍ରାଣତାର ଅନ୍ୟ ଏକ ନିଦର୍ଶନ ହେଉଛି **The Oriya** ନାମକ ଏକ ସାପ୍ତାହିକ ପତ୍ରିକାର ସମ୍ପାଦନା । ଏହି ପତ୍ରିକାଟି ଇଂରାଜୀରେ ପ୍ରକାଶିତ ହେଉଥିଲା ଏବଂ ଏହା ଦ୍ୱାରା ଓଡ଼ିଆ ଜାତିର ତଥା ଓଡ଼ିଶାର ନାନାବିଧ ସମସ୍ୟାକୁ

ଇଂରେଜ ଶାସକ ତଥା ଦେଶର ବହୁ ମାନ୍ୟଗଣ୍ୟ ବୁଦ୍ଧିଜୀବୀଙ୍କ ଦୃଷ୍ଟି ଆକର୍ଷଣ କରାଯାଉଥିଲା ।

ଓଡ଼ିଆ ଜାତିର କ୍ରାନ୍ତିଦୂତ ଭାବେ ଆବିର୍ଭୂତ ହୋଇ ମଧୁସୂଦନ ଦେଶମିଶ୍ରଣ ସହ ଦେଶୀୟ ଜନଜୀବନ କିପରି ସ୍ୱଚ୍ଛନ୍ଦ ହେବ ଏବଂ ତାର ହୃତ ଗୌରବ ଫେରିପାଇବ ସେଇ ସାରସ୍ୱତ ଚିନ୍ତାରେ ସମଗ୍ର ଜୀବନକୁ ବାଜି ଲଗେଇଥିଲେ । ମନ୍ତ୍ରୀତ୍ୱର ମୋହ କିମ୍ବା ଅର୍ଥଲାଳସା ତାଙ୍କୁ ଲକ୍ଷ୍ୟ ପଥରୁ ବିଚ୍ୟୁତ୍ କରିପାରି ନଥିଲା । ସିଏ ଯେଉଁ ମର୍ମରେ ଓଡ଼ିଶା ମାଟିକୁ ଚିହ୍ନିଥିଲେ ସେଇ ମର୍ମରେ ପ୍ରତ୍ୟେକ ଓଡ଼ିଆ ନିଜ ମାଟି ମା' ଓ ମାତୃଭାଷାର ଉନ୍ନତି ପାଇଁ ଉଦ୍ୟମ କରିବାକୁ ଆହ୍ୱାନ ଦେଇ କହିଥିଲେ ।

ଉଠରେ ଉଠରେ ଉତ୍କଳ ସନ୍ତାନ
ଉଠିବୁ ତୁ କେତେ ଦିନେ,
ପୂରୁବ ଗୌରବ ପୂରବ ଇତିହାସ
ପଡ଼ିବ କି କେବେ ମନେ ।

ମଧୁବାବୁଙ୍କ ବ୍ୟକ୍ତିତ୍ୱକୁ ଚିହ୍ନିବା ପାଇଁ ତାଙ୍କ ରଚନାବଳୀ ସଂଗୃହୀତ ହୋଇ ପ୍ରକାଶ ପାଇବା ଉଚିତ୍ । ସେହି ଦିଗରେ ଏକ କ୍ଷୀଣ ପ୍ରଚେଷ୍ଟା ହେଉଛି **ଉତ୍କଳଗୌରବ ମଧୁସୂଦନଙ୍କ ଓଡ଼ିଆ ରଚନାବଳୀ** । ମଧୁସୂଦନ ଦାସ ଓଡ଼ିଆ ଭାଷା ତୁଳନାରେ ଇଂରାଜୀ ଭାଷାରେ ବେଶୀ ଲେଖାଲେଖି କରୁଥିଲେ, ଯାହା ତତ୍କାଳୀନ ଇଂରେଜ ସରକାରଙ୍କୁ ଓଡ଼ିଶାର ସ୍ୱାର୍ଥ ଓ ସମସ୍ୟା ସମ୍ପର୍କିତ ବେଶ୍ ପ୍ରଭାବିତ କରିଥିଲା । ତାଙ୍କର ଇଂରାଜୀ ରଚନା ତଥା ଅଭିଭାଷଣ — ସମ୍ପୂର୍ଣ୍ଣ ନ ହେଲେ ବି ଅଧିକାଂଶ — ବିଭିନ୍ନ ପୁସ୍ତକରେ ସଂକଳିତ । ଓଡ଼ିଆ ଭାଷାର ଗୁରୁତ୍ୱକୁ ଉପଲବ୍ଧି କରି ମଧୁବାବୁ ଓଡ଼ିଆ ପତ୍ରପତ୍ରିକାର ପ୍ରକାଶନ ପାଇଁ ପ୍ରୋତ୍ସାହନ ଦେବା ସହିତ ଆର୍ଥିକ ସାହାଯ୍ୟ ମଧ ଦେଉଥିଲେ । ତତ୍କାଳୀନ ଓଡ଼ିଶାରେ ଶିକ୍ଷିତ ବ୍ୟକ୍ତିଙ୍କ ସଂଖ୍ୟା ଖୁବ୍ କମ୍ ଥିଲା ସେଥିରେ ପୁଣି ଇଂରାଜୀ ଶିକ୍ଷା ଲାଭ କରିଥିବା ବ୍ୟକ୍ତିଙ୍କ ସଂଖ୍ୟା ହାତଗଣତି । ମଧୁବାବୁ ଥିଲେ ସେଇ ଏଲିଟ୍ ଗୋଷ୍ଠୀ ଅନ୍ତର୍ଗତ । ତେଣୁ ଦେଶୀୟ ଜନସମାଜକୁ ଉଦ୍‌ବୋଧିତ କରିବା ପାଇଁ, ଆବଶ୍ୟକ ସ୍ଥଳେ, ଓଡ଼ିଆ ଭାଷାରେ ବକ୍ତୃତା ଦେଉଥିଲେ ତଥା ବିଭିନ୍ନ ବିଷୟରେ ଲେଖାଲେଖି କରୁଥିଲେ । ଏତଦ୍‌ବ୍ୟତୀତ ଓଡ଼ିଆରେ କବିତା ରଚନା କରି ଓଡ଼ିଶାବାସୀଙ୍କୁ ଜାତୀୟ ପ୍ରେମରେ ଉଦ୍‌ବୁଦ୍ଧ କରିଛନ୍ତି । ଆମର ଏହି ପରିକଳ୍ପିତ ପୁସ୍ତକ **ଉତ୍କଳଗୌରବ ମଧୁସୂଦନଙ୍କ ଓଡ଼ିଆ ରଚନାବଳୀ** ପୂର୍ବରୁ ଶ୍ରୀ ନବକିଶୋର ଦାସ ମଧୁବାବୁଙ୍କ କବିତା ଓ ବକ୍ତୃତା ପୁସ୍ତିକାଟିକୁ ସଂକଳନ କରିଥିଲେ ମଧ ତା' ବାହାରେ ମଧୁବାବୁଙ୍କ ଆହୁରି ଅନେକ ଓଡ଼ିଆ ରଚନା ରହିଯାଇଥିଲା । ଉପରୋକ୍ତ ପୁସ୍ତକର ଅଭାବକୁ

ଇଂରେଜ ଶାସକ ତଥା ଦେଶର ବହୁ ମାନ୍ୟଗଣ୍ୟ ବୁଦ୍ଧିଜୀବୀଙ୍କ ଦୃଷ୍ଟି ଆକର୍ଷଣ କରାଯାଉଥିଲା ।

ଓଡ଼ିଆ ଜାତିର କ୍ରାନ୍ତିଦୂତ ଭାବେ ଆବିର୍ଭୂତ ହୋଇ ମଧୁସୂଦନ ଦେଶମିଶ୍ରଣ ସହ ଦେଶୀୟ ଜନଜୀବନ କିପରି ସ୍ୱଚ୍ଛନ୍ଦ ହେବ ଏବଂ ତାର ହୃତ ଗୌରବ ଫେରିପାଇବ ସେଇ ସାରସ୍ୱତ ଚିନ୍ତାରେ ସମଗ୍ର ଜୀବନକୁ ବାଜି ଲଗେଇଥିଲେ । ମନ୍ତ୍ରୀତ୍ୱର ମୋହ କିମ୍ୱା ଅର୍ଥଲାଳସା ତାଙ୍କୁ ଲକ୍ଷ୍ୟ ପଥରୁ ବିଚ୍ୟୁତ୍ କରିପାରି ନଥିଲା । ସିଏ ଯେଉଁ ମର୍ମରେ ଓଡ଼ିଶା ମାଟିକୁ ଚିହ୍ନିଥିଲେ ସେଇ ମର୍ମରେ ପ୍ରତ୍ୟେକ ଓଡ଼ିଆ ନିଜ ମାଟି ମା' ଓ ମାତୃଭାଷାର ଉନ୍ନତି ପାଇଁ ଉଦ୍ୟମ କରିବାକୁ ଆହ୍ୱାନ ଦେଇ କହିଥିଲେ ।

ଉଠରେ ଉଠରେ ଉତ୍କଳ ସନ୍ତାନ
ଉଠିବୁ ତୁ କେତେ ଦିନେ,
ପୂରୁବ ଗୌରବ ପୂରବ ଇତିହାସ
ପଡ଼ିବ କି କେବେ ମନେ ।

ମଧୁବାବୁଙ୍କ ବ୍ୟକ୍ତିତ୍ୱକୁ ଚିହ୍ନିବା ପାଇଁ ତାଙ୍କ ରଚନାବଳୀ ସଂଗୃହୀତ ହୋଇ ପ୍ରକାଶ ପାଇବା ଉଚିତ୍ । ସେହି ଦିଗରେ ଏକ କ୍ଷୀଣ ପ୍ରଚେଷ୍ଟା ହେଉଛି **ଉତ୍କଳଗୌରବ ମଧୁସୂଦନଙ୍କ ଓଡ଼ିଆ ରଚନାବଳୀ** । ମଧୁସୂଦନ ଦାସ ଓଡ଼ିଆ ଭାଷା ତୁଳନାରେ ଇଂରାଜୀ ଭାଷାରେ ବେଶୀ ଲେଖାଲେଖି କରୁଥିଲେ, ଯାହା ତତ୍କାଳୀନ ଇଂରେଜ ସରକାରଙ୍କୁ ଓଡ଼ିଶାର ସ୍ୱାର୍ଥ ଓ ସମସ୍ୟା ସମ୍ପର୍କିତ ବେଶ୍ ପ୍ରଭାବିତ କରିଥିଲା । ତାଙ୍କର ଇଂରାଜୀ ରଚନା ତଥା ଅଭିଭାଷଣ – ସମ୍ପୂର୍ଣ୍ଣ ନ ହେଲେ ବି ଅଧିକାଂଶ – ବିଭିନ୍ନ ପୁସ୍ତକରେ ସଂକଳିତ । ଓଡ଼ିଆ ଭାଷାର ଗୁରୁତ୍ୱକୁ ଉପଲବ୍ଧି କରି ମଧୁବାବୁ ଓଡ଼ିଆ ପତ୍ରପତ୍ରିକାର ପ୍ରକାଶନ ପାଇଁ ପ୍ରୋତ୍ସାହନ ଦେବା ସହିତ ଆର୍ଥିକ ସାହାଯ୍ୟ ମଧ ହେଉଥିଲେ । ତତ୍କାଳୀନ ଓଡ଼ିଶାରେ ଶିକ୍ଷିତ ବ୍ୟକ୍ତିଙ୍କ ସଂଖ୍ୟା ଖୁବ୍ କମ୍ ଥିଲା ସେଥିରେ ପୁଣି ଇଂରାଜୀ ଶିକ୍ଷା ଲାଭ କରିଥିବା ବ୍ୟକ୍ତିଙ୍କ ସଂଖ୍ୟା ହାତଗଣତି । ମଧୁବାବୁ ଥିଲେ ସେଇ ଏଲିଟ୍ ଗୋଷ୍ଠୀ ଅନ୍ତର୍ଗତ । ତେଣୁ ଦେଶୀୟ ଜନସମାଜକୁ ଉଦ୍‌ବୋଧିତ କରିବା ପାଇଁ, ଆବଶ୍ୟକ ସ୍ଥଳେ, ଓଡ଼ିଆ ଭାଷାରେ ବକ୍ତୃତା ଦେଉଥିଲେ ତଥା ବିଭିନ୍ନ ବିଷୟରେ ଲେଖାଲେଖି କରୁଥିଲେ । ଏତଦ୍‌ବ୍ୟତୀତ ଓଡ଼ିଆରେ କବିତା ରଚନା କରି ଓଡ଼ିଶାବାସୀଙ୍କୁ ଜାତୀୟ ପ୍ରେମରେ ଉଦ୍‌ବୁଦ୍ଧ କରିଛନ୍ତି । ଆମର ଏହି ପରିକଳ୍ପିତ ପୁସ୍ତକ **ଉତ୍କଳଗୌରବ ମଧୁସୂଦନଙ୍କ ଓଡ଼ିଆ ରଚନାବଳୀ** ପୂର୍ବରୁ ଶ୍ରୀ ନବକିଶୋର ଦାସ **ମଧୁବାବୁଙ୍କ କବିତା ଓ ବକ୍ତୃତା** ପୁସ୍ତିକାଟିକୁ ସଂକଳନ କରିଥିଲେ ମଧ ତା' ବାହାରେ ମଧୁବାବୁଙ୍କ ଆହୁରି ଅନେକ ଓଡ଼ିଆ ରଚନା ରହିଯାଇଥିଲା । ଉପରୋକ୍ତ ପୁସ୍ତକର ଅଭାବକୁ

ପରିକଳ୍ପିତ ପୁସ୍ତକରେ କିଛି ପରିମାଣରେ ପୂରଣ କରିବା ପାଇଁ ପ୍ରଚେଷ୍ଟା କରାଯାଇଛି, ଯେଉଁଥିରୁ ତାଙ୍କର ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି ଓ ସର୍ବୋପରି ତାଙ୍କର ଓଡ଼ିଆ ଜାତିପ୍ରୀତିର ନିଦର୍ଶନ ମିଳିପାରିବ । ମଧୁସୂଦନଙ୍କ ଓଡ଼ିଆ କବିତା, ଅଭିଭାଷଣ ଓ ଅନ୍ୟାନ୍ୟ ରଚନାର ଏହି ସଂକଳନ ମଧୁଚର୍ଚ୍ଚା ପାଇଁ ପଥ ପ୍ରସ୍ତୁତ କରିବ ବୋଲି ଆଶା ।

**ନଗେନ୍ ଦାସ**

***

# ପ୍ରାକ୍‌କଥନ

ମଧୁସୂଦନ କବି ନ ଥିଲେ, ଥିଲେ ସ୍ୱପ୍ନଦ୍ରଷ୍ଟା ଓ କର୍ମୀ । କିନ୍ତୁ କବିତା ପ୍ରତି ତାଙ୍କର ଥିଲା ସ୍ୱାଭାବିକ ଅନୁରକ୍ତି । ଆଶୁ କବିତା ଓ ଢଗ ଅନେକ ସମୟରେ ଆବୃତ୍ତି କରୁଥିଲେ ବି ୧୯୧୪ ମସିହା ଅକ୍ଟୋବର ମାସ ପର୍ଯ୍ୟନ୍ତ ତାଙ୍କର କୌଣସି କବିତା ପ୍ରକାଶିତ ହୋଇ ନ ଥିଲା । **ମୁକୁର** ସାହିତ୍ୟ ପତ୍ରିକାରେ ତାଙ୍କର ଛଟି କବିତା ଅକ୍ଟୋବର, ୧୯୧୪ରୁ ଅକ୍ଟୋବର, ୧୯୧୫ ମଧ୍ୟରେ ପ୍ରକାଶିତ । ସେହି ୧୯୧୫ ମସିହା ଶେଷ ଆଡ଼କୁ ସମ୍ପୃକ୍ତ ଛଟି କବିତା **ମୁକୁର**ର ସମ୍ପାଦକ ବ୍ରଜସୁନ୍ଦର ଦାସ **ଜାତୀୟ ଗୀତ** ଶୀର୍ଷକରେ ଏକ ପୁସ୍ତିକା ଆକାରରେ ପ୍ରକାଶ କରି ତାହାର ସୂଚନାରେ ଲେଖିଥିଲେ :

> ଜାତିର ନିଶ୍ଚେଷ୍ଟ ଓ ମୁମୂର୍ଷୁ ଅବସ୍ଥା ଦେଖି ସ୍ୱଦେଶପ୍ରାଣ ବୃଦ୍ଧ ମଧୁସୂଦନଙ୍କର ବାକ୍ୟ ଛନ୍ଦୋବଦ୍ଧ ହୋଇ ସ୍ୱତଃ ଉଚ୍ଚାରିତ ହୋଇଅଛି । ତାହା ସାମୟିକ ପତ୍ରରେ ବାହାରିଥିଲେ ସୁଦ୍ଧା ଜାତିର ଅନେକଙ୍କର ଦୃଷ୍ଟିଗୋଚର ହୋଇନାହିଁ । ସେ କହିଲେ, ''ମୁଁ ମୋର ଭାବ ଜାତିକୁ ଦେଇଛି, ତାହା ଗୋଡ଼ରେ ମାଡ଼ିପାର ବା କଣ୍ଠରେ ଧାରଣ କରିପାର, ତାହା ଜାତିର, ମୋର କୌଣସି ଅଧିକାର ନାହିଁ ।'' ଏପରି ଅନୁମତି ପାଇ ମୁଁ 'ଜାତୀୟ ଗୀତ' ଜାତିର ହସ୍ତରେ ଅର୍ପଣ କରିବାକୁ ସାହସୀ ହେଲି ।

ମଧୁସୂଦନଙ୍କ ଦେହାନ୍ତର ଦୁଇବର୍ଷ ପରେ ତାଙ୍କର ସମ୍ପର୍କରେ ଆସିଥିବା ନବକିଶୋର ଦାସ **ମଧୁବାବୁଙ୍କ ଓଡ଼ିଶା ବକ୍ତୃତା ଓ ଗୀତ** ଶୀର୍ଷକରେ ମଧୁବାବୁଙ୍କର କବିତା ଓ କେତେକ ବକ୍ତୃତା ପ୍ରକାଶ କରିଥିଲେ । ସମ୍ପୃକ୍ତ ସଂକଳନରେ ବ୍ରଜସୁନ୍ଦର ଦାସଙ୍କ ଦ୍ୱାରା ପ୍ରକାଶିତ **ଜାତୀୟ ଗୀତ** ପୁସ୍ତିକାରେ ଥିବା ଛଅଟି କବିତା ସହ 'ଏ ଭବେ ପାଇବ କାହିଁ' ନାମରେ ଆଉ ଗୋଟିଏ କବିତା ସଂଯୋଜିତ । କବିତାର ପାଦଟୀକାରେ ନବକିଶୋର ଲେଖିଥିଲେ: ''ଏ କବିତାଟି ପୂର୍ବେ କୌଣସିଠାରେ ପ୍ରକାଶିତ ହୋଇ ନ ଥିଲା । ମଧୁବାବୁଙ୍କର ପ୍ରିୟ ଶିଷ୍ୟ ଶ୍ରୀଯୁକ୍ତ ପାରେଶ୍ୱର ମହାନ୍ତି, ଏଡ଼ଭୋକେଟ୍ ଏ ଜୀବନୀରେ ତାଙ୍କ ରଚିତ କବିତା ସଂକଳିତ ହେଉଥିବାର ଶୁଣି ଏହା ପ୍ରକାଶ ଲାଗି ପଠାଇ ଦେଇଥିବାରୁ ସେ ଧନ୍ୟବାଦାର୍ହ ।'' (ସମକାଳରେ ନବକିଶୋର ଦାସ ମଧୁସୂଦନଙ୍କର ଏକ ଜୀବନୀ ରଚନା କରୁଥିଲେ ଓ ତାହା ଆମ **ମଧୁବାବୁ** ଶୀର୍ଷକରେ ୧୯୩୭ରେ ପ୍ରକାଶିତ) ୧୯୫୮ ମସିହାରେ ନବକିଶୋର **ମଧୁବାବୁଙ୍କ ଓଡ଼ିଆ ବକ୍ତୃତା ଓ ଗୀତ**ର ଏକ ପରିବର୍ଦ୍ଧିତ ସଂସ୍କରଣ କଟକର କଳାବିଜ୍ଞାନ ପରିଷଦ ଦ୍ୱାରା ପ୍ରକାଶ କରିଛନ୍ତି । ଏହି ନୂତନ ସଂସ୍କରଣରେ ମଧୁବାବୁଙ୍କର କୌଣସି ନୂତନ କବିତା ସଂଯୋଜିତ ହୋଇନାହିଁ । ଆଜି ପର୍ଯ୍ୟନ୍ତ ମଧୁବାବୁଙ୍କର

କବିତା କହିଲେ ନବକିଶୋରଙ୍କ ଦ୍ୱାରା ସଂକଳିତ ସାତଟି କବିତାକୁ ହିଁ ବୁଝାଏ । ବର୍ତ୍ତମାନ ସଂସ୍କରଣରେ ମଧ୍ୟ ସେହି ସାତଟି କବିତା ସଂକଳିତ ।

ଶେଷ କବିତା 'ଏ ଭବେ ପାଇବ କାହିଁ ?' ପୂର୍ବରୁ ମଧୁବାବୁଙ୍କ ଜୀବଦ୍ଦଶାରେ ଅପ୍ରକାଶିତ ଥିବା ସୂଚିତ । ଅବଶିଷ୍ଟ ଛଟି କବିତା ନିମ୍ନ କ୍ରମରେ ପ୍ରକାଶିତ ।

(୧) ପ୍ରଥମ କବିତା 'ଜଣାଣ' ଓ ଦ୍ୱିତୀୟ କବିତା 'ଉତ୍କଳ ସନ୍ତାନ' ଗୋଟିଏ କବିତା ଭାବରେ **ମୁକୁର**ର ନବମ ବର୍ଷ ସପ୍ତମ ସଂଖ୍ୟା(ଅକ୍ଟୋବର, ୧୯୧୪)ପୃ.୧୩୯ରେ ପ୍ରକାଶିତ ହୋଇଥିଲା । 'ଏମ୍.ଏସ୍.ଦାସ'ଙ୍କ ନାମ ଥାଇ ମୁଦ୍ରିତ କବିତାର ଶୀର୍ଷକ ଥିଲା 'ଜାତୀୟଗୀତ' ଓ ଏହାର ଦୁଇଟି ବିଭାଗ ଥିଲା । ସମ୍ପୃକ୍ତ କବିତା ସହିତ ଏକ ପତ୍ର ମଧୁସୂଦନ ପତ୍ରିକାର ସମ୍ପାଦକଙ୍କୁ ଲେଖିଥିଲେ :

ପ୍ରିୟ ସମ୍ପାଦକ ମହାଶୟ,

ଏଥି ସହିତ ଦୁଇଗୋଟି କବିତା ଆପଣଙ୍କ ନିକଟକୁ ପଠାଇଛୁ । କବିତା ରଚନାରେ କୃତିତ୍ୱ ଦେଖାଇବା ଆମ୍ଭର ଉଦ୍ଦେଶ୍ୟ ନୁହେ । ବାଳକବାଳିକାମାନଙ୍କ ମନରେ ସ୍ୱଦେଶପ୍ରେମ ଜାଗ୍ରତ କରିବା ଆମ୍ଭର ଅଭିପ୍ରାୟ । ବାଳକବାଳିକାମାନେ ପଦ୍ୟରେ ରଚିତ ଉପଦେଶମାନ ଯେତେ ଶୀଘ୍ର ମନେରଖି ପାରନ୍ତି, ଗଦ୍ୟରେ ରଚିତ ହେଲେ ସେପରି ପାରନ୍ତି ନାହିଁ । ତେଣୁକରି ଆମ୍ଭର ମନୋଭାବମାନେ ପଦ୍ୟରେ ପ୍ରକାଶ କଲୁଁ । ଏଥିପ୍ରତି ବାଳକବାଳିକମାନଙ୍କର ଆଗ୍ରହ ଥିବାର ଜାଣିଲେ ଏହିପରି ଆଉ କେତେଗୁଡ଼ିଏ ପଦ୍ୟ ପ୍ରକାଶ କରିବାର ବାସନା ରହିଲା । ଭରସା କରୁଁ ଆପଣଙ୍କ ପତ୍ରିକାରେ ଏହାକୁ ସ୍ଥାନ ଦେଇ ବାଧିତ କରିବେ ।

କଟକ — ଆପଣଙ୍କର

୧୩-୧୧-୧୪ — ଏମ.ଏସ.ଦାସ

ଏଠାରେ ସୂଚନାଯୋଗ୍ୟ ଯେ **ମୁକୁର** ଦୁଇ/ତିନି ମାସ ବିଳମ୍ବରେ ପ୍ରକାଶିତ ହେଉଥିବାରୁ ନଭେମ୍ବର ମାସରେ ଲିଖିତ ରଚନା ତାହାର ଅକ୍ଟୋବର ସଂଖ୍ୟାରେ ପ୍ରକାଶିତ ହୋଇଛି ।

(୨) ତୃତୀୟ କବିତା 'ଜନନୀର ଉକ୍ତି' ପ୍ରଥମେ **ଆଶା** ସାପ୍ତାହିକ ସମ୍ବାଦପତ୍ରର ଦ୍ୱିତୀୟବର୍ଷ ଚତୁର୍ଦ୍ଦଶ ସଂଖ୍ୟା(୧୭.୧୨.୧୯୧୪)ରେ ପ୍ରକାଶିତ ହୋଇଥିଲା । ସମ୍ବାଦପତ୍ରରେ ଏହାର ଶୀର୍ଷକ ଥିଲା 'ଉତ୍କଳମାତାର ଖେଦୋକ୍ତି' ଓ କବିଙ୍କ ନାମ ଗୋପନ ରଖାଯାଇଥିଲା । କବିତାଟିର ପରିଚୟ ଦେଇ ମଧୁବାବୁଙ୍କର ଜଣେ ତରୁଣ ବନ୍ଧୁ ପାରେଶ୍ୱର ମହାନ୍ତି ଲେଖିଥିଲେ :

ମହାଶୟ,

ମୋହର ଜଣେ ବନ୍ଧୁଙ୍କର ରଚିତ ଗୋଟିଏ ପଦ୍ୟ ଘଟଣାକ୍ରମେ ମୋହର ହସ୍ତଗତ ହେଲା । ମୁଁ ତାହାକୁ ଏଥିସହିତ ଆପଣଙ୍କ ନିକଟକୁ ପଠାଇଲି । ପଦ୍ୟଟି ମୋହର ମନକୁ ବିଶେଷ ରୂପେ ଲାଗିବାରୁ ମୁଁ ତାହା ପ୍ରକାଶ କରିବାକୁ ଆପଣଙ୍କ ଠାକୁ ପଠାଇଲି ।

ଆପଣଙ୍କର

ଶ୍ରୀ ପାରେଶ୍ୱର ମହାନ୍ତି

ଏହି କବିତାଟି 'ଜାତୀୟ ଗୀତ' ଶୀର୍ଷକରେ **ମୁକୁର**ର ୯ମ ବର୍ଷ ୮ମ ଓ ନବମ ସଂଖ୍ୟା (ନଭେମ୍ବର-ଡିସେମ୍ବର, ୧୯୧୪)ର ୧୭୩ ପୃଷ୍ଠାରେ ମଧ୍ୟ ପ୍ରକାଶିତ ହୋଇଥିଲା । **ମୁକୁର**ରେ ଲେଖକ ସ୍ଥାନରେ ଲେଖାଥିଲା: ଶ୍ରୀ- ।

(୩) ଚତୁର୍ଥ କବିତା 'ସନ୍ତାନର ଉକ୍ତି' **ମୁକୁର** ନବମ ବର୍ଷ ଅଷ୍ଟମ-ନବମ ସଂଖ୍ୟା (ନଭେମ୍ବର-ଡିସେମ୍ବର, ୧୯୧୪) ପୃ.୧୮୭ରେ ପ୍ରକାଶିତ ହୋଇଥିଲା । ପତ୍ରିକାରେ ମଧ୍ୟ ଏହାର ଶୀର୍ଷକ ଥିଲା 'ସନ୍ତାନର ଉକ୍ତି' ଓ ଲେଖକ ଥିଲେ 'ଶ୍ରୀ-' ।

(୪) ପଞ୍ଚମ କବିତା 'ସମ୍ମିଳନୀ'ର ପତ୍ରିକାରେ ଶୀର୍ଷକ ଥିଲା 'ଜାତୀୟ ଗୀତ' ଓ ଏହା **ମୁକୁର** ଦଶମ ବର୍ଷ ସପ୍ତମ ସଂଖ୍ୟା(ଅକ୍ଟୋବର, ୧୯୧୫)ର ୨୨୨ ପୃଷ୍ଠାରେ ସ୍ଥାନିତ ହୋଇଥିଲା । ଏହାର ଲେଖକଙ୍କ ନାମ ଗୋପନ କରାଯାଇ ନ ଥିଲା ।

(୫) ଷଷ୍ଠ କବିତା 'ଜାତି ଇତିହାସ' **ମୁକୁର** ପତ୍ରିକାର ଦଶମ ବର୍ଷର ଅଷ୍ଟମ ସଂଖ୍ୟା(ନଭେମ୍ବର, ୧୯୧୪)ର ୨୨୩ ପୃଷ୍ଠାରେ ପ୍ରଥମେ ପ୍ରକାଶିତ । ପତ୍ରିକାରେ ପ୍ରକାଶ ପାଇଲାବେଳେ ଏହାର ଶୀର୍ଷକ ଥିଲା 'ଜାତୀୟ ସଙ୍ଗୀତ' । ପୂର୍ବବର୍ତ୍ତୀ କବିତା ଭଳି ଏଥିରେ ମଧ୍ୟ ମଧୁବାବୁ ନିଜ ନାମକୁ ଗୋପନ କରି ନ ଥିଲେ ।

ଏହି ଛଟି କବିତାର ପାଠ ବ୍ରଜସୁନ୍ଦର ଦାସଙ୍କ ଦ୍ୱାରା ମୁକୁର ପ୍ରେସ୍‌ରେ ମୁଦ୍ରିତ **ଜାତୀୟ ଗୀତ**ର ପାଠକୁ ଅନୁସରଣ କରିଛି । ଆବଶ୍ୟକ ସ୍ଥଳରେ ପତ୍ରିକାପାଠର ସାହାଯ୍ୟ ନିଆଯାଇଛି । ସପ୍ତମ କବିତାଟି ମଧୁବାବୁଙ୍କ **ଓଡ଼ିଆ ବକ୍ତୃତା ଓ ଗୀତ**ରେ ପ୍ରଥମଥର ପାଇଁ ମୁଦ୍ରିତ ହୋଇଥିବାରୁ ସମ୍ପୃକ୍ତ ପୁସ୍ତକର ପାଠକୁ ବାଧ ହୋଇ ଗ୍ରହଣ କରାଯାଇଛି ।

**ଦେବେନ୍ଦ୍ର କୁମାର ଦାଶ**

***

## (୧)

## ଜଣାଣ

(ଲକ୍ଷ୍ମୀ ଠୁଁରି)

ଆହେ ବିଶ୍ୱପତି ଘୁଞ୍ଚାଅ ବିସ୍ମୃତି
ଆଦିମନ୍ତ୍ର ସଦା ଜପୁ ମୋର ମନ,
ଗର୍ଭେ ଥିବାବେଳେ ପ୍ରତିଶ୍ରୁତ ହେଲି
ମାତାଙ୍କ ସେବାରେ ଦେବି ମନ ପ୍ରାଣ ।୧ ।
ଜନ୍ମ ହେଲାକ୍ଷଣି ସ୍ତନ୍ୟଦାନ କରି
ମାତା ମନ୍ତ୍ର ଦେଲେ ‘‘ପରାର୍ଥେ ଜୀବନ’’,
ଶିଶୁକାଳ ବ୍ୟାପି ଥିଲି ମନ୍ତ୍ର ଜପି
ସେ ମନ୍ତ୍ର ଭୁଲିଲି ଲଭିଣ ଯୌବନ । ୨ ।
ଆଶା ଥିଲା ମନେ ଦେଖିବି ଜୀବନେ
ଉତ୍କଳ-ମାତାର ସହାସ୍ୟ ବଦନ,
ସେ ଆଶା ତୁଟିଲା ସ୍ୱପନ ଭାଙ୍ଗିଲା
ନ ଦେଖି ଉତ୍କଳେ କରତବ୍ୟ ଜ୍ଞାନ । ୩ ।

***

## (୨)

## ଉତ୍କଳ ସନ୍ତାନ

### ("ଗୋବିନ୍ଦ ଚନ୍ଦ୍ରରେ" ଯୋଗୀ ଗୀତ ବୃତ୍ତେ)

ତୁ ପରା ବୋଲାଉ ଉତ୍କଳ ସନ୍ତାନ
ତେବେ କିପାଁ ତୁହି ଭୀରୁ,
ତୋହର ଜନନୀ ରୋଦନ କରିଲେ
କହିବାକୁ କିପାଁ ଡ଼ରୁ । ୧ ।
ତୋ ପୂର୍ବ ପୁରୁଷେ ବୀରପଣିଆରେ
ଲଭିଥିଲେ କେତେ ଖ୍ୟାତି,
ହାକିମ ନିକଟେ ଦୁଃଖ କହିବାକୁ
କିପାଁ ଥରେ ତୋର ଛାତି । ୨ ।
ତୋ ପୂର୍ବ ପୁରୁଷେ ଜୟ କରିଥିଲେ
ଗଙ୍ଗାଠାରୁ ଗୋଦାବରୀ,
ତାଙ୍କରି ଔରସେ ଜନ୍ମ ହୋଇ ତୁହି
କେଉଁ ଗୁଣେ ତାଙ୍କ ସରି ? । ୩ ।
ବ୍ରିଟନ ନିବାସୀ ଅତୀବ ସାହସୀ
କାପୁରୁଷେ ଶ୍ରଦ୍ଧା ନାହିଁ,
ଶିଖ-ରାଜପୁତ ଯେ ମାନ୍ୟ ଲଭନ୍ତି
ତୋର ଭାଗ୍ୟେ ତାହା କାହିଁ ? । ୪ ।
ତୁ ମନେ ଭାବୁଛୁ ତୋଷାମୋଦ କରି
ବଢ଼ାଇବୁ ଜାତି ମାନ,
ତୋଷାମୋଦିଆର କୁକୁର ପ୍ରକୃତି
ଅଇଁଠା-ପତରେ ଧ୍ୟାନ । ୫ ।

ତୋଷାମୋଦକାରୀ କ୍ଷିପ୍ତ ଶ୍ୱାନ ପରି
ସହଜେ ଚିହ୍ନା ନ ଯାଏ,
ଭୃତ୍ୟଭାବ ଧରି ଗୋଡ଼ ଚାଟୁ ଚାଟୁ
ବିଷ ଲେପି ଦେଇଥାଏ । ୬ ।

ତୋଷମୋଦ ଅଟେ ଅନ୍ଧାର ଗୋହିରୀ
ସ୍ୱାର୍ଥ ତହିଁ ଲୁଚି ବସେ,
ସରଳ ପଥିକ ବାଟରେ ଭେଟିଲେ,
ଅକାତରେ ତାକୁ ନାଶେ । ୭ ।

ଜାତିର ଉନ୍ନତି ହେବ କିରେ ଭାଇ,
ସ୍ୱାର୍ଥକୁ ଜଗତ ମଣି,
ଗୋଦର ଗୋଡ଼ରେ ମାଉଁସ ଲାଗିଲେ
ଦେହର କି ଶୁଭ ଗଣି ? । ୮ ।

ଜାତିର ଉନ୍ନତି ସେ କାହିଁ କରିବ
ସ୍ୱାର୍ଥେ ଯାର ବ୍ୟସ୍ତ ମନ,
ଶାଗୁଣା ବିଲୁଆ ଚିକିତ୍ସକ ହେଲେ
ଶବ କି ପାଇବ ପ୍ରାଣ ? ୯ ।

ଜାତି ନନ୍ଦିଘୋଷ ଚଳିବ କି ଭାଇ
ସ୍ୱାର୍ଥକୁ ସାରଥି କଲେ,
ଟାଣେ କିରେ ଗାଡ଼ି ଦାନାର ତୋବଡ଼ା
ଘୋଡ଼ା ମୁହେଁ ବନ୍ଧା ଥିଲେ ? ୧୦ ।

ସ୍ୱାର୍ଥର ବନିତା ଅଟେ ତୋଷାମୋଦ
ଭୟ, ମିଥ୍ୟା ତାଙ୍କ ପୁତ୍ର,
ରାଜ୍ୟରେ ବିପ୍ଳବ ନିଶ୍ଚୟ ଘଟିବ
ଏମାନେ ହେଲେ ଏକତ୍ର । ୧୧ ।

ଉଠରେ ଉଠରେ ଉତ୍କଳ ସନ୍ତାନ
ଉଠିବୁ ତୁ କେତେ ଦିନେ,
ପୂରବ ଗୌରବ ପୂରବ ସାହସ
ପଡ଼ିବ କି କେବେ ମନେ । ୧୨ ।

ତୋହର ଜନନୀ ବୀରପ୍ରସବିନୀ
ଧୂଳିରେ ପଡ଼ିଛି ଦେଖ,

ଜନ ସମାଜରେ ଏ ମହୀ ମଧ୍ୟରେ
କିପରି ଦେଖାଉ ମୁଖ । ୧୩ ।
ତୋ ପୂର୍ବ ପୁରୁଷେ ସ୍ୱର୍ଗଧାମେ ଥାଇ
ଭୋଗୁଛନ୍ତି ମନସ୍ତାପ,
ତାଙ୍କର ଜୀବନ କରି ବିସ୍ମରଣ
କରୁଛୁ ତୁ ମହାପାପ । ୧୪ ।
ତୋଷାମୋଦ ଛାଡ଼ି ସ୍ୱାର୍ଥ ପରିହରି
ସତ୍ୟକୁ ଆଶ୍ରୟ କର,
ଦୁଇଦିନ ପରେ ସ୍ୱାଧୀନ ରାଷ୍ଟ୍ରରେ
ମଙ୍ଗଳ ହୋଇବ ତୋର । ୧୫ ।

***

(୩)

## ଜନନୀର ଉକ୍ତି

ମାତା ମାତା ରବ ବହୁଦିନ ହେଲା
ଦୂରରୁ ଶୁଣିଛି ମୁହିଁ,
ଦୂରରୁ ଶବଦ ପବନ ଆଣୁଛି
ନିକଟରେ କେହି ନାହିଁ । ୧ ।
ଗର୍ଭେ ଧରିଥିଲି ଶତ କର୍ମବୀର
ସେମାନେ ଡାକିଲେ ନାହିଁ,
ବାକ୍ୟବୀରଙ୍କର ରବ ଶୁଣୁଅଛି
କର୍ମବୀରେ ଗଲେ ନାହିଁ ? ୨ ।
ଏକ ପୁତ୍ର ମୋର ନୀଳାଚଳ ଧାମେ
ଉଡ଼ାଇଲା ମୋର ଧ୍ୱଜା,
ସମସ୍ତ ଭାଇଙ୍କୁ କୋଳେ ବସାଇଲା
ଭେଦ ନାହିଁ ରାଜା ପ୍ରଜା । ୩ ।
ଇତିହାସ ତୂରୀ ଜଗତେ ଘୋଷୁଛି
ମୋର ସୁତଙ୍କର ଯଶ,
ତାଙ୍କର ବଂଶଜ ଘୃଣିତ ଓଡ଼ିଆ
ଏହା ମୋ କପାଳ ଦୋଷ । ୪ ।
ବହୁ କାଳ ଧରି ରୋଦନ କରୁଛି
ନୟନକୁ ଦିଶୁ ନାହିଁ,
ମୋହର ସନ୍ତାନ କତିକି ଆସିଲେ
ଅଣ୍ଡାଳି ଚିହ୍ନିବି ମୁହିଁ । ୫ ।
ନାହିଁ ମୋର ମାନ ନାହିଁ ମୋର ଧନ
ବଦନେ ଲାଗିଛି ଧୂଳି,
ବୀରପ୍ରସବିନୀ ଶୋଣିତ ରହିଛି
ତୋ ଶିରାରେ ଦେବି ଢାଳି । ୬ ।
ସେ ଶୋଣିତ ବଳେ ବୁଦ୍ଧିର କୌଶଳେ
ହେବୁ ତୁହି କର୍ମବୀର,
ଅତି ଅଳ୍ପ ଦିନେ ପ୍ରଭୁଙ୍କ କୃପାରେ
ତୋର ଦୁଃଖ ହେବ ଦୂର । ୭ ।

***

(୪)

## ସନ୍ତାନର ଉକ୍ତି

ମାଆ ମାଆ ବୋଲି କେତେ ମୁଁ ଖୋଜିଲି
ମାଆକୁ ପାଇଲି ନାହିଁ,
ଭାଇ ଭାଇ ବୋଲି କେତେ ମୁଁ ଡାକିଲି
ନ ଦେଲେ ଉତ୍ତର କେହି । ୧ ।

ଖୋଜିଲି ଅରଣ୍ୟେ ଜନସମାଜରେ
ଖୋଜିଲି ବାରିଧି ତଟ,
ସର୍ବତ୍ର ଦେଖିଲି ମାତା ପଦଚିହ୍ନ
ନ ହେଲା ମାତାର ଭେଟ । ୨ ।

ଭୁବନେଶ୍ୱରରେ ପଦଚିହ୍ନ ପରେ
ଲେଖା ଅଛି ''ରାଜରାଣୀ'',
ନୀଳାଚଳ ଧାମେ ପୂଜା ହେଉଅଛି
ହିନ୍ଦୁଜାତି ମଥା-ମଣି । ୩ ।

ଶୁଣିଅଛି ଶାସ୍ତ୍ରେ ସତୀ ଅପମାନେ
ଧରା ହୁଏ ବିଦାରଣ,
ଅପମାନ ହେତୁ ସୀତା ଦେବୀଙ୍କର
ମହୀ ହୃଦେ ବାସସ୍ଥାନ । ୪ ।

ଅପମାନ ହେତୁ ଜନନୀ ମୋହର
ଉତ୍କଳ ଭୂମଧବାସୀ,
ଉତ୍କଳର ମାଟି ପବିତ୍ର ହୋଇଛି
ସ୍ୱର୍ଗାଦପି ଗରୀୟସୀ । ୫ ।

ଜନନୀର ଦେଖା କରିବାରେ ଇଚ୍ଛା
ଯଦି ହୋଇଥାଏ ମନେ,
ଉତ୍କଳର ମାଟି ଆଲିଙ୍ଗନ କରି
ତା ଧୂଳି ଲେପ ବଦନେ । ୬ ।

ବୀରପ୍ରସବିନୀ କୋଟି ସୁତ ମାତା
ପାଇବ କି ଦରଶନ ?
ମୋ ଭଳି ନିର୍ଗୁଣ ଧନ-ମାନ-ହୀନ
ସନ୍ତାନ କଲେ ରୋଦନ । ୭ ।

କୋଟିଏ ସନ୍ତାନ ଗୋଟିଏ ସ୍ୱରରେ
'ଜନନୀ' 'ଜନନୀ' ଡାକ,
ତୃଷ୍ଣାରେ କାତର ଗଗନକୁ ଚାହିଁ
ଯେସନେ ଡାକେ ଚାତକ । ୮ ।
ଧନ, ମାନ, ଜନ ଯାହା ଉପାର୍ଜନ
କରିଅଛ ଧରାତଳେ,
ହରଷିତ ମନେ କରତବ୍ୟ ଜ୍ଞାନେ
ଆଣିଦିଅ ଯଜ୍ଞସ୍ଥଳେ । ୯ ।
ଜାତି ପ୍ରେମ-ବହ୍ନି ପ୍ରଜ୍ୱଳିତ କର
ସ୍ୱାର୍ଥକୁ ଦିଅ ଆହୁତି,
'ସ୍ୱାର୍ଥମେଧ ଯଜ୍ଞ' ଚାରିଆଡ଼େ ନାଚ
ଛାତିକୁ ମିଶାଇ ଛାତି । ୧୦ ।
ଭୂମିକମ୍ପ ହେବ ଧରଣୀ ଫାଟିବ
ଉଠିବେ ସହସ୍ରଭୁଜା,
ସେହି ତୋର ମାତା, ସେହି ତୋର ତ୍ରାତା,
କର ସେହି ପଦ ପୂଜା । ୧୧ ।

* * *

(୫)

## ସମ୍ମିଳନୀ

ଗଙ୍ଗା ଗୋଦାବରୀ ଯମୁନା କାବେରୀ
ପୂଜା ପାଇ ନାନା ଘାଟେ
ଛାଡ଼ି ନିଜ ମାନ ଲୋଡ଼ି ଜାତି ପ୍ରାଣ
ପ୍ରବେଶିଲେ ସିନ୍ଧୁତଟେ ।
କୋଟି ଜଳବିନ୍ଦୁ ମିଶି ହୋଇ ସିନ୍ଧୁ
ଦେଖାଉଛି ଜାତି ବଳ,
ତଟ ସୀମା ଲଙ୍ଘି ପରବତ ଭାଙ୍ଗି
ନାଚୁଛି ତରଙ୍ଗମାଳ ।
ଦେଖି ଦେବୀଗଣ ଜାତୀୟ ଜୀବନ
ଛାଡ଼ି ନିଜ ଗର୍ବ ମାନ,
ସିନ୍ଧୁରେ ମିଶିଲେ ଉଲ୍ଲାସେ ନାଚିଲେ
ଲଭି ନୂଆ ଜାତି ପ୍ରାଣ ।
ନିଜର ଜୀବନ ଜାତିକୁ ଅର୍ପଣ
କଲେ ମିଳେ ଜାତି ପ୍ରାଣ,
ଜାତୀୟ ଜୀବନ ନ ମିଳିବ କଲେ
ହାଟେ ବାଟେ ଅନ୍ୱେଷଣ ।
ପତିବ୍ରତା ସତୀ ପତିର ମିଳନ
ଲଭିବା ଆଶାରେ ପୋଡ଼େ,
ଜାତିର ମିଳନ ଲଭିବା ଆଶାରେ
ତୋର ପ୍ରାଣ କିଆଁ ଡରେ ?
ଏହି ସମ୍ମିଳନୀ ଜାତି ପ୍ରାଣସିନ୍ଧୁ
କୋଟି ପ୍ରାଣବିନ୍ଦୁ ଧରେ,
ତୋର ପ୍ରାଣବିନ୍ଦୁ ମିଶାଇ ଦେ, ଭାଇ
ଡେଇଁପଡ଼ି ସିନ୍ଧୁ ନୀରେ ।
ତରଙ୍ଗ ଉଠିବ ସିନ୍ଧୁ ଗରଜିବ
ଶୁଣିବୁ ସିଂହର ରବ,
ବ୍ରିଟୀଶ ରାଜ୍ୟରେ ଓଡ଼ିଆ ଜାତିର
ବଢ଼ିବ ମାନ ଗୌରବ ।

***

କୋଟିଏ ସନ୍ତାନ ଗୋଟିଏ ସ୍ୱରରେ
'ଜନନୀ' 'ଜନନୀ' ଡାକ,
ତୃଷ୍ଣାରେ କାତର ଗଗନକୁ ଚାହିଁ
ଯେସନେ ଡାକେ ଚାତକ । ୮ ।
ଧନ, ମାନ, ଜନ ଯାହା ଉପାର୍ଜନ
କରିଅଛ ଧରାତଳେ,
ହରଷିତ ମନେ କରତବ୍ୟ ଜ୍ଞାନେ
ଆଣିଦିଅ ଯଜ୍ଞସ୍ଥଳେ । ୯ ।
ଜାତି ପ୍ରେମ-ବହ୍ନି ପ୍ରଜ୍ୱଳିତ କର
ସ୍ୱାର୍ଥକୁ ଦିଅ ଆହୁତି,
'ସ୍ୱାର୍ଥମେଧ ଯଜ୍ଞ' ଚାରିଆଡ଼େ ନାଚ
ଛାତିକୁ ମିଶାଇ ଛାତି । ୧୦ ।
ଭୂମିକମ୍ପ ହେବ ଧରଣୀ ଫାଟିବ
ଉଠିବେ ସହସ୍ରଭୁଜା,
ସେହି ତୋର ମାତା, ସେହି ତୋର ତ୍ରାତା,
କର ସେହି ପଦ ପୂଜା । ୧୧ ।

***

(୫)

## ସମ୍ମିଳନୀ

ଗଙ୍ଗା ଗୋଦାବରୀ ଯମୁନା କାବେରୀ
ପୂଜା ପାଇ ନାନା ଘାଟେ
ଛାଡ଼ି ନିଜ ମାନ ଲୋଡ଼ି ଜାତି ପ୍ରାଣ
ପ୍ରବେଶିଲେ ସିନ୍ଧୁତଟେ ।
କୋଟି ଜଳବିନ୍ଦୁ ମିଶି ହୋଇ ସିନ୍ଧୁ
ଦେଖାଉଛି ଜାତି ବଳ,
ତଟ ସୀମା ଲଙ୍ଘି ପରବତ ଭାଙ୍ଗି
ନାଚୁଛି ତରଙ୍ଗମାଳ ।
ଦେଖି ଦେବୀଗଣ ଜାତୀୟ ଜୀବନ
ଛାଡ଼ି ନିଜ ଗର୍ବ ମାନ,
ସିନ୍ଧୁରେ ମିଶିଲେ ଉଲ୍ଲାସେ ନାଚିଲେ
ଲଭି ନୂଆ ଜାତି ପ୍ରାଣ ।
ନିଜର ଜୀବନ ଜାତିକୁ ଅର୍ପଣ
କଲେ ମିଳେ ଜାତି ପ୍ରାଣ,
ଜାତୀୟ ଜୀବନ ନ ମିଳିବ କଲେ
ହାଟେ ବାଟେ ଅନ୍ୱେଷଣ ।
ପତିବ୍ରତା ସତୀ ପତିର ମିଳନ
ଲଭିବା ଆଶାରେ ପୋଡ଼େ,
ଜାତିର ମିଳନ ଲଭିବା ଆଶାରେ
ତୋର ପ୍ରାଣ କିଆଁ ଡରେ ?
ଏହି ସମ୍ମିଳନୀ ଜାତି ପ୍ରାଣସିନ୍ଧୁ
କୋଟି ପ୍ରାଣବିନ୍ଦୁ ଧରେ,
ତୋର ପ୍ରାଣବିନ୍ଦୁ ମିଶାଇ ଦେ, ଭାଇ
ଡେଇଁପଡ଼ି ସିନ୍ଧୁ ନୀରେ ।
ତରଙ୍ଗ ଉଠିବ ସିନ୍ଧୁ ଗରଜିବ
ଶୁଣିବୁ ସିଂହର ରବ,
ବ୍ରିଟୀଶ ରାଜ୍ୟରେ ଓଡ଼ିଆ ଜାତିର
ବଢ଼ିବ ମାନ ଗୌରବ ।

***

## (୬)
## ଜାତି ଇତିହାସ

ଜାତି ଇତିହାସ ଜାତିର ନିର୍ଝର
ତହୁଁ ବହେ ସଦା ଜାତି ପ୍ରାଣଧାର,
ସେ ଧାରାରୁ ନୀର ପିଉଛି ଯେ ନର,
ନିଶ୍ଚୟ ହେବ ସେ ଜାତି କର୍ମବୀର ।
କଳ କଳ ରବେ ଛୁଟିଛି ସେ ଧାର
ଅତୀତ କୀରତି ଗାଇ ନିରନ୍ତର,
ଭାବୀ କୀରତିର ଉଦୟେ ନାଚୁଛି,
ଯଥା ଚନ୍ଦ୍ରୋଦୟେ ନାଚେ ରତ୍ନାକର ।
ଧାର ମଧ୍ୟେ ବିଜେ ମୋହିନୀ ପ୍ରତିମା
ଦେଖ ଦେଖ ସେହି ଜନନୀ ତୋହର,
କାନ ଡେରି ଶୁଣ ମାତା କହୁଛନ୍ତି,
ଆସ ଆସ ବତ୍ସ, ନୀର ପାନ କର ।
ଏହି ନୀର ସେବି ବୀର ମୋ ସନ୍ତାନେ,
ବୀରପ୍ରସବିନୀ କ୍ଷୀର ଏହି ନୀର,
ଛାଡ଼ରେ ଆଳସ୍ୟ ବଢ଼ାଅ ସାହସ,
ଜାତି-ନନ୍ଦିଘୋଷ କର ଅଗ୍ରସର ।

***

## (୭)

## ଏ ଭବେ ପାଇବ କାହିଁ ?

ପ୍ରେମର ଚୁମ୍ବନ ଯାହାକୁ ବୋଲନ୍ତି
ଏ ଭବେ ପାଇବ କାହିଁ ?
ସ୍ୱର୍ଗର ଲତିକା ରୋପିଥିଲେ ଦେବେ
ମାନବେ ଚିହ୍ନିଲେ ନାହିଁ ।
ବାରିଧିର ଜଳ ଚନ୍ଦ୍ରମାମୂରତି
କୋଳରେ ଦୋଳାଇ ନାଚେ,
କିନ୍ତୁ କଳା ମେଘ ଗଗନେ ଦେଖିଲେ
ଚନ୍ଦ୍ରମା ଭୟରେ ଲୁଚେ ।
ପ୍ରେମ ଚୁମ୍ବନର ଏ ନୁହେ ଲକ୍ଷଣ
ପ୍ରେମବନ୍ଧ ଛିଣ୍ଡେ କାହିଁ ?
ପ୍ରେମର ମିଳନ ଦୁଧ ପାଣି ପରି
ଆଉ ଛଡ଼ାଛଡ଼ି ନାହିଁ ।
ଫୁଲରୁ ସୁଗନ୍ଧ ପାଇବା ଲୋଭରେ
ଭ୍ରମର ତା' ପାଶେ ଉଡ଼େ,
କିନ୍ତୁ ଭ୍ରମରକୁ ଚୁମ୍ବିବା ଆଶାରେ
ଫୁଲ କି ତା ସ୍ଥାନ ଛାଡ଼େ ।
ରବିର ଉଦୟ ଆକାଶେ ଦେଖିଲେ
କମଳ ତା ଆଖି ମେଲେ,
କିନ୍ତୁ କମଳକୁ ତୁଚ୍ଛ ଜ୍ଞାନ କରି
ରବି ଯାଏ ଅସ୍ତାଚଳେ ।
ପ୍ରୀତିର ମିଳନ ଦୂରୁ ଆକର୍ଷଣ
ଚୁମ୍ବନ ତ ସଂଘର୍ଷଣ,
ସଂଘର୍ଷଣ ହେଲେ ହୁତାଶନ ଜଳେ
ଦହିବାକୁ ମନ ପ୍ରାଣ ।
ରବି ଦୂରେ ଥାଇ କିରଣ ବିତରେ
ପ୍ରାଣ ଦାନ କରେ ଜୀବେ,

ରବିର ଚୁମ୍ବନ ହେଲେ ସଂଘଟନ
ବିପ୍ଳବ ଘଟିବ ଭବେ ।
କଳା ମେଘ ଦେହେ ସୌଦାମିନୀ ହସେ
କବିବର ମନ ତୋଷେ,
ଚପଳା ଆସିଲେ ଚୁମ୍ବନ କରିଲେ
ସମସ୍ତ ଅନ୍ଧାର ଦିଶେ ।

***

# ପ୍ରାକ୍‌କଥନ

ନବକିଶୋର ଦାସଙ୍କ ଦ୍ୱାରା ସଂକଳିତ **ମଧୁବାବୁଙ୍କ ଓଡ଼ିଆ ବକ୍ତୃତା ଓ ଗୀତ**ରେ ମଧୁସୂଦନଙ୍କର ତେରଟି ଛୋଟବଡ଼ ବକ୍ତୃତା ସଂକଳିତ । 'ଉତ୍କଳ-ସମ୍ମିଳନୀ'ରେ ଏହି ସମସ୍ତ ବକ୍ତୃତା ପ୍ରଦାନ କରାଯାଇଥିଲା ଓ ନବକିଶୋର ଉତ୍କଳ ସମ୍ମିଳନୀର ବିଭିନ୍ନ ଅଧିବେଶନର ବିବରଣୀରୁ ଗୋଟିଏକୁ ଛାଡ଼ି ଅବଶିଷ୍ଟ ବାରଟିଯାକ ବକ୍ତୃତା ସଂଗ୍ରହ କରିଥିଲେ । ଏଭଳି ସଂଗ୍ରହ ଦୁଇଟି ପ୍ରଶ୍ନ ପାଇଁ ଖୋରାକ ଯୋଗାଏ : (କ) ଏହି ତେରଟି ବକ୍ତୃତା ବ୍ୟତୀତ ମଧୁସୂଦନ କ'ଣ ଆଉ କୌଣସି ବକ୍ତୃତା 'ଉତ୍କଳ ସମ୍ମିଳନୀ'ରେ ଦେଇନାହାନ୍ତି (ଖ) ବକ୍ତୃତା ବ୍ୟତୀତ ମଧୁବାବୁଙ୍କର କ'ଣ ଆଉ କୌଣସି ଓଡ଼ିଆ ରଚନା ଉତ୍କଳ ସମ୍ମିଳନୀ ବିବରଣୀଗୁଡ଼ିକରେ ସ୍ଥାନ ପାଇନାହିଁ ? ଏ ଦୁଇଟିଯାକ ଉତ୍ତର ନାସ୍ତିବାଚକ । ଏହି ତେରଟି ବକ୍ତୃତା ବାହାରେ ମଧୁସୂଦନଙ୍କର ଆଉ କେତେକ ଛୋଟବଡ଼ ବକ୍ତୃତା ଉତ୍କଳ ସମ୍ମିଳନୀର ବିବରଣୀ ପୁସ୍ତିକାରେ ତଥା ସମକାଳୀନ ସମ୍ବାଦପତ୍ରରେ ଉପଲବ୍ଧ । ନବକିଶୋର ଏଥିରୁ କେତେକ ଦେଖି ନ ଥିଲା ବେଳେ ଆଉ କେତୋଟି ଛୋଟ ଛୋଟ ବକ୍ତୃତା/ ମନ୍ତବ୍ୟକୁ ଗୁରୁତ୍ୱହୀନ ବୋଲି ବିଚାର କରି ଛାଡ଼ି ଦେଇଛନ୍ତି । ବିଶେଷତଃ ଉତ୍କଳ ସମ୍ମିଳନୀର ଚତୁର୍ଥ ଓ ଚତୁର୍ଦ୍ଦଶ ଅଧିବେଶନରେ ବିବରଣ ପୁସ୍ତିକା ଦେଖିଥିବାର ସଂକେତ ତାଙ୍କ ସଂକଳିତ ପୂର୍ବୋକ୍ତ ପୁସ୍ତିକା ବା ରଚିତ **ଉତ୍କଳ ଗୌରବ ମଧୁସୂଦନ** ପୁସ୍ତକରୁ ମିଳେନାହିଁ । ଷଷ୍ଠ ଓ ସପ୍ତମ ଅଧିବେଶନର ବିବରଣୀ ପୁସ୍ତିକା ମୁଦ୍ରିତ ହୋଇ ନଥିଲେ ବି ତାହାର ବିବରଣୀ ସମକାଳୀନ ସମ୍ବାଦପତ୍ର ପୃଷ୍ଠାରୁ ସଂଗ୍ରହ କରାଯାଇପାରେ । ପ୍ରଖ୍ୟାତ ଔପନ୍ୟାସିକ ସୁରେନ୍ଦ୍ର ମହାନ୍ତି ଉତ୍କଳ-ସମ୍ମିଳନୀର କୌଣସି ଅଧିବେଶନର ବିବରଣୀ ପୁସ୍ତିକା ଦେଖିନାହାନ୍ତି । ତେଣୁ ଉତ୍କଳ-ସମ୍ମିଳନୀ ସହ ମଧୁସୂଦନଙ୍କର ସମ୍ପର୍କ ସମ୍ପର୍କରେ ଭିତ୍ତିହୀନ ଓ ସମ୍ପୂର୍ଣ୍ଣ ପରିକଳ୍ପିତ ଚିତ୍ର ସେ **କୁଳବୃଦ୍ଧ** ପୁସ୍ତକରେ ଉପସ୍ଥାପିତ କରିଛନ୍ତି । (ପୃ. ୮୨-୮୫; ପୃ.୧୧୨-୧୧୪; ପୃ.୧୩୬-୧୪୪; ପୃ.୧୫୨-୧୫୬) ବାସ୍ତବତଃ ମଧୁସୂଦନ ଆରମ୍ଭରୁ ଥିଲେ ଉତ୍କଳ-ସମ୍ମିଳନୀର ପ୍ରମୁଖ କର୍ତ୍ତା । ପଞ୍ଚମ ଅଧିବେଶନଠାରୁ ଏକ ବିକଳ୍ପ ନେତୃତ୍ୱର ଅଭ୍ୟୁଦୟ ଗୋପବନ୍ଧୁଙ୍କ ଉଦ୍ୟମରେ ଗଢ଼ି ଉଠୁଥିଲେ ହେଁ ମଧୁସୂଦନ ସେହି ନେତୃତ୍ୱକୁ ଆପଣେଇ ନେଇ ସଂଘର୍ଷ ପାଇଁ ସୁଯୋଗ ଦେଇ ନ ଥିଲେ । ୧୯୧୮ରେ ଅନୁଷ୍ଠିତ ତ୍ରୟୋଦଶ ଅଧିବେଶନ ଓ ସେହି ବର୍ଷ ଅନୁଷ୍ଠିତ ହୋଇଥିବା ବିଶେଷ ଅଧିବେଶନ ତ ଥିଲା ମଧୁସୂଦନଙ୍କ 'One Man Show' । ବିଭିନ୍ନ କାରଣରୁ ଚତୁର୍ଦ୍ଦଶ ଅଧିବେଶନ ମଣ୍ଡପରେ ନିଜର ଅଭିମାନ ବ୍ୟକ୍ତ କରି ସେ ଉତ୍କଳ-ସମ୍ମିଳନୀଠାରୁ ନିଜକୁ ଦୂରେଇ ନେଇଥିଲେ । ତେଣୁ କେବଳ ୧୯୧୫ରେ ସମ୍ବଲପୁରରେ ଅନୁଷ୍ଠିତ ହୋଇଥିବା

ଏକାଦଶ ଅଧିବେଶନ ଓ ୧୯୧୬ରେ ଅନୁଷ୍ଠିତ ହୋଇଥିବା ବାଲେଶ୍ୱର ଅଧିବେଶନକୁ ବାଦ ଦେଲେ ପ୍ରଥମଠାରୁ ଚତୁର୍ଦ୍ଦଶ ପର୍ଯ୍ୟନ୍ତ ଉତ୍କଳ ସମ୍ମିଳନୀର ସମସ୍ତ ବାର୍ଷିକ ଓ ବିଶେଷ ଅଧିବେଶନରେ ଯୋଗ ଦେଇଛନ୍ତି ତଥା ବକ୍ତୃତା ପ୍ରଦାନ କରିଛନ୍ତି ମଧୁସୂଦନ । ସପ୍ତମ ଅଧିବେଶନ (୧୯୧୦ରେ କଟକଠାରେ ଅନୁଷ୍ଠିତ)ର ବିବରଣୀ ପୁସ୍ତକ ମୁଦ୍ରିତ ହୋଇ ନ ଥିବାରୁ ତଥା ତାଙ୍କର ବକ୍ତୃତା କୌଣସି ସମ୍ବାଦପତ୍ରରେ ପ୍ରକାଶିତ ନ ହୋଇଥିଲେ ବି ସେ ସେଥିରେ ଅଂଶଗ୍ରହଣ କରିଥିବାର ଜଣାଯାଏ । ଉକ୍ତ ଅଧିବେଶନରେ ଦ୍ୱିତୀୟ ଓ ଚତୁର୍ଥ ପ୍ରସ୍ତାବର ପ୍ରସ୍ତାବକ ଥିଲେ ମଧୁସୂଦନ (ଦାଶ: ୨୦୦୫: ପୃ. ୨୬୮-୨୬୯) । ତେଣୁ ବେଳେବେଳେ ଅଭିମାନ କରି ସେ ଉତ୍କଳ ସମ୍ମିଳନୀରୁ ଦୂରେଇ ରହୁଥିବାର ଯେଉଁ ଚିତ୍ର ସୁରେନ୍ଦ୍ର ମହାନ୍ତି ଉପସ୍ଥାପନ କରିଛନ୍ତି, ତାହା ଭିତ୍ତିହୀନ ।

ବର୍ତ୍ତମାନର ସଂଗ୍ରହର ଏହି ବିଭାଗରେ ମଧୁସୂଦନଙ୍କର ଓଡ଼ିଆ ବକ୍ତୃତା, ମନ୍ତବ୍ୟ, ପ୍ରବନ୍ଧ, ବାର୍ତ୍ତା, ପ୍ରଚାରପତ୍ର ଓ ପତ୍ର ଆକାରରେ ଥିବା ତିରିଶଟି ଉପାଦାନ ଉପସ୍ଥାପିତ । ସଂଗ୍ରାହକଦ୍ୱୟ ଉତ୍କଳ ସମ୍ମିଳନୀର ପଞ୍ଚମ ଅଧିବେଶନରେ ବିବରଣୀ ଦେଖିବା/ବ୍ୟବହାର କରିବାର ସୁଯୋଗ ପାଇ ନଥିବାରୁ ସେଥିରେ ଯେ ମଧୁସୂଦନଙ୍କର ଆଉ କୌଣସି ଭାଷଣ/ମନ୍ତବ୍ୟ ନାହିଁ – ତାହା କହିପାରିବେ ନାହିଁ । ଏଠାରେ ଉପସ୍ଥାପିତ ଉପାଦାନଗୁଡ଼ିକ ଯେଉଁ ସୂତ୍ରରୁ ସଂଗ୍ରହ କରାଯାଇଛି ଓ ତାହା ଯେଉଁ ପରିପ୍ରେକ୍ଷୀରେ ପ୍ରଥମେ ଉପସ୍ଥାପିତ କରାଯାଇଥିଲା, ତାହାର ଏକ ବିବରଣୀ ପ୍ରଦାନ କରାଯାଉଛି ।

୧. ଉତ୍କଳ ସମ୍ମିଳନୀର ଜନ୍ମତିଥି ହେଉଛି ୧୯୦୩ ମସିହା ଅକ୍ଟୋବର ୨୫ ତାରିଖ । କଟକରେ ଥିବା କନିକା ରାଜବାଟୀରେ ଏହି ଅନୁଷ୍ଠାନରେ ଶୁଭାରମ୍ଭ । ଉତ୍କଳ ସମ୍ମିଳନୀର ସେହି ବୈଠକରେ ମଧୁସୂଦନ ଦେଇଥିବା ଭାଷଣର ବିଷୟ ଥିଲା ଜାତି କହିଲେ କଣ ବୁଝାଯାଏ ଓ ଜାତି ଗଠନ ପାଇଁ ଗୋଟିଏ ସମ୍ମିଳନୀର କିଭଳି ଆବଶ୍ୟକତା ରହିଛି । ସଂପୃକ୍ତ ବକ୍ତୃତାଟି ସମକାଳର କୌଣସି ସମ୍ବାଦପତ୍ର ବା ଉତ୍କଳ ସମ୍ମିଳନୀ ସଭାର ବିବରଣ (୧୯୦୪)ରେ ପ୍ରକାଶିତ ହୋଇଥିବାର ଜଣାଯାଏନାହିଁ । ସ୍ୱର୍ଗତ ନବକିଶୋର ଦାସ କେଉଁ ସୂତ୍ରରୁ ବକ୍ତୃତାଟି ସଂଗ୍ରହ କରିଛନ୍ତି, ତାହା ଜଣାଇ ନାହାନ୍ତି । ଏଠାରେ ସଂଗୃହୀତ ବକ୍ତୃତାଟି **ମଧୁବାବୁଙ୍କ ଓଡ଼ିଆ ବକ୍ତୃତା ଓ ଗୀତର** ପୃ.୧୧-୧୨ରୁ ପୁନଃମୁଦ୍ରିତ ।

୨. ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନର ବିବରଣୀ ୧୯୦୪ ମସିହାରେ କଟକ ପ୍ରିଣ୍ଟିଂ କମ୍ପାନୀରେ ମୁଦ୍ରିତ ହୋଇ ପ୍ରକାଶିତ ହୋଇଥିଲା । ସେଥିରେ 'ଉତ୍କଳ ସମ୍ମିଳନୀ ସଭା ୧୯୦୩ – ଉଦ୍ଦେଶ୍ୟ' ଶୀର୍ଷକରେ ଏକ ଉପକ୍ରମଣିକା ସଂଯୋଜିତ – ଯାହାର ଲେଖକ ଥିଲେ ମଧୁସୂଦନ ଦାସ । ସଂପୃକ୍ତ ଉପକ୍ରମଣିକା ପ୍ରଥମ

ଅଧିବେଶନ ବିବରଣୀ ପୁସ୍ତିକାରୁ ଗୃହୀତ ହୋଇ ବର୍ତ୍ତମାନ ସଂକଳନରେ 'ଉତ୍କଳ ସମ୍ମିଳନୀ ସଭାର ଉଦ୍ଦେଶ୍ୟ' ଶୀର୍ଷକରେ ମୁଦ୍ରିତ ।

୩. ପ୍ରଥମ ଅଧିବେଶନର ଏକ ସପ୍ତାହ ପୂର୍ବରୁ ସରକାରୀ କର୍ମଚାରୀମାନଙ୍କୁ ଏଥିରେ ଯୋଗ ନ ଦେବା ପାଇଁ ନିର୍ଦ୍ଦେଶ ଉପରସ୍ତରରୁ ଦିଆଯାଇଥିଲା । ଉତ୍କଳ ସମ୍ମିଳନୀ ପ୍ରସ୍ତୁତି କମିଟି ଡିସେମ୍ବର ୨୪, ୧୯୦୩ରେ ସ୍ଥିର କଲେ ଯେ ଏ ସମ୍ପର୍କରେ ଏକ ତାରବାର୍ତ୍ତା ଲେଫ୍‌ଟନାଣ୍ଟ ଗଭର୍ଣ୍ଣରଙ୍କ ନିକଟକୁ ପଠାଯାଇ ଏହି ନିଷେଧାଦେଶ ପ୍ରତ୍ୟାହାରର ପ୍ରାର୍ଥନା କରାଯିବ । ଏହି ନିଷ୍ପତ୍ତିକୁ କାର୍ଯ୍ୟକାରୀ କରିବାକୁ ଯାଇ ମଧୁସୂଦନ ଏକ ତାରବାର୍ତ୍ତା ସେହିଦିନ ପଠାଇଥିଲେ । ସମ୍ପୃକ୍ତ ତାରବାର୍ତ୍ତାର ଅନୁବାଦ ମଧୁସୂଦନଙ୍କ ଦ୍ୱାରା ପ୍ରସ୍ତୁତ **ଉତ୍କଳ ସମ୍ମିଳନୀ ସଭାର ବିବରଣ** ପୁସ୍ତକରେ ସଂଯୋଜିତ । ସମ୍ପୃକ୍ତ ପୁସ୍ତିକାରୁ ଗୃହୀତ ହୋଇ ଆଲୋଚ୍ୟ ସଂକଳନରେ ଏହା ପୁନଃମୁଦ୍ରିତ ।

୪. ପ୍ରଥମ ଅଧିବେଶନର ତୃତୀୟ ପ୍ରସ୍ତାବର ସମର୍ଥକ ହିସାବରେ ଏହି କ୍ଷୁଦ୍ର ବକ୍ତୃତାଟି ପ୍ରଦତ୍ତ । ସମ୍ପୃକ୍ତ ପ୍ରସ୍ତାବଟି ହେଲା: ''ଉତ୍କଳୀୟମାନେ ଅନ୍ୟ ଯେଉଁ ଜାତିମାନଙ୍କ ସଂଶ୍ରବରେ ଆସିଅଛନ୍ତି ସେମାନଙ୍କ ସଙ୍ଗେ ଉତ୍କଳୀୟମାନଙ୍କର ସଖ୍ୟ ଓ ଭ୍ରାତୃଭାବର ସଂରକ୍ଷଣ ଓ ସମ୍ବର୍ଦ୍ଧନ ଏକାନ୍ତ ବାଞ୍ଛନୀୟ ବୋଲି ଏହି ଉତ୍କଳ ସମ୍ମିଳନୀ ସଭା ସ୍ଥିର କରୁଅଛନ୍ତି ।'' ଏହି ପ୍ରସ୍ତାବର ପ୍ରସ୍ତାବକ ଥିଲେ ବାଲେଶ୍ୱରର ରାଜା ବୈକୁଣ୍ଠନାଥ ଦେ ବାହାଦୁର ଓ ଅନୁମୋଦକ ଥିଲେ ମଞ୍ଜୁଷାର ରାଜଗୁରୁ ଶ୍ରୀଯୁକ୍ତ ରାଜଗୋପାଳ ଆଚାରୀ । ମଧୁସୂଦନଙ୍କ ବ୍ୟତୀତ ଏହି ପ୍ରସ୍ତାବର ଆଉ ଦୁଇଜଣ ସମର୍ଥକ ମଧ ଥିଲେ; ସେମାନେ ହେଲେ — ମେଦିନୀପୁରର ଓକିଲ ରାଧାନାଥ ପତି ଓ କଟକର ପାଦ୍ରୀ ରେଭରେଣ୍ଡ ଏ.ଏଚ୍.ୟଙ୍ଗ । ମଧୁସୂଦନଙ୍କ ବକ୍ତବ୍ୟ ଉଦ୍ଧାର କରିବା ପୂର୍ବରୁ ସମ୍ମିଳନୀର ବିବରଣୀ ପୁସ୍ତିକାରେ କୁହାଯାଇଥିଲା– ''ସରସ ଓ ଉତ୍ସାହପୂର୍ଣ୍ଣ ଓଡ଼ିଆ ଓ ଇଂରେଜୀ ଭାଷାରେ ବକ୍ତୃତା ପ୍ରଦାନ କରିଥିଲେ । ତହିଁର ମର୍ମ ଏହି କି –'' । ଏହି ଭାଷଣ ଇଂରାଜୀରେ **ଓଡ଼ିଆ ଓ ନବସମ୍ବାଦ** ସାପ୍ତାହିକ ସମ୍ବାଦପତ୍ରରେ ପ୍ରକାଶିତ ହୋଇଥିଲା । (ଦାଶ: ୨୦୦୫: ପୃ.୧୧୬-୧୭)

୫. ଉତ୍କଳ ସମ୍ମିଳନୀର ଦ୍ୱିତୀୟ ବାର୍ଷିକ ଅଧିବେଶନ କଟକର ଇଦ୍‌ଗା ପଡ଼ିଆରେ ୨୮.୧୨.୧୯୦୪ ଓ ୨୯.୧୨.୧୯୦୪ ତାରିଖରେ ଅନୁଷ୍ଠିତ ହୋଇଥିଲା । ସଂପୃକ୍ତ ଅଧିବେଶନର ପ୍ରାରମ୍ଭରେ ମଧୁସୂଦନ ଦେଇଥିବା କେତେକ ସୂଚନା ଏଠାରେ ପଞ୍ଚମ ଉପାଦାନ ଭାବରେ ଉପସ୍ଥାପିତ ଓ ଏହି ବକ୍ତବ୍ୟ ଉତ୍କଳ ସମ୍ମିଳନୀ ଦ୍ୱିତୀୟ ଅଧିବେଶନର ବିବରଣୀ ପୁସ୍ତିକା(ପୃ.୨-୩)ରୁ ଗୃହୀତ ।

୬. ଦ୍ୱିତୀୟ ଅଧିବେଶନର ପ୍ରଥମ ଦିନରେ ଉପସ୍ଥାପିତ ଓ ପଞ୍ଚମ ପ୍ରସ୍ତାବ ଥିଲା: ''ଉତ୍କଳୀୟମାନେ ଅନ୍ୟ ଯେଉଁ ଜାତିମାନଙ୍କ ସଂଶ୍ରବରେ ଆସିଅଛନ୍ତି ସେମାନଙ୍କ

ସଙ୍ଗେ ଉତ୍କଳୀୟମାନଙ୍କର ସଖ୍ୟ ଓ ଭାଇଭାବର ସଂରକ୍ଷଣ ସମର୍ଦ୍ଧନ ଏକାନ୍ତ ବାଞ୍ଛନୀୟ ବୋଲି ଏହି ଉତ୍କଳ ସମ୍ମିଳନୀ ସଭା ସ୍ଥିର କରୁଅଛନ୍ତି ।'' ଏହି ପ୍ରସ୍ତାବର ଆଲୋଚନା ପ୍ରସ୍ତାବକ, ଅନୁମୋଦକ ଓ ସମର୍ଥକମାନେ କରିସାରିଲାପରେ ମଧୁସୂଦନ ସଂପୃକ୍ତ ପ୍ରସ୍ତାବକୁ ସମର୍ଥନ କରି ଆପଣାର ବକ୍ତବ୍ୟ ପ୍ରଦାନ କରିଥିଲେ । ସଂପୃକ୍ତ ବକ୍ତବ୍ୟ ୧୯୦୬ ମସିହାରେ କଟକ ପ୍ରିଣ୍ଟିଂ କମ୍ପାନୀ ଦ୍ୱାରା ପ୍ରକାଶିତ **ଉତ୍କଳ ସମ୍ମିଳନୀ ସଭା ଦ୍ୱିତୀୟ ଅଧିବେଶନର ବିବରଣୀ** ପୁସ୍ତିକାରୁ (ପୃ.୩୮-୪୩)ରୁ ଗୃହୀତ । ସୂଚନାଯୋଗ୍ୟ ଯେ ମୂଳ କାର୍ଯ୍ୟକ୍ରମ ଅନୁସାରେ ପଞ୍ଚମ ପ୍ରସ୍ତାବର ସମର୍ଥକ ଭାବରେ ମଧୁସୂଦନଙ୍କର ନାମ ନ ଥିଲା ।

୭. ଦ୍ୱିତୀୟ ଅଧିବେଶନର ଦ୍ୱିତୀୟ ଦିନରେ ଆଗତ ଦଶମ ପ୍ରସ୍ତାବ ଥିଲା:

ଉତ୍କଳରେ ଲୁଗାବୁଣାର ଉନ୍ନତି ସାଧନ ଉଦ୍ଦେଶ୍ୟରେ ସାଧାରଣଙ୍କ ବ୍ୟବହାରୋପଯୋଗୀ ଲୁଗାମାନ ବୁଣିବା ନିମନ୍ତେ ସ୍ଥାନୀୟ ତନ୍ତିମାନଙ୍କୁ ନିଯୁକ୍ତ କରିବା କାରଣ ସମ୍ମିଳନୀର ଶାଖାସମିତିମାନଙ୍କୁ ଅନୁରୋଧ କରାଯାଉ; ଏବଂ ଶାଖାସମିତିମାନ ଯେଉଁ ତନ୍ତିମାନଙ୍କୁ ଲୁଗାବୁଣା କାର୍ଯ୍ୟରେ ନିଯୁକ୍ତ କରିବାର ସ୍ଥିର କରିବେ, ନୂତନ ତନ୍ତଦ୍ୱାରା ଲୁଗାବୁଣିବା ପ୍ରଣାଳୀ ଉକ୍ତ ତନ୍ତିମାନଙ୍କୁ ଏହି ସମ୍ମିଳନୀ ବିନା ଖର୍ଚ୍ଚରେ ଶିକ୍ଷା ଦେବାର ନିର୍ଦ୍ଧାରିତ ହେଉ । ଏହି ନିର୍ଦ୍ଧାରଣକୁ କାର୍ଯ୍ୟରେ ପରିଣତ କରିବା ଲାଗି ତଳ ଲିଖିତ ବ୍ୟକ୍ତିମାନଙ୍କ ଦ୍ୱାରା ଗୋଟିଏ ସମିତି ଗଠିତ ହେଉ ଓ ସଭ୍ୟ ସଂଖ୍ୟା ବୃଦ୍ଧି କରିବାର କ୍ଷମତା ଉକ୍ତ ସମିତିଠାରେ ନ୍ୟସ୍ତ ହେଉ ।

ଏହି ପ୍ରସ୍ତାବ/ନିର୍ଦ୍ଧାରଣର ପ୍ରସ୍ତାବକ ଥିଲେ ମଧୁପୁରର ରାଜା ଓ ଅନୁମୋଦକ ଥିଲେ କୃଷ୍ଣଚନ୍ଦ୍ର ପାଲିତ । ସମର୍ଥକଦ୍ୱୟ ଥିଲେ ଭଗବାନ ଦାସ ଓ ମଧୁସୂଦନ ଦାସ । ଦ୍ୱିତୀୟ ସମର୍ଥକ ଭାବରେ ମଧୁସୂଦନ ଯେଉଁ ବକ୍ତୃତା ପ୍ରଦାନ କରିଥିଲେ, ତାହା **ଉତ୍କଳ ସମ୍ମିଳନୀ ସଭା ଦ୍ୱିତୀୟ ଅଧିବେଶନର ବିବରଣୀ** ପୁସ୍ତିକାରୁ (ପୃ.୬୦-୬୩) ଗୃହୀତ ହୋଇ ଏଠାରେ ପୁନଃମୁଦ୍ରିତ ।

୮. ଉତ୍କଳ ସମ୍ମିଳନୀର ତୃତୀୟବାର୍ଷିକ ଅଧିବେଶନ ବାଲେଶ୍ୱରର ପରମିଟ୍ ପଡ଼ିଆରେ ୧୯୦୬ ମସିହା ଏପ୍ରିଲ୍ ୧୭ ଓ ୧୮ ତାରିଖରେ ଅନୁଷ୍ଠିତ ହୋଇଥିଲା । ଉକ୍ତ ଅଧିବେଶନରେ ପ୍ରଥମ ଦିନରେ ଆଗତ ଦ୍ୱିତୀୟ ପ୍ରସ୍ତାବ ଥିଲା:

ମହାମାନ୍ୟ ଭାରତସମ୍ରାଟଙ୍କ ରାଜପ୍ରତିନିଧିମାନେ ଉତ୍କଳ ଓ ସମ୍ବଲପୁର ପ୍ରଦେଶର ଉତ୍କଳଭାଷୀ ଜନସମୂହକୁ ଏକଶାସନାଧୀନ କରିଥିବାରୁ ସେମାନଙ୍କ ପ୍ରତି ଏହି ସମ୍ମିଳନୀ ହୃଦୟର ଗଭୀରତମ କୃତଜ୍ଞତା ପ୍ରଦର୍ଶନ କରୁଅଛନ୍ତି ଏବଂ ଗଞ୍ଜାମ ସହ ସମଗ୍ର ଉତ୍କଳଭାଷୀ ପ୍ରଦେଶମାନ ନିକଟ ଭବିଷ୍ୟତରେ ଏକତ୍ରୀଭୂତ ହୋଇ ଏକ ଶାସନାଧୀନ ହେବାର ବିଶେଷ ଆଶା କରନ୍ତି ।

ଏହି ପ୍ରସ୍ତାବର ପ୍ରସ୍ତାବକ ରାଜା ବୈକୁଣ୍ଠନାଥ ଦେ ଥିଲାବେଳେ ମଧୁସୂଦନ ଥିଲେ ଅନୁମୋଦକ। ବିଶ୍ୱନାଥ ମିଶ୍ର ପ୍ରମୁଖ ଚାରିଜଣ ଏହି ପ୍ରସ୍ତାବର ଥିଲେ ସମର୍ଥକ। ଆଲୋଚ୍ୟ ପ୍ରସ୍ତାବ ଅନୁମୋଦନ କରିବାକୁ ଯାଇ ଅଷ୍ଟମ ଉପାଦାନ ଭାବରେ ଉପସ୍ଥାପିତ ବକ୍ତୃତାଟି ମଧୁସୂଦନ ପ୍ରଦାନ କରିଥିଲେ ଓ ଏହା ଉତ୍କଳ ସାହିତ୍ୟ ପ୍ରେସ୍, କଟକରେ ୧୯୦୬ରେ ମୁଦ୍ରିତ **ଉତ୍କଳ ସମ୍ମିଳନୀର ବିବରଣୀ: ତୃତୀୟ ଅଧିବେଶନ** (ପୃ.୩୧-୩୨)ରୁ ଗୃହୀତ।

୯. ତୃତୀୟ ଅଧିବେଶନର ପ୍ରଥମ ଦିନରେ ଆଗତ ଚତୁର୍ଥ ପ୍ରସ୍ତାବ ଥିଲା :

> ଏହି ସମ୍ମିଳନୀର ପୃଷ୍ଠପୋଷକ ଓଡ଼ିଶାର ଭୂତପୂର୍ବ କମିଶନର ଇ.ଏଫ୍.ଗ୍ରାଉସ୍, ଆଇ.ସି.ଏସ୍. କେନ୍ଦୁଝରର ଭୂତପୂର୍ବ ମହାରାଜା ଧନୁର୍ଜ୍ଜୟ ନାରାୟଣ ଭଞ୍ଜଦେଓ, ପାରଳାଖେମିଡ଼ିର ରାଜା ଗଜପତି ଗୌରଚନ୍ଦ୍ର ନାରାୟଣ ଦେଓ, ସି.ଆଇ.ଇ., ଖଣ୍ଡପଡ଼ାର ରାଜା ନଟବର ମର୍ଦ୍ଦରାଜ ହରିଚନ୍ଦନ, ହିନ୍ଦୋଳର ରାଜା ଜନାର୍ଦ୍ଦନ ଜଗଦେବ, ବାଲେଶ୍ୱରର ଜମିଦାର ରାଜନାରାୟଣ ଦାସ ଓ କଟକର ଗବର୍ଣ୍ଣମେଣ୍ଟ ଉକିଲ ଓ ଜମିଦାର ରାୟ ହରିବଲ୍ଲଭ ବୋଷ ବାହାଦୁର ଗତବର୍ଷ ଅକାଳରେ କାଳଗ୍ରାସରେ ପତିତ ହୋଇଥିବାରୁ ଏହି ସମ୍ମିଳନୀ ସଭା ଆନ୍ତରିକ ଦୁଃଖପ୍ରକାଶ କରୁଅଛନ୍ତି ଏବଂ ଏହି ପ୍ରସ୍ତାବର ଏକ ଏକ ଖଣ୍ଡ ପ୍ରତିଲିପି ସେମାନଙ୍କ ବଂଶଧରମାନଙ୍କ ନିକଟକୁ ପ୍ରେରଣ କରିବାର ନିର୍ଦ୍ଧାରଣ କରୁଅଛନ୍ତି।

ଏହି ପ୍ରସ୍ତାବର ପ୍ରସ୍ତାବକ ଥିଲେ ମଧୁବାବୁ, ଅନୁମୋଦକ ଥିଲେ ଫକୀରମୋହନ, ଗୌରୀଶଙ୍କରଙ୍କ ସମେତ ଚାରିଜଣ ଥିଲେ ସମର୍ଥକ। ଆଲୋଚ୍ୟ ପ୍ରସ୍ତାବର ପ୍ରସ୍ତାବକ ଭାବରେ ମଧୁସୂଦନ ଦେଇଥିବା ବକ୍ତୃତା ଏଠାରେ ନବମ ଉପାଦାନ ଭାବରେ ଉପସ୍ଥାପିତ। ଏହି ବକ୍ତୃତା **ଉତ୍କଳ ସମ୍ମିଳନୀର ବିବରଣୀ: ତୃତୀୟ ଅଧିବେଶନ**ରୁ (ପୃ.୩୬-୩୭) ଗୃହୀତ।

୧୦. ଦଶମ ଉପାଦାନ ପୂର୍ବୋକ୍ତ ତୃତୀୟ ଅଧିବେଶନରେ ପ୍ରଦତ୍ତ ଏକ କ୍ଷୁଦ୍ର ବକ୍ତୃତା। ଆଲୋଚ୍ୟ ଅଧିବେଶନର ଦ୍ୱିତୀୟ ଦିନରେ ଚତୁର୍ଦ୍ଦଶ ପ୍ରସ୍ତାବର ପ୍ରସ୍ତାବକ ଭାବରେ ଆଗତ କରିବା ଅବସରରେ ମଧୁସୂଦନ ଏହା ପ୍ରଦାନ କରିଥିଲେ। ସଂପୃକ୍ତ ପ୍ରସ୍ତାବଟି ହେଲା:

> ସମ୍ମିଳନୀର ପ୍ରସ୍ତାବମାନଙ୍କୁ କାର୍ଯ୍ୟରେ ପରିଣତ କରିବା ଉଦ୍ଦେଶ୍ୟରେ ଅର୍ଥ ସଂଗ୍ରହ ଓ ସଭ୍ୟ ସଂଖ୍ୟା ବୃଦ୍ଧିକରଣ ନିମନ୍ତେ ଗତ ଅଧିବେଶନରେ ଯେଉଁ ସମିତି ଗଠିତ ହୋଇଥିଲା ସେହି ସମିତି ସ୍ଥିରତର ରଖାଯାଇ ତତ୍‌ପ୍ରତି ଉକ୍ତ ଉଦ୍ଦେଶ୍ୟ ସାଧନ ନିମନ୍ତେ ଅର୍ଥ ସଂଗ୍ରହର ଓ ସଭ୍ୟସଂଖ୍ୟା ବୃଦ୍ଧି କରିବାର କ୍ଷମତା ନ୍ୟସ୍ତ କରାଯାଇ ତାହା ଅଚିରେ ଯେପରି କାର୍ଯ୍ୟରେ ପରିଣତ ହୁଏ ତତ୍ ସମ୍ବନ୍ଧରେ ବିଶେଷ ଚେଷ୍ଟା କରାଯାଉ।

ମଧୁସୂଦନଙ୍କ ଏହି ବକ୍ତୃତା ମଧ୍ୟ **ଉତ୍କଳ ସମ୍ମିଳନୀର ବିବରଣ: ତୃତୀୟ-ଅଧିବେଶନ ପୁସ୍ତିକା**(ପୃ.୫୦)ରୁ ପୁନଃମୁଦ୍ରିତ ।

୧୧. ଉତ୍କଳ ସମ୍ମିଳନୀର ଚତୁର୍ଥ ବାର୍ଷିକ ଅଧିବେଶନ ବ୍ରହ୍ମପୁରଠାରେ ୨୬.୧୨.୧୯୦୬ ଓ ୨୭.୧୨.୧୯୦୬ରେ ଅନୁଷ୍ଠିତ ହୋଇଥିଲା । ସମ୍ପୃକ୍ତ ଅଧିବେଶନର ଷଷ୍ଠ ପ୍ରସ୍ତାବର ବକ୍ତବ୍ୟ ଥିଲା: ''ପ୍ରତିବେଶୀ ଉତ୍କଳୀୟେତର ଜାତିମାନଙ୍କ ସହିତ ସୌହାର୍ଦ୍ଦ୍ୟ ଓ ଭ୍ରାତୃଭାବ ସଂସ୍ଥାପନ ବିଷୟରେ ଯଥାସାଧ୍ୟ ଚେଷ୍ଟା କରାଯାଉ ।'' ଉକ୍ତ ପ୍ରସ୍ତାବକୁ ଅନୁମୋଦନ କରି ମଧୁବାବୁ ଦେଇଥିବା ବକ୍ତୃତାର ସାରାଂଶ ଏଠାରେ ଏକାଦଶ ଉପାଦାନ ଭାବରେ ଉପସ୍ଥାପିତ । ସମ୍ପୃକ୍ତ ବକ୍ତୃତାର ସାରାଂଶ ଉତ୍କଳ ସମ୍ମିଳନୀ ସଭାର ଚତୁର୍ଥ ଅଧିବେଶନ ବିବରଣୀ ପୁସ୍ତିକାର( Printed at Cuttack Printing Company, 1907) ପୃ.୪୦ରୁ ଗୃହୀତ । ଏହି କ୍ଷୁଦ୍ର ବକ୍ତୃତାଟି ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ଦ୍ୱାରା ଲିଖିତ **ଦେଶପ୍ରାଣ ମଧୁସୂଦନ** ପୁସ୍ତକରେ (ପୃ.୫୧୭-୫୧୮) ମଧ୍ୟ ମୁଦ୍ରିତ ହୋଇଥିଲା ।

୧୨. ଉତ୍କଳ ସମ୍ମିଳନୀର ପଞ୍ଚମ ବାର୍ଷିକ ଅଧିବେଶନ ପୁରୀର ଜଗନ୍ନାଥବଲ୍ଲଭ ବଗିଚାରେ ୧୮.୪.୧୯୦୮ ଓ ୧୯.୪.୧୯୦୮ ତାରିଖରେ ସୁରଙ୍ଗୀର ରାଜା ଚନ୍ଦ୍ରଚୂଡ଼ାମଣି ହରିଚନ୍ଦନ ଜଗଦେବଙ୍କର ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ସମ୍ପୃକ୍ତ ଅଧିବେଶନରେ ପ୍ରଥମ ନିର୍ଦ୍ଧାରଣର ପ୍ରସ୍ତାବକ ଥିଲେ ଗୋକୁଳାନନ୍ଦ ଚୌଧୁରୀ, ଅନୁମୋଦକ ଥିଲେ ବିଶ୍ୱନାଥ କର ଓ ସମର୍ଥକ ଥିଲେ ମଧୁବାବୁ । ସଂପୃକ୍ତ ପ୍ରସ୍ତାବଟି ହେଲା:

> ନିମ୍ନଲିଖିତ ସଭ୍ୟମାନଙ୍କୁ ଘେନି ପ୍ରତ୍ୟେକ ଜିଲ୍ଲାରେ ଗୋଟିଏ ଲେଖାଏଁ ଜିଲ୍ଲା ସମିତି ଗଠନ କରାଯାଉ ଓ ସଭ୍ୟସଂଖ୍ୟା ବୃଦ୍ଧି କରିବାର କ୍ଷମତା ଉକ୍ତ ସମିତିଠାରେ ରହୁ । ସେମାନେ ନିଜ ନିଜ ଜିଲ୍ଲାରେ ଗ୍ରାମ୍ୟ ସମିତିମାନ ସ୍ଥାପନ କରନ୍ତୁ ଓ ଆପଣା ଆପଣା ଜିଲ୍ଲାରୁ ଅର୍ଥସଂଗ୍ରହ କରି ସମ୍ମିଳନୀର ଉଦ୍ଦେଶ୍ୟ ସାଧନ ନିମନ୍ତେ ଯଥାବିହିତ ଉପାୟ ଅବଲମ୍ବନ କରନ୍ତୁ; ଜିଲ୍ଲାସମିତିମାନଙ୍କର କାର୍ଯ୍ୟପ୍ରଣାଳୀ ତତ୍ତ୍ୱାବଧାରଣ କରିବା ନିମନ୍ତେ ନିମ୍ନଲିଖିତ ବ୍ୟକ୍ତିମାନଙ୍କ ଦ୍ୱାରା ଗୋଟିଏ ସ୍ଥାୟୀ କେନ୍ଦ୍ର ସମିତି ଗଠନ କରାଯାଉ । ସଭ୍ୟସଂଖ୍ୟା ବୃଦ୍ଧି କରାଯିବାର କ୍ଷମତା ଉକ୍ତ ସ୍ଥାୟୀ ସମିତିଠାରେ ନ୍ୟସ୍ତ ହେଉ । ଜିଲ୍ଲା ସମିତିମାନ ସ୍ଥାୟୀ ସମିତିର ଉପଦେଶାନୁସାରେ କାର୍ଯ୍ୟ କରନ୍ତୁ । ସମ୍ମିଳନୀ ନିମନ୍ତେ ଗଠିତ ନିୟମାବଳୀର ପାଣ୍ଡୁଲିପି ପ୍ରଚାର କରିବାର ଭାର, ଆବଶ୍ୟକ ହେଲେ ସର୍ବସାଧାରଣଙ୍କ ମତାନୁଯାୟୀ ଉକ୍ତ ନିୟମମାନ ସଂଶୋଧନ କରି ସଂଶୋଧିତ ନିୟମାବଳୀ ସମ୍ମିଳନୀର ଆଗାମୀ ଅଧିବେଶନରେ ଗୃହୀତ ହେବା ନିମନ୍ତେ ଉପସ୍ଥାପିତ

କରିବାର ଭାର ଉକ୍ତ ସ୍ଥାୟୀ ସମିତିଠାରେ ନ୍ୟସ୍ତ ହେଉ ।

ପ୍ରସ୍ତାବକ ଭାବରେ ଗୋକୁଳାନନ୍ଦ ଚୌଧୁରୀ ଓ ଅନୁମୋଦକ ଭାବରେ ବିଶ୍ୱନାଥ କର ଭାଷଣ ଦେଲାପରେ ମଧୁବାବୁ ସମର୍ଥକ ଭାବରେ ଦେଇଥିବା ବକ୍ତୃତା ଏଠାରେ ଦ୍ୱାଦଶ ରଚନା ଭାବରେ ସଂକଳିତ । ଉତ୍କଳ ସମ୍ମିଳନୀ ପଞ୍ଚମ ଅଧିବେଶନର ବିବରଣୀ ପୁସ୍ତିକା ଆଲୋଚ୍ୟ ସଂକଳନ ପ୍ରସ୍ତୁତି ସମୟରେ ସଂପାଦକଙ୍କୁ ଉପଲବ୍ଧ ହେଲା ନାହିଁ । ତେଣୁ ବାଧ ହୋଇ ମଧୁବାବୁଙ୍କ ବକ୍ତୃତା ନବକିଶୋର ଦାସଙ୍କ **ମଧୁବାବୁଙ୍କ ଓଡ଼ିଆ ବକ୍ତୃତା ଓ ଗୀତ** ପୁସ୍ତକରୁ (ପୃ.୨୨-୨୪) ଉଦ୍ଧାର କରାଯାଇଛି ।

୧୩. ଉତ୍କଳ ସମ୍ମିଳନୀର ଷଷ୍ଠ ଅଧିବେଶନ କଟକଠାରେ ୧୯୦୮ ମସିହା ଡିସେମ୍ବର ମାସ ୩୦ ଓ ୩୧ ତାରିଖରେ ଅନୁଷ୍ଠିତ ହୋଇଥିଲା । ସଂପୃକ୍ତ ଅଧିବେଶନର ଅଷ୍ଟମ ପ୍ରସ୍ତାବରେ ସ୍ୱେଚ୍ଛାସେବକ ଭାବରେ କାର୍ଯ୍ୟ କରିଥିବା ଛାତ୍ରମାନଙ୍କୁ ଧନ୍ୟବାଦ ଦେଇ କୁହାଯାଇଥିଲା:

ଯେଉଁ ସେବକ ଛାତ୍ରବୃନ୍ଦ ଏ ସଭାର କାର୍ଯ୍ୟ ସୁଚାରୁରୂପେ ସମାହିତ ହେବା ଉଦ୍ଦେଶ୍ୟରେ ସେମାନଙ୍କର ପବିତ୍ର ସେବାକାର୍ଯ୍ୟ ନିଃସ୍ୱାର୍ଥ ଓ ଅକ୍ଳାନ୍ତ ଉତ୍ସାହ ସହିତରେ ସମ୍ପାଦନ କରିଅଛନ୍ତି, ସେହି ଛାତ୍ରମାନଙ୍କୁ ଏ ସଭାର ଆନ୍ତରିକ ଧନ୍ୟବାଦ ଅର୍ପିତ ହେଉ ।

ଏହି ପ୍ରସ୍ତାବ ଆଗତ କରିଥିଲେ ଅଧିବେଶନର ସଭାପତି ବିଶ୍ୱନାଥ ବର୍ମା ଓ ଅନୁମୋଦନ କରିଥିଲେ ମଧୁସୂଦନ । ପ୍ରସ୍ତାବଟିକୁ ଅନୁମୋଦନ କରିବା ଅବସରରେ ମଧୁବାବୁ ଯେଉଁ କ୍ଷୁଦ୍ର ବକ୍ତୃତା ଦେଇଥିଲେ ତାହା ତ୍ରୟୋଦଶ ଉପାଦାନ ଭାବରେ ଉପସ୍ଥାପିତ । ସମ୍ପୃକ୍ତ ଉପାଦାନ ସଂଗ୍ରହ କରାଯାଇଛି **ବାଲେଶ୍ୱର ସମ୍ବାଦବାହିକାର** ବୟାଳିଶ ବର୍ଷ ପଞ୍ଚମ ସଂଖ୍ୟା(୦୪.୦୨.୧୯୦୯)ରୁ ।

୧୪. ଉତ୍କଳ ସମ୍ମିଳନୀର ଅଷ୍ଟମ ଅଧିବେଶନ ଅନୁଷ୍ଠିତ ହୋଇଥିଲା ବ୍ରହ୍ମପୁରର ଖଲ୍ଲିକୋଟ ଡାଏମଣ୍ଡ ଜୁବୁଲି ହଲ୍‌ରେ ୧୯୧୨ ମସିହା ଏପ୍ରିଲ୍ ୬ ଓ ୭ ତାରିଖରେ । ସଂପୃକ୍ତ ଅଧିବେଶନର ଦ୍ୱିତୀୟ ପ୍ରସ୍ତାବର ପ୍ରସ୍ତାବକ ଥିଲେ ମଧୁସୂଦନ । ପ୍ରସ୍ତାବଟି ହେଲା:

ଯେଉଁ ସୁନିୟମାନୁଯାୟୀ ବିଭିନ୍ନ ବଙ୍ଗପ୍ରଦେଶକୁ ତହିଁର ସର୍ବାଙ୍ଗୀନ ଉନ୍ନତି ସାଧନ ଉଦ୍ଦେଶ୍ୟରେ ପ୍ରବଳପ୍ରତାପ ଭାରତେଶ୍ୱର ଏକଶାସନାଧୀନ କରିଅଛନ୍ତି, ତଦନୁଯାୟୀ ନାନାବିଧ ଅସୁବିଧାରେ ବିଭିନ୍ନ ଶାସନାଧୀନରେ ବାସ କରୁଥିବା ଗଞ୍ଜାମ ଓ ଉତ୍କଳର ପାର୍ଶ୍ୱବର୍ତ୍ତୀ ସମସ୍ତ ଉତ୍କଳଭାଷୀ ଅଞ୍ଚଳମାନଙ୍କୁ ଏକ ଶାସନାଧୀନ କରିବା ଉଚିତ ବିବେଚନା କରି ଉକ୍ତ ପ୍ରଦେଶମାନଙ୍କୁ ଏକ ଶାସନାଧୀନ କରିବାକୁ ଏହି ସମ୍ମିଳନୀ ଭାରତ ଗବର୍ଣ୍ଣମେଣ୍ଟଙ୍କୁ ପ୍ରସ୍ତାବ କରୁଅଛନ୍ତି ।

ଉକ୍ତ ପ୍ରସ୍ତାବଟି ଆଗତ ହେଲାପରେ ଓଡ଼ିଆରେ ଦୁଇଧାଡ଼ି ଉପକ୍ରମଣିକା ସ୍ୱରୂପ କହି ମଧୁସୂଦନ ଇଂରାଜୀରେ ଏକ ଦୀର୍ଘ ଭାଷଣ ଦେଇଥିଲେ । ସେ ଓଡ଼ିଆରେ କହିଥିବା ଉପକ୍ରମଣିକା ଏଠାରେ ଚତୁର୍ଦ୍ଦଶ ଉପାଦାନ ଭାବରେ ଉପସ୍ଥାପିତ ଓ ଏହି ଉପାଦାନ ୧୯୧୩ ମସିହାରେ କଟକର ଉତ୍କଳ ସାହିତ୍ୟ ପ୍ରେସ୍‌ରେ ମୁଦ୍ରିତ **ଉତ୍କଳ ସମ୍ମିଳନୀ: ଅଷ୍ଟମ ଅଧିବେଶନ** ପୁସ୍ତିକାରୁ (ପୃ.୨୭) ଗୃହୀତ ।

୧୫. ଅଷ୍ଟମ ଅଧିବେଶନର ଚତୁର୍ଥ ପ୍ରସ୍ତାବର ପ୍ରସ୍ତାବକ ମଧ ଥିଲେ ମଧୁସୂଦନ । ଅଧିବେଶନର ଦ୍ୱିତୀୟ ଦିବସରେ ଆଗତ ହୋଇଥିବା ଏହି ପ୍ରସ୍ତାବଟି ହେଲା:

> ସମ୍ମିଳନୀର ବର୍ତ୍ତମାନ ନିୟମାବଳୀ ରହିତ କରାଯାଇ ସମ୍ମିଳନୀର କାର୍ଯ୍ୟ ନିର୍ବାହ ନିମିତ୍ତ ପୂର୍ବ ପ୍ରାୟ ଗୋଟିଏ କାର୍ଯ୍ୟ ନିର୍ବାହିକା ସମିତି ନିଯୁକ୍ତ ହେଉ । ଉକ୍ତ ସମିତିରେ ୨୭ଜଣ ସଭ୍ୟ ହେଉନ୍ତୁ ଏବଂ ତନ୍ମଧ୍ୟରୁ ଜଣେ ସମ୍ପାଦକ ଓ ଦୁଇଜଣ ସହକାରୀ ସମ୍ପାଦକ ନିଯୁକ୍ତ ହେଉନ୍ତୁ । ସମିତିର କାର୍ଯ୍ୟକାଳ ଏକ ବର୍ଷ ହେଉ । ସମିତି ପ୍ରୟୋଜନ ବୁଝି ନିୟମମାନ ସ୍ଥିର କରନ୍ତୁ । ସମିତିର ସମ୍ପାଦକ ଯେଉଁ ସ୍ଥାନରେ ରହିବେ ସମିତିର କାର୍ଯ୍ୟାଳୟ ସେହି ସ୍ଥାନରେ ରହୁ । ନିମ୍ନଲିଖିତ ବ୍ୟକ୍ତିମାନେ ଉକ୍ତ ସମିତିର ସଭ୍ୟ ହେଉନ୍ତୁ । ସହକାରୀ ସମ୍ପାଦକ ନିର୍ବାଚନ ଭାର ସମିତି ଉପରେ ନ୍ୟସ୍ତ ହେଉ ।

ଏହି ପ୍ରସ୍ତାବ ସମ୍ପର୍କରେ ମଧୁସୂଦନ ଓଡ଼ିଆ ଓ ଇଂରାଜୀରେ ଭାଷଣ ଦେଇଥିଲେ । ଏଠାରେ ଓଡ଼ିଆ ଭାଷଣଟି **ଉତ୍କଳ ସମ୍ମିଳନୀ: ଅଷ୍ଟମ ଅଧିବେଶନ** ପୁସ୍ତିକାରୁ (ପୃ.୪୦-୪୩) ଗୃହୀତ ହୋଇ ପୁନଃମୁଦ୍ରିତ ।

୧୬. ଉତ୍କଳ ସମ୍ମିଳନୀର ନବମ ବାର୍ଷିକ ଅଧିବେଶନ ପୁରୀ ସହରରେ ୧୯୧୩ ମସିହା ଡିସେମ୍ବର ମାସ ୨୮ ଓ ୨୯ ତାରିଖରେ ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନର ସଭାପତି ଥିଲେ ମଧୁସୂଦନ । ସଭାପତି ଭାବରେ ସେ ପ୍ରଦାନ କରିଥିବା ମୌଖିକ ଅଭିଭାଷଣ ଏଠାରେ ଷୋଡ଼ଶ ଉପାଦାନ ଭାବରେ ଉପସ୍ଥାପିତ । ଏହି ଅସମ୍ପୂର୍ଣ୍ଣ ଅଭିଭାଷଣ ବ୍ରହ୍ମପୁରରୁ ପ୍ରକାଶିତ ସାପ୍ତାହିକ ସମ୍ବାଦପତ୍ର **ଆଶା**ର ପ୍ରଥମ ବର୍ଷ ସପ୍ତଦଶ ସଂଖ୍ୟା (୦୫.୧.୧୯୧୪)ରୁ ସଂଗୃହୀତ ।

୧୭. ଉତ୍କଳ ସମ୍ମିଳନୀର ବିଧି ଅନୁଯାୟୀ ମଧୁସୂଦନ ସଭାପତି ହିସାବରେ ନବମ ଅଧିବେଶନ ପାଇଁ ଏକ ଦୀର୍ଘ ଲିଖିତ ଅଭିଭାଷଣ ତାଙ୍କର ସହଯୋଗୀ ପାରେଶ୍ୱର ମହାନ୍ତିଙ୍କ ସାହାଯ୍ୟ ନେଇ ପ୍ରସ୍ତୁତ କରିଥିଲେ । ମଧୁସୂଦନଙ୍କ ସମସ୍ତ ବକ୍ତୃତା ମଧ୍ୟରେ ଏଇଟି ଦୀର୍ଘତମ । ଏହି ଲିଖିତ ବକ୍ତୃତା ୧୯୧୪ ମସିହାରେ ବ୍ରହ୍ମପୁରର ଆଶା ପ୍ରେସ୍‌ରେ ମୁଦ୍ରିତ **ଉତ୍କଳ ସମ୍ମିଳନୀ ସଭାର ନବମ ଅଧିବେଶନ** ପୁସ୍ତିକାରେ (ପୃ.୧୨-୩୭) ପ୍ରକାଶିତ ହୋଇଥିଲା । ଏଠାରେ ତାହା ସପ୍ତଦଶ ଉପାଦାନ ଭାବରେ ପୁନଃମୁଦ୍ରିତ ।

୧୮. ସଂପୃକ୍ତ ଅଧିବେଶନର ପ୍ରଥମ ନିର୍ଦ୍ଧାରଣ/ପ୍ରସ୍ତାବର ପ୍ରସ୍ତାବକ ଥିଲେ ମହନ୍ତ ଗଦାଧର ରାମାନୁଜ ଦାସ, ଅନୁମୋଦକ ଥିଲେ ଧରାକୋଟର ରାଜା ମଦନମୋହନ ସିଂହଦେବ ଓ ସମର୍ଥକ ଥିଲେ ବିଶ୍ୱନାଥ ମିଶ୍ର । ପ୍ରସ୍ତାବଟି ହେଲା:

ବିହାର-ଓଡ଼ିଶା ପ୍ରଦେଶରେ ଏବଂ ମାନ୍ଦ୍ରାଜ ପ୍ରଦେଶରେ ବାସ କରୁଥିବା ଓଡ଼ିଆମାନଙ୍କ ପକ୍ଷରୁ ଏହି ସମ୍ମିଳନୀ ମହାମାନ୍ୟ ଲର୍ଡ଼ ହାର୍ଡ଼ିଞ୍ଜଙ୍କ ପ୍ରାଣ ଉପରେ ଯେଉଁ ନୃଶଂସ ଆକ୍ରମଣ ହୋଇଥିଲା ତହିଁ ପ୍ରତି ଆନ୍ତରିକ ଘୃଣା ବ୍ୟକ୍ତ କରୁଅଛନ୍ତି ଏବଂ ଦୈବବଳରୁ ସେ ଉଦ୍ଧାର ଲାଭ କରିଥିବାରୁ ଏ ସମ୍ମିଳନୀ ଦୟାମୟ ଈଶ୍ୱରଙ୍କୁ କୃତଜ୍ଞତା ଅର୍ପଣ କରୁଅଛନ୍ତି ।

ପ୍ରସ୍ତାବକ, ଅନୁମୋଦକ ଓ ସମର୍ଥକ ସଂକ୍ଷିପ୍ତ ଭାଷଣ ଦେଇ ସାରିଲା ପରେ ମଧୁସୂଦନ ଅଷ୍ଟାଦଶ ଉପାଦାନ ଭାବରେ ଉପସ୍ଥାପିତ ବାକ୍ୟଟି ଉଚ୍ଚାରଣ କରିଥିଲେ ଓ 'ଉପସ୍ଥିତ ସଭ୍ୟମାନେ କରତାଳି ଦ୍ୱାରା ପ୍ରସ୍ତାବଟି ଗ୍ରହଣ କରିଥିଲେ ।' **(ଉତ୍କଳ ସମ୍ମିଳନୀ ସଭାର ନବମ ଅଧିବେଶନ, ପୃ. ୪୦)**

୧୯. ନବମ ଅଧିବେଶନରେ ପ୍ରଥମ ଦିନ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ 'ବନ୍ଦେ ଉତ୍କଳ ଜନନୀ' ଗୀତର ପରିବେଷଣ ପରେ ଶେଷ ହୋଇଥିଲା । ଦ୍ୱିତୀୟ ଦିବସ ପ୍ରାରମ୍ଭରେ ଭକ୍ତକବି ମଧୁସୂଦନ ରାଓଙ୍କ 'ଉତ୍କଳ ବନ୍ଦନା' ଗାନ କରାଯାଇଥିଲା । ତା'ପରେ ମଧୁବାବୁ ସଭାପତି ଭାବରେ ଏକ କ୍ଷୁଦ୍ର ଅଭିଭାଷଣ ଦେଇ କାର୍ଯ୍ୟାରମ୍ଭ କରିଥିଲେ । ସଂପୃକ୍ତ ଅଭିଭାଷଣ ଏଠାରେ ଉନବିଂଶ ଉପାଦାନ ଭାବରେ ଉପସ୍ଥାପିତ ଓ ଏହା ଉପରୋକ୍ତ ବିବରଣୀ ପୁସ୍ତିକାରୁ (ପୃ. ୪୭-୪୮) ଗୃହୀତ ।

୨୦. ଉପରୋକ୍ତ ଅଧିବେଶନର ତୃତୀୟ ନିର୍ଦ୍ଧାରଣ ଥିଲା ଦ୍ୱିତୀୟ ଦିବସରେ ଆଗତ ହୋଇଥିବା ପ୍ରଥମ ନିର୍ଦ୍ଧାରଣ । ଏହି ନିର୍ଦ୍ଧାରଣର ବିଷୟ ଥିଲା:

ଏହି ଜିଲାର ସତ୍ୟବାଦୀଠାରେ ଯେଉଁ କତିପୟ ଉଚ୍ଚ ଶିକ୍ଷିତ ଯୁବକମାନେ ଦେଶର ଶିକ୍ଷୋନ୍ନତି ସାଧନ ନିମନ୍ତେ ନିଃସ୍ୱାର୍ଥଭାବେ ପ୍ରାଣପଣେ ପରିଶ୍ରମକରି ଉତ୍କଳରେ ଯେଉଁ ନୂତନ ଉଚ୍ଚ ଆଦର୍ଶ ଦେଖାଉଅଛନ୍ତି ସେଥିପାଇଁ ଏ ସମ୍ମିଳନୀ ସେମାନଙ୍କୁ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ଧନ୍ୟବାଦ ଦେଉଅଛନ୍ତି ।

ଆଲୋଚ୍ୟ ନିର୍ଦ୍ଧାରଣର ପ୍ରସ୍ତାବକ ଥିଲେ କନିକାରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ଓ ଅନୁମୋଦକ ଥିଲେ ଫକୀରମୋହନ । ସୁଦାମ ଚରଣ ନାୟକଙ୍କ ସମେତ ତିନିଜଣ ଏହି ନିର୍ଦ୍ଧାରଣକୁ ସମର୍ଥନ କରିଥିଲେ । ପ୍ରସ୍ତାବକ, ଅନୁମୋଦକ ଓ ସମର୍ଥକଗଣ ସଂପୃକ୍ତ ବିଷୟ ଉପରେ ଭାଷଣ ଦେଇସାରିଲା ପରେ ମଧୁସୂଦନ ମଧ ଏକ କ୍ଷୁଦ୍ର ଭାଷଣ ଦେଇଥିଲେ; ଯାହା ଏଠାରେ ବିଂଶ ଉପାଦାନ ଭାବରେ ମୁଦ୍ରିତ । ଏହି ବକ୍ତୃତାଟି ଉତ୍କଳ ସମ୍ମିଳନୀର ପୂର୍ବୋକ୍ତ ବିବରଣୀ ପୁସ୍ତିକାରୁ (ପୃ.୫୩-୫୪) ଗୃହୀତ ।

ମଧୁସୂଦନଙ୍କ ଭାଷଣ ପରେ ସମସ୍ତଙ୍କ ବକ୍ତୃତାର ଉତ୍ତର ଦେଇ ପଣ୍ଡିତ ଗୋପବନ୍ଧୁ ମଧ ଏକ ଭାଷଣ ଦେଇଥିଲେ ।

୨୧. ପୂର୍ବୋକ୍ତ ଅଧିବେଶନର ପଞ୍ଚମ ନିର୍ଦ୍ଧାରଣ ଉପରେ ପ୍ରସ୍ତାବକ, ଅନୁମୋଦକ ଓ ଦୁଇଜଣ ସମର୍ଥକ ସେମାନଙ୍କର ମନ୍ତବ୍ୟ ଦେଇସାରିଲା ପରେ ସଭାପତି ହିସାବରେ ମଧୁସୂଦନ ଏହି ମନ୍ତବ୍ୟ ଦେଇଥିଲେ, ଯାହା ଏଠାରେ ଏକବିଂଶ ଉପାଦାନ ଭାବରେ ଉପସ୍ଥାପିତ । ଏହି ଉପାଦାନ ପୂର୍ବରୁ ସୂଚିତ ବିବରଣୀ ପୁସ୍ତିକାରୁ(ପୃ.୬୦) ଗୃହୀତ ।

୨୨. ପୂର୍ବୋକ୍ତ ସୂଚନାରେ କୁହାଯାଇଥିବା ପଞ୍ଚମ ନିର୍ଦ୍ଧାରଣଟି ହେଲା:

ମାନ୍ଦ୍ରାଜ ପ୍ରଦେଶରେ ଥିବା ଓଡ଼ିଆମାନେ ବିହାର ଓ ଓଡ଼ିଶା ପ୍ରଦେଶର ଓଡ଼ିଆମାନଙ୍କ ସହିତ ଏକ ଶାସନାଧୀନରେ ନ ରହିବା ପର୍ଯ୍ୟନ୍ତ ଓଡ଼ିଆମାନଙ୍କ ପ୍ରକୃତ ଉନ୍ନତି ସାଧିତ ହୋଇପାରିବ ନାହିଁ ବୋଲି ଏ ସମ୍ମିଳନୀ ବିଶ୍ୱାସ କରନ୍ତି ।

ଏହି ନିର୍ଦ୍ଧାରଣରପ୍ରସ୍ତାବ ଓ ଅନୁମୋଦକଙ୍କ ବ୍ୟତୀତ ପଣ୍ଡିତ ଗୋପବନ୍ଧୁଙ୍କ ସମେତ ଚାରିଜଣ ସମର୍ଥକ ଥିଲେ ଓ ସମସ୍ତେ ଆପଣାର ବକ୍ତବ୍ୟ ଉପସ୍ଥାପନ କରିଥିଲେ । ସମସ୍ତେ କହିସାରିଲା ପରେ ଏହି ନିର୍ଦ୍ଧାରଣ ସମ୍ପର୍କରେ ମଧୁସୂଦନ ବି ଆପଣା ମତାମତ ଦେଇଥିଲେ ଯାହା ଏଠାରେ ଦ୍ୱାବିଂଶ ଉପାଦାନ ହିସାବରେ ମୁଦ୍ରିତ ଓ ଏହା ପୂର୍ବୋକ୍ତ ସମ୍ମିଳନୀର ବିବରଣୀ ପୁସ୍ତିକାରୁ (ପୃ.୬୨-୬୩) ଗୃହୀତ ।

୨୩. ନବମ ଅଧିବେଶନରେ ଦଶମ ନିର୍ଦ୍ଧାରଣ ଥିଲା:

ଓଡ଼ିଶାରେ ଏମ୍.ଏ., ବି.ଏଲ୍, କ୍ଲାସ୍ ନଥିବାରୁ ଉଚ୍ଚ ଶିକ୍ଷାଭିଳାଷୀ ଛାତ୍ରମାନଙ୍କର ବିଶେଷ ଅସୁବିଧା ବିବେଚନାରେ କଟକରେ ଏମ୍.ଏ.ବି.ଏଲ୍, ଶ୍ରେଣୀମାନ ରଖିବା କାରଣ ସରକାରଙ୍କୁ ପ୍ରାର୍ଥନା କରାଯାଉ ଏବଂ ଏହି ପ୍ରସ୍ତାବର ନକଲ ପ୍ରାଦେଶିକ ଗଭର୍ଣ୍ଣମେଣ୍ଟ ଏବଂ ଇଉନିଭର୍ସିଟି କମିଶନଙ୍କ ନିକଟକୁ ପଠାଯାଉ ।

ଏହି ନିର୍ଦ୍ଧାରଣକୁ ଆଗତ କରି ମୁକୁନ୍ଦ ପ୍ରସାଦ ଦାସ, ଅନୁମୋଦନ କରି ଉମେଶଚନ୍ଦ୍ର ରାୟ ଓ ସମର୍ଥନ କରି ଗଣେଶ ମହାପାତ୍ର ଭାଷଣ ଦେଇଥିଲେ ଓ ଉତ୍କଳ ସମ୍ମିଳନୀର ଅନ୍ୟାନ୍ୟ ନିର୍ଦ୍ଧାରଣ ପରି ଏହା ଗୃହୀତ ହୋଇଯିବା କଥା । କିନ୍ତୁ ଏଭଳି ପ୍ରସ୍ତାବକୁ ବିରୋଧ କରି କନିକାର ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେବ କହିଥିଲେ :

ମୋ ବିବେଚନାରେ ନାନା କାରଣରୁ ଏ ପ୍ରସ୍ତାବ ବର୍ତ୍ତମାନ ସ୍ଥଗିତ ରହିଲେ ଭଲ ହୁଅନ୍ତା । ବିଶ୍ୱବିଦ୍ୟାଳୟ କମିଟି ବର୍ତ୍ତମାନ ସେମାନଙ୍କର ରିପୋର୍ଟ ପ୍ରାୟ ପ୍ରସ୍ତୁତ କରି ସାରିଅଛନ୍ତି । ବର୍ତ୍ତମାନ ଏ ପ୍ରସ୍ତାବ କଲେ ବିଶେଷ କିଛି ଫଳ ହେବ ବୋଲି ବୋଧ ହେଉନାହିଁ । ଅନ୍ତତଃ ବିଶ୍ୱବିଦ୍ୟାଳୟ କମିଟି ରିପୋର୍ଟକୁ ଅପେକ୍ଷା କରିବା ଆମ୍ଭମାନଙ୍କ ପକ୍ଷେ ଉଚିତ । ଯଦି ଏ ପ୍ରସ୍ତାବ ସର୍ବସମ୍ମତି କ୍ରମେ ଧାର୍ଯ୍ୟ ହୁଏ ତାହା ହେଲେ ଏଥି ସଙ୍ଗେ ମୋହର ଅସମ୍ମତି ଲେଖି

ପଠାଇବା ନିମନ୍ତେ ମୁଁ ଅନୁରୋଧ କରେଁ। (ପୂର୍ବୋକ୍ତ: ପୃ.୭୬)

ମଧୁବାବୁ ସଭାପତି ଭାବରେ ନିର୍ଦ୍ଧାରଣକୁ ସମର୍ଥନ ନ କରି ରାଜେନ୍ଦ୍ର ନାରାୟଣଙ୍କ ସଙ୍ଗେ ଏକମତ ହୋଇ ଦେଇଥିବା ଭାଷଣ ଏଠାରେ ତ୍ରୟୋବିଂଶ ଉପାଦାନ ଭାବରେ ମୁଦ୍ରିତ ଓ ଏହା ସମ୍ମିଳନୀର ବିବରଣୀରୁ (ପୃ.୭୬)ରୁ ଗୃହୀତ। ମଧୁବାବୁଙ୍କର ଏଭଳି ମନ୍ତବ୍ୟକୁ ମୟୂରଭଞ୍ଜର ଲାଲମୋହନ ପତି ପ୍ରମୁଖ ନାପସନ୍ଦ କରିଛନ୍ତି ଓ ତାଙ୍କର କାର୍ଯ୍ୟ ପଦ୍ଧତି ସମ୍ପର୍କରେ ଆପତ୍ତି ଉଠାଇଛନ୍ତି।

୨୪. ଉତ୍କଳ ସମ୍ମିଳନୀର ଦଶମ ବାର୍ଷିକ ଅଧିବେଶନ ପାରଳାଖେମଣ୍ଡିଠାରେ ୨୬.୧୨.୧୯୧୪ ଓ ୨୭.୧୨.୧୯୧୪ ତାରିଖରେ ଅନୁଷ୍ଠିତ ହୋଇଥିଲା। ଅଧିବେଶନର ତିନିଦିନ ପୂର୍ବରୁ (୨୩.୧୨.୧୯୧୪) ମଧୁସୂଦନଙ୍କର ସାନଭାଇ ଗୋପାଳବଲ୍ଲଭଙ୍କର ଦେହାନ୍ତ ହୋଇଥିଲା। ତା ସତ୍ତ୍ୱେ ସେ ଏହି ଅଧିବେଶନରେ ଯୋଗ ଦେଇଥିଲେ। ସେ ଏହି ଅଧିବେଶନରେ ପ୍ରଥମ ଓ ପଞ୍ଚମ ପ୍ରସ୍ତାବର ପ୍ରସ୍ତାବକ ଥିଲେ ଓ ଉଭୟ ପ୍ରସ୍ତାବ ସମ୍ପର୍କରେ ଦୀର୍ଘ ଭାଷଣ ଦେଇଥିଲେ। ପ୍ରଥମ ପ୍ରସ୍ତାବଟି ହେଲା:

> ପ୍ରବଳ ପ୍ରତାପ ମହାମହିମ ଆମ୍ଭମାନଙ୍କର ସମ୍ରାଟ ନ୍ୟାୟ ଓ ସତ୍ୟ ନିମନ୍ତେ ଯେଉଁ ଇଉରୋପୀୟ ମହାସଂଗ୍ରାମରେ ଯୋଗ ଦେବାକୁ ବାଧ ହୋଇଅଛନ୍ତି, ସେଥିରେ ବିଭିନ୍ନ ଶାସନାଧୀନସ୍ଥ ଓଡ଼ିଆମାନଙ୍କର ଏହି ସମ୍ମିଳନୀ ଈଶ୍ୱରଙ୍କଠାରେ ତାଙ୍କର ବିଜୟ ପ୍ରାର୍ଥନା କରୁଅଛନ୍ତି। ଏବଂ ସାମ୍ରାଜ୍ୟର ଏହି ସଙ୍କଟରେ ସମ୍ରାଟଙ୍କ ପ୍ରତି ଗଭୀର ରାଜଭକ୍ତି ପ୍ରକାଶ କରୁଅଛନ୍ତି। ଯୁଦ୍ଧକ୍ଷେତ୍ରରେ ଆହତ ସୈନିକଙ୍କ ଚିକିତ୍ସାର୍ଥେ ଜଣେ ଡାକ୍ତରଙ୍କ ମାସିକ ବ୍ୟୟ ମାସିକ ଟ୩୦୦ଙ୍କା ଦେବାକୁ ଏହି ସମ୍ମିଳନୀ ସ୍ଥିର କରୁଅଛନ୍ତି।

ଏହି ପ୍ରସ୍ତାବକୁ ଆଗତ କରି ମଧୁସୂଦନ 'ସୁଦୀର୍ଘ ସାରଗର୍ଭ ଓ ଉତ୍ସାହପୂର୍ଣ୍ଣ ଇଂରାଜୀ ଓ ଓଡ଼ିଆ ବକ୍ତୃତା' ପ୍ରଦାନ କରିଥିଲେ, ଯାହାର ସାରମର୍ମ ଆଶା ପ୍ରେସ୍, ବ୍ରହ୍ମପୁରରେ ୧୯୧୫ରେ ମୁଦ୍ରିତ ହୋଇଥିବା ଓ ନିତ୍ୟାନନ୍ଦ ପଟ୍ଟନାୟକଙ୍କ ଦ୍ୱାରା ପ୍ରକାଶିତ ହୋଇଥିବା **ଉତ୍କଳ ସମ୍ମିଳନୀ ଦଶମ ଅଧିବେଶନର ବିବରଣୀ** ପୁସ୍ତିକାରେ (ପୃ..୩୭-୩୮) ସ୍ଥାନିତ। ଏହି ସାରମର୍ମକୁ ମଧୁସୂଦନଙ୍କର ବକ୍ତୃତା ଭାବରେ ନବକିଶୋର ଦାସ ଗ୍ରହଣ କରିଛନ୍ତି ଓ ପ୍ରସ୍ତୁତ ସଂକଳନରେ ଏହା ଚତୁର୍ବିଂଶ ଉପାଦାନ ଭାବରେ ଉପସ୍ଥାପିତ।

୨୫. ଉତ୍କଳ ସମ୍ମିଳନୀର ତ୍ରୟୋଦଶ ଅଧିବେଶନ ୧୯୧୮ ମସିହା ମାର୍ଚ୍ଚ ୩୦ଓ ୩୧ ତାରିଖରେ କଟକର ଇଦ୍‌ଗା ପଡ଼ିଆରେ ଅନୁଷ୍ଠିତ ହୋଇଥିଲା। ଏହି ଅଧିବେଶନ ପାଇଁ ଗଠିତ ଅଭ୍ୟର୍ଥନା ସମିତିର ସମ୍ପାଦକ ଥିଲେ ମଧୁସୂଦନ। ସମ୍ମିଳନୀର ଆରମ୍ଭରେ

ରାଧାନାଥଙ୍କ ଭାରତଗୀତିକା ଗୀତ ହୋଇସାରିଲା ପରେ ମଧୁସୂଦନ 'ମା'ଙ୍କର (ଉତ୍କଳ ମାତାଙ୍କର) ଆବାହନ' କରି ଯେଉଁ ବକ୍ତୃତା ଦେଇଥିଲେ ତାହା ପଞ୍ଚବିଂଶ ଉପାଦାନ ଭାବରେ ଉପସ୍ଥାପିତ ଓ ତାହା ମଧୁସୂଦନଙ୍କ ଦ୍ୱାରା ପ୍ରକାଶିତ ତଥା ୧୯୧୯ରେ ମୁକୁର ପ୍ରେସ୍‌ରେ ମୁଦ୍ରିତ **ଉତ୍କଳ ସମ୍ମିଳନୀ ୧୩ଶ ଅଧିବେଶନର କାର୍ଯ୍ୟ ବିବରଣୀ** ପୁସ୍ତିକାରୁ (ପୃ.୮-୧୦) ଗୃହୀତ ।

୨୬. ଉପରୋକ୍ତ ସମ୍ମିଳନୀର ପ୍ରଥମ ଦିବସରେ ଗୌରୀଶଙ୍କରଙ୍କ ଉଦ୍ଦେଶ୍ୟରେ ଦ୍ୱିତୀୟ ନିର୍ଦ୍ଧାରଣରେ କୁହାଯାଇଥିଲା:

ରାୟ ବାହାଦୁର ଗୌରୀଶଙ୍କର ରାୟଙ୍କ ପରଲୋକ ଗମନରେ ସମଗ୍ର ଉତ୍କଳଭାଷୀ ପ୍ରଦେଶର ଯେଉଁ କ୍ଷତି ହୋଇଅଛି, ସେଥି ସକାଶ ସମ୍ମିଳନୀ ହୃଦୟର ଦୁଃଖ ପ୍ରକାଶ କରୁଅଛନ୍ତି ଏବଂ ପରଲୋକଗତ ଆତ୍ମା ଶାନ୍ତିରେ ରହନ୍ତୁ ଏଥି ସକାଶ ପ୍ରାର୍ଥନା କରୁଅଛନ୍ତି ।

ଏହି ନିର୍ଦ୍ଧାରଣର ପ୍ରସ୍ତାବକ ଥିଲେ ମଧୁସୂଦନ ଅନୁମୋଦକ ଥିଲେ ସୁଦାମଚରଣ ନାୟକ ଓ ସମର୍ଥକ ଥିଲେ ରାମକୃଷ୍ଣ ପଟ୍ଟନାୟକ । ପ୍ରସ୍ତାବକ ଭାବରେ ଗୌରୀଶଙ୍କରଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ମଧୁସୂଦନ ଦେଇଥିବା ଭାଷଣ ଏଠାରେ ଷଡ଼ବିଂଶ ଉପାଦାନ ଭାବରେ ଉପସ୍ଥାପିତ ଓ ତାହା ଉତ୍କଳ ସମ୍ମିଳନୀ କାର୍ଯ୍ୟ ବିବରଣୀ ପୁସ୍ତିକାରୁ (ପୃ.୪୦-୪୩)ରୁ ଗୃହୀତ ।

୨୭. ତ୍ରୟୋଦଶ ଅଧିବେଶନରେ ଦ୍ୱିତୀୟ ଦିନର କାର୍ଯ୍ୟ ମଧୁସୂଦନଙ୍କ 'ଉପକ୍ରମଣିକା' ବକ୍ତବ୍ୟରୁ ଆରମ୍ଭ ହୋଇଥିଲା । ସେହି ଭାଷଣ ଏଠାରେ ସପ୍ତବିଂଶ ଉପାଦାନ ଭାବରେ ଉତ୍କଳ ସମ୍ମିଳନୀର ବିବରଣୀ ପୁସ୍ତିକାରୁ (ପୃ.୪୮-୫୪) ଗୃହୀତ । ମଧୁସୂଦନ ପାଠକରିଥିବା ବିଭିନ୍ନ ଲୋକଙ୍କର ତାଲିକା ନବକିଶୋର ଦାସଙ୍କ ପୁସ୍ତକ **ମଧୁବାବୁଙ୍କ ଓଡ଼ିଆ ବକ୍ତୃତା ଓ ଗୀତ**ରେ ଅସମ୍ପୂର୍ଣ୍ଣ ଭାବରେ ଉଦ୍ଧୃତ ହୋଇଥିଲା । ଏହି ସଂକଳନରେ ସମସ୍ତ ତାଲିକାଟି ଉଦ୍ଧାର କରାଯାଇଛି । ଏଠାରେ ସୂଚନାଯୋଗ୍ୟ ଯେ ସମ୍ମିଳନୀ ତଥା ଓଡ଼ିଶା ପାଇଁ କିଏ କଣ କରିପାରିବେ, ତାହା ଲେଖି ଜଣାଇବାକୁ ମଧୁସୂଦନ ସମ୍ବାଦପତ୍ର ମାଧ୍ୟମରେ ନିବେଦନ କରିଥିଲେ । ଯେଉଁମାନେ ନିବେଦନର ଉତ୍ତର ଦେଇଛନ୍ତି, ମଧୁସୂଦନ ସେମାନଙ୍କର ନାମ ଓ ଉତ୍ତର ପାଠ କରିଛନ୍ତି ।

୨୮. ଉପରୋକ୍ତ ଅଧିବେଶନର ଦ୍ୱିତୀୟ ଦିବସର ପ୍ରାରମ୍ଭରେ ଉତ୍କଳ ସମ୍ମିଳନୀ ତରଫରୁ 'ଉତ୍କଳ ଜନନୀଙ୍କ ମାଗୁଣି' ଶୀର୍ଷକରେ ଏକ ପ୍ରଚାରପତ୍ର ଉପସ୍ଥିତ ଶ୍ରୋତାମାନଙ୍କ ମଧ୍ୟରେ ବିତରିତ ହୋଇଥିଲା । ଏହା ନିଃସନ୍ଦେହ ଯେ ଏହି ପ୍ରଚାରପତ୍ରର ଲେଖକ ଥିଲେ ମଧୁସୂଦନ ଦାସ । ସମ୍ପୃକ୍ତ ନିବେଦନପତ୍ର ଉତ୍କଳ ସମ୍ମିଳନୀର ବିବରଣୀ ପୁସ୍ତିକାରୁ (ପୃ.୪୫-୪୮) ଉଦ୍ଧୃତ ହୋଇ ଅଷ୍ଟବିଂଶ ଉପାଦାନ ଭାବରେ ଉପସ୍ଥାପିତ ।

୨୯. ତ୍ରୟୋଦଶ ଅଧିବେଶନ ଆରମ୍ଭ ହେବା କିଛିଦିନ ପୂର୍ବରୁ ଗଞ୍ଜାମ ଜିଲ୍ଲାର ଧରାକୋଟରୁ ପ୍ରକାଶିତ ହେଉଥିବା **ସମାଜମିତ୍ର** ପତ୍ରିକାର ସହକାରୀ ସମ୍ପାଦକ ଜୟମଙ୍ଗଳ ରଥ ଉତ୍କଳ ସମ୍ମିଳନୀର ସମ୍ପାଦକ ଭାବରେ ମଧୁସୂଦନ ଦାସଙ୍କୁ ଏକ ପତ୍ର ଲେଖିଥିଲେ । ପତ୍ରଟି ହେଲା:

ସମାଜମିତ୍ର ଅଫିସ୍
ଧରାକୋଟ
୨୫ । ୨ ।୧୯୧୮

ଶ୍ରୀମନ୍ ମହୋଦୟ,

ଏ ବର୍ଷ ଉତ୍କଳ ସମ୍ମିଳନୀର ଅଧିବେଶନ କଟକ ନଗରୀରେ ହେବ । ଏଥିପାଇଁ ପ୍ରାଣରେ ଆହ୍ଲାଦ ଆସେଁ । ଏହି ଅଧିବେଶନରେ ସମ୍ମିଳନୀରେ ଏକ ନୂତନ ଅଧ୍ୟାୟ ଫିଟିପାରେ, ଏହି ଆଶା ରଖିଲେ କିଛି ଅସଙ୍ଗତ ହେବ ନାହିଁ ।

ଗତ କେତେକ ବର୍ଷ ହେଲା ସମ୍ମିଳନୀର ଗୋଟିଏ ଗୋଟିଏ ନବଜୀବନ ଆସିଥିବାର ପ୍ରତୀୟମାନ ହୁଏ । ଏଗାର ବାର ବର୍ଷର ସମ୍ମିଳନ ଓ ହୃଦୟସ୍ପର୍ଶୀ ବକ୍ତୃତାର ଫଳରେ ଆଜି ଲୋକଙ୍କର ଦୃଷ୍ଟି ସମ୍ମିଳନୀର କାର୍ଯ୍ୟ ପ୍ରତି ପଡ଼ିଲାଣି । ଦୁଃଖର ବିଷୟ ଆମ୍ଭମାନଙ୍କର କେତେକଜଣ ନେତା ''ସମ୍ମିଳନୀ କିଛି କାର୍ଯ୍ୟ କରୁନାହିଁ'' ବୋଲି ନିରାଶାର ବାଣୀ ଶୁଣାଇ ଘରେ ନିଶ୍ଚିନ୍ତ ହୋଇ ବସନ୍ତି, ଏପରିକି ସମ୍ମିଳନୀର ଅଧିବେଶନମାନଙ୍କରେ ଯୋଗ ସୁଦ୍ଧା ଦିଅନ୍ତି ନାହିଁ । କିନ୍ତୁ ସମ୍ମିଳନୀ ଯେ ସେମାନଙ୍କ ହୃଦୟରେ କାର୍ଯ୍ୟ ଲାଳସା ଦେଇ ଯାଇଅଛି, ଏହା ସେମାନଙ୍କୁ ଦିଶେ ନାହିଁ ବୋଲି କଣ ସମ୍ମିଳନୀଟା ଅକର୍ମଣ୍ୟ ?

ସମ୍ମିଳନୀ ଓ ତାହାର କାର୍ଯ୍ୟ ସମ୍ବନ୍ଧେ ଆମ୍ଭେମାନେ କେତେ ଖଣ୍ଡି ପତ୍ର ପାଇଅଛୁଁ । ସମସ୍ତେ ଚାହାନ୍ତି ଆଖିକୁ ଦିଶିବା ଭଳି କାର୍ଯ୍ୟ । ବାସ୍ତବିକ ସମ୍ମିଳନୀର ଏହି ଅବସ୍ଥାରେ ଆଉ ଆଖିକୁ ଦିଶିବା ଭଳି କିଛି କାର୍ଯ୍ୟ ନ କଲେ ସମ୍ମିଳନୀର ମହତ୍ତ୍ୱ ରହିବ ନାହିଁ, କାର୍ଯ୍ୟ ନିର୍ବାହିକା ସମିତିରୁ ଯେଉଁ ଯେଉଁ ପ୍ରସ୍ତାବର ଅବତାରଣା ହେଉଅଛି, ସେଥିରୁ ବୁଝୁଅଛୁଁ, ଆପଣମାନେ ଏହା ସୁନ୍ଦରରୂପେ ହୃଦୟଙ୍ଗମ କରିଅଛନ୍ତି । କେହି କେହି କହନ୍ତି ଯେ ସମ୍ମିଳନୀର ଉଦ୍ୟମରେ ଗୋଟିଏ କାଗଜ କାରଖାନା ବା ବସ୍ତ୍ରକାରଖାନା ପ୍ରତିଷ୍ଠା ହେବା ପାଇଁ ଆୟୋଜନ କରାଯାଉ ସତ, ପ୍ରୋକ୍ତ ପଦାର୍ଥଗୁଡ଼ିକର ବେଶ୍ ଅଭାବ ଅନୁଭୂତ ହେଉଥିବାରୁ ଲୋକଙ୍କ ମୁଖରୁ ଏହା ଶୁଣାଯାଏ ଯାହାଦ୍ୱାରା ଦେଶର ଗୋଟିଏ ଅଭାବ ଘୁଞ୍ଚିବା ସଂଗେ ସଂଗେ ଉତ୍କଳ ସମ୍ମିଳନୀର ପ୍ରଭାବ ଭାରତ ତଥା ଜଗତରେ ଲାଗିବା ସମ୍ଭବ, ସେହିପରି ଅନୁଷ୍ଠାନ ପ୍ରତି ଆମ୍ଭେମାନେ ଏକମତ, ଯେଉଁପରି ଏହି କାର୍ଯ୍ୟ

ହୋଇପାରିବ । ଉତ୍କଳ ସମ୍ମିଳନୀ ଏତେ ବଡ଼ କାର୍ଯ୍ୟଟାଏ ଯେପରି ସମାଧା କରିବାକୁ ସକ୍ଷମ ହେବ; ତାହାର ଉପଯୁକ୍ତ ପ୍ରସ୍ତାବ ଆପଣମାନଙ୍କ ପରି ଚିନ୍ତାଶୀଳ ଦେଶସେବକଙ୍କ ଚିନ୍ତାରେ ସୁସଙ୍ଗତ ହୋଇପାରେ ବୋଲି ଆମ୍ଭମାନଙ୍କର ବିଶ୍ୱାସ । ଏହା ଏ ବର୍ଷ ସମ୍ମିଳନୀର ଗୋଟିଏ ପ୍ରସ୍ତାବ ରୂପେ ଗୃହୀତ ହେଲେ ଉପକୃତ ହେବୁଁ । ଆପଣମାନଙ୍କଠାରୁ ଉତ୍ତର ପାଇଲେ ପତ୍ରପ୍ରେରକମାନଙ୍କୁ ତାହା ଜଣାଇଦେବାର ବାସନା ରହିଲା ।

ଆପଣଙ୍କର

ଶ୍ରୀ ଜୟମଙ୍ଗଳ ରଥ

**(ଉତ୍କଳ ସମ୍ମିଳନୀ ୧୩ଶ ଅଧିବେଶନର ବିବରଣୀ:** ପୃ.୮୧-୮୨)

ଉଦ୍ଧୃତପତ୍ରର ଯେଉଁ ଉତ୍ତର ମଧୁସୂଦନ ଦେଇଥିଲେ ତାହା ଊନତ୍ରିଂଶ ଉପାଦାନ ଭାବରେ ଉପସ୍ଥାପିତ ଓ ତାହା ପୂର୍ବୋକ୍ତ ପୁସ୍ତିକାରୁ (ପୃ.୮୨-୮୪)ରୁ ଗୃହୀତ ।

୩୦. ଉତ୍କଳ ସମ୍ମିଳନୀର ଚତୁର୍ଦ୍ଦଶ ବାର୍ଷିକ ଅଧିବେଶନ ଉତ୍କଳମଣି ଗୋପବନ୍ଧୁ ଦାଶଙ୍କ ସଭାପତିତ୍ୱରେ କଟକର ମ୍ୟୁନିସିପାଲିଟି ବଗିଚାରେ ୧୯.୪.୧୯୧୯ ଓ ୨୦.୪.୧୯୧୯ ତାରିଖରେ ଅନୁଷ୍ଠିତ ହୋଇଥିଲା । ଜଗଦ୍‌ବଲ୍ଲଭ ଘୋଷଙ୍କ ସମ୍ପାଦକତ୍ୱରେ ଆୟୋଜିତ ଏହି ଅଧିବେଶନରେ ମଧୁସୂଦନ ଜଣେ ସାଧାରଣ ପ୍ରତିନିଧି ଭାବରେ ଯୋଗ ଦେଇଥିଲେ । ଏହାର ପରବର୍ତ୍ତୀ ଅଧିବେଶନଗୁଡ଼ିକରେ କେତେବେଳେ ଅଭିମାନବଶତଃ ଓ ଅନ୍ୟ କେତେବେଳେ ଅସୁବିଧାବଶତଃ ଯୋଗ ଦେଇନାହାନ୍ତି ସେ । ତେଣୁ ଚତୁର୍ଦ୍ଦଶ ଅଧିବେଶନରେ ମଧୁସୂଦନଙ୍କର ଉତ୍କଳ ସମ୍ମିଳନୀରେ ଥିଲା ଶେଷ ଯୋଗଦାନ । ପ୍ରଥମ ଦିନ ଗୋପବନ୍ଧୁଙ୍କ ଅନୁରୋଧ ରକ୍ଷା କରି ମଧୁବାବୁ ଯେଉଁ ଭାଷଣ ଦେଇଥିଲେ, ତାହା ଥିଲା ଉତ୍କଳ ସମ୍ମିଳନୀରେ ତାଙ୍କର ଶେଷ ଅଭିଭାଷଣ । ସେହି ଭାଷଣ ଏଠାରେ ତ୍ରିଂଶ ଉପାଦାନ ଭାବରେ ମୁଦ୍ରିତ ଓ ଏହା **ଆଶା** ସାପ୍ତାହିକପତ୍ରର ଷଷ୍ଠ ବର୍ଷ ଚଉତିରିଶ ସଂଖ୍ୟା(୨୧.୪.୧୯୧୯)ରୁ ଗୃହୀତ ।

**ଦେବେନ୍ଦ୍ର କୁମାର ଦାଶ**

***

# ୧

## ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ

ଇଉରୋପରେ ନେଶନ ଅର୍ଥାତ୍ ଜାତି ଶବ୍ଦ ଗୋଟିଏ ରାଷ୍ଟ୍ର ବା ଦେଶର ଲୋକସମୂହକୁ ବୁଝାଏ । ଇଉରୋପୀୟ ଜାତିସମୂହ ପରସ୍ପରଠାରୁ ଯେଉଁ ପରିମାଣରେ ବିଭିନ୍ନ, ଭାରତବର୍ଷର ପ୍ରାଦେଶିକ ଲୋକସମୂହ ସେହିପରି ନାନା ବିଷୟରେ ପରସ୍ପରଠାରୁ ପରିମାଣରେ ବିଭିନ୍ନ । ଏହି ହେତୁରୁ ଭାରତବର୍ଷରେ ଜାତୀୟତା ଏହି ଶବ୍ଦ ଗୋଟିଏ ବିଶେଷ ଅର୍ଥରେ ବ୍ୟବହୃତ ହେବାର ଦେଖାଯାଏ । ଏକ ଜାତିର କେତେକ ବ୍ୟକ୍ତି ସହିତ ଅନ୍ୟ ଏକ ଜାତିର କେତେକ ବ୍ୟକ୍ତିଙ୍କର ପରସ୍ପର ବିରୋଧ ଥିବାର ଦେଖାଗଲେ, ଲୋକେ ଭ୍ରମରେ ପଡ଼ି ବ୍ୟକ୍ତିଗତ ବିରୋଧକୁ ଜାତୀୟ ବିଦ୍ୱେଷରେ ପରିଣତ କରିବାକୁ ଚେଷ୍ଟା କରନ୍ତି । ଏହା ଦୁଇ ଜାତି ବା ସମାଜ ମଧ୍ୟରେ ମିତ୍ରଭାବ-ରକ୍ଷା-ପକ୍ଷରେ ଗୋଟିଏ ମହା ପ୍ରତିବନ୍ଧକ ଅଟେ । ଲୋକେ ଧୀର ଭାବରେ ବିଚାର ନ କରି ଯେତେଦିନ ଯାଏ ଏହିପରି ଦ୍ୱେଷଭାବର ଉତ୍ତେଜନାରେ ଚାଳିତ ହେଉଥିବେ, ସେପର୍ଯ୍ୟନ୍ତ ଦୁଇଜାତି ମଧ୍ୟରେ ମିତ୍ରଭାବ ବର୍ଦ୍ଧିତ ହେବା ଅସମ୍ଭବ । ଅତଏବ ଦୁଇଜାତି ବା ସମାଜ ମଧ୍ୟରେ ମିତ୍ରତା ବର୍ଦ୍ଧନ କରିବା ପାଇଁ, ଦୃଢ଼ ନିର୍ବନ୍ଧ ସହିତ କୌଣସି ଜାତୀୟ ଅନୁଷ୍ଠାନ କରିବା ଏକାନ୍ତ ଆବଶ୍ୟକ । ତାହାହେଲେ କେତେକ ବ୍ୟକ୍ତିମାନଙ୍କ ମଧ୍ୟରେ ବିରୋଧ ଥିଲେ ସୁଦ୍ଧା, ଦୁଇଜାତି ବା ସମାଜ ମଧ୍ୟରେ ବନ୍ଧୁଭାବ ସୁରକ୍ଷିତ ହୋଇ ଅବିଚ୍ଛିନ୍ନ ରହିପାରିବ ।

ବିଧାତା ଓଡ଼ିଶାର ଲୋକମାନଙ୍କୁ ଅନ୍ୟ ଯେଉଁ ଯେଉଁ ଜାତିମାନଙ୍କ ସଂସ୍ରବରେ ଆଣି ଅଛନ୍ତି, ସେମାନଙ୍କଠାରୁ ଉତ୍କଳୀୟମାନେ ବହୁ ଶିକ୍ଷା ଲାଭ କରିଅଛନ୍ତି ଏବଂ ଆହୁରି ଅନେକ ଶିକ୍ଷା ଲାଭ କରିପାରିବେ । ବ୍ୟକ୍ତି ସମ୍ବନ୍ଧରେ ଯେପରି, ଜାତି ସମ୍ବନ୍ଧରେ ମଧ୍ୟ ସେହିପରି ବକ୍ତବ୍ୟ ଯେ, ଯେ ଶିକ୍ଷାର୍ଥୀ ହେବ, ତାହାର ପ୍ରଥମେ ନିଜର ଅଭାବ ଓ ତ୍ରୁଟି ଜାଣିବା ଆବଶ୍ୟକ । ଅପର ସହିତ ଆପଣାର ସମ୍ବନ୍ଧ ଭଲ ରୂପେ ବୁଝି ନ ପାରିଲେ, ନିଜର ଦୋଷ ଓ ଅଭାବ ଉତ୍ତମରୂପେ ଜଣାପଡ଼େ ନାହିଁ । ଅତଏବ ଏକ ଜାତିର ଉନ୍ନତି ନିମିତ୍ତ ଅପର ଜାତିର ସଙ୍ଗ ଆବଶ୍ୟକ ଏବଂ ପ୍ରସ୍ତାବିତ ଉତ୍କଳୀୟ ସାର୍ବଜନୀନ ସଭା ସେହି ନୀତି ଅନୁସାରେ ପ୍ରତିଷ୍ଠିତ ହେବା ଉଚିତ । ଉକ୍ତ ମହାସଭାରେ ଓଡ଼ିଆ ଜାତି ଓ ସେଥି ସଙ୍ଗେ ଏକୀଭୂତ ଉତ୍କଳୀୟମାନେ ନିମନ୍ତ୍ରଣକାରୀ ଓ ଶିକ୍ଷାର୍ଥୀର ସ୍ଥଳାଭିଷିକ୍ତ ହେବେ ଏବଂ ଅନ୍ୟ ଜାତିର ଲୋକମାନେ ନିମନ୍ତ୍ରିତ ଅତିଥି ଏବଂ ମାନନୀୟ ଶିକ୍ଷକର ଆସନରେ ପ୍ରତିଷ୍ଠିତ ହେବେ । ବର୍ତ୍ତମାନ ଅବସ୍ଥାରେ ଦୋଷାଦୋଷ ବିଚାର ଅପେକ୍ଷା ଆତ୍ମନିର୍ଭରତା ସହ ଉଦ୍‌ଯୋଗ ଅଧିକ ଶ୍ରେୟସ୍କର । ଏହା ଜାଣି ଶାସନତନ୍ତ୍ରର ସମାଲୋଚନା ଓ ଧର୍ମବିଷୟକ ତର୍କାଦି ସମ୍ପୂର୍ଣ୍ଣରୂପେ ବର୍ଜନ କରିବା ଉଚିତ ।

***

୨

## ଉତ୍କଳ ସମ୍ମିଳନୀ ସଭାର ଉଦ୍ଦେଶ୍ୟ

ଏହି ସମ୍ମିଳନୀ ସଭାମଣ୍ଡପରେ କି କି କାର୍ଯ୍ୟ ହୋଇଥିଲା ତାହା କହିବା ପୂର୍ବରୁ, ଏ ସମ୍ମିଳନୀ କାହିଁକି ଓ କି ଉଦ୍ଦେଶ୍ୟରେ ହୋଇଅଛି ତାହା ସଂକ୍ଷେପରେ ବୁଝାଇଦେବାର ଉଚିତ । ପୂର୍ବେ ଆମ୍ଭମାନଙ୍କର ଏହି ଉତ୍କଳ ଦେଶ ଭାରତବର୍ଷର ଅନ୍ୟାନ୍ୟ ଦେଶମାନଙ୍କ ମଧ୍ୟରେ ଗୋଟିଏ ଉଚ୍ଚ ସ୍ଥାନ ଅଧିକାର କରିଥିଲା । ଉତ୍କଳଦେଶ ଅର୍ଥରେ ଆମ୍ଭେମାନେ ଓଡ଼ିଶା, ଗଞ୍ଜାମ ଓ ସମ୍ବଲପୁର ଏବଂ ଯେତେ ସ୍ଥାନରେ ଓଡ଼ିଆ ଭାଷା ଚଳୁଅଛି ସେ ସମସ୍ତ ଅଞ୍ଚଳକୁ ନେଇଅଛୁ । ପୂର୍ବେ ଏ ସବୁ ଜିଲା ଉତ୍କଳ ମଧ୍ୟରେ ଗଣାଯାଉଥିଲା । ଏକ ସମୟରେ ଓଡ଼ିଶାର ସୀମା ଉତ୍ତରରେ ଗଙ୍ଗାନଦୀ ଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ଲାଗିଥିଲା । ଆମ୍ଭମାନଙ୍କ ପୂର୍ବ ପୁରୁଷମାନେ ପୂର୍ବେ ଶିଳ୍ପ, ବାଣିଜ୍ୟ, ଧର୍ମ ଓ ସାହିତ୍ୟରେ ଢେର ଉନ୍ନତି କରିଥିଲେ । ଆମ୍ଭମାନଙ୍କ ଦେଶର ରାଜାମାନେ ନିଜ ବାହୁବଳରେ ଉତ୍ତରରେ ଏବଂ ଦକ୍ଷିଣରେ କେତେକ ରାଜ୍ୟ ଜୟ କରିଥିଲେ । ଓଡ଼ିଶାର ରାଜାମାନେ ''ଗଜପତି'' ପଦରେ ଭୂଷିତ ହୋଇଥିଲେ । ଆମ୍ଭମାନଙ୍କ ପୂର୍ବପୁରୁଷମାନେ ବାଣିଜ୍ୟ କରିବା ନିମନ୍ତେ ବୋଇତରେ ସମୁଦ୍ର ପାରି ହୋଇ ଯାବା, ବୋର୍ଣ୍ଣିଓ, ବାଲି ଦ୍ୱୀପ ପର୍ଯ୍ୟନ୍ତ ଯାଉଥିଲେ; କଟକ କାଠଯୋଡ଼ୀ ଓ ମହାନଦୀର ପଥର ବନ୍ଧ, ଭୁବନେଶ୍ୱର ଓ ପୁରୀର ବିଚିତ୍ର ଦେଉଳମାନ ତିଆରି କରିଥିଲେ; ପୁରୀଠାରେ ଜଗନ୍ନାଥଙ୍କୁ ପ୍ରତିଷ୍ଠା କରି ଜାତିଭେଦ ଉଠାଇଦେଇଥିଲେ; ହିନ୍ଦୁଧର୍ମ ଓ ବୌଦ୍ଧଧର୍ମ ମଧ୍ୟରେ ଅମେଳ ଭାଙ୍ଗିଥିଲେ; କାରିଗରି ଓ ବୁଦ୍ଧିବଳରେ କଣାରକଠାରେ ଗୋଟିଏ ବିଚିତ୍ର ଦେଉଳ ତିଆରି କରି ତାକୁ ଚକ ଉପରେ ଠିଆ କରାଇଥିଲେ । ଆମ୍ଭମାନଙ୍କ ଦେଶର କାରିଗରମାନେ ବଡ଼ ବଡ଼ ନଗର, ଦୁର୍ଗ ପ୍ରସ୍ତୁତ କରିଅଛନ୍ତି, କଟକର ବାରବାଟୀ କିଲାରେ ନ' ମହଲା କୋଠା ତିଆରି କରିଥିଲେ, ଏହି ଦେଶର ତନ୍ତିମାନେ ଏପରି ବିଚିତ୍ର ଓ ସରୁ ଲୁଗା ବୁଣୁଥିଲେ ଯେ ଇଉରୋପରୁ ଧନୀ ବେପାରିମାନେ ଆସି ସେ ଲୁଗା କିଣି ନେଉଥିଲେ । ଯାଜପୁରରେ ଯେତେ ଯେତେ ଭଙ୍ଗା ତୁଟା ସ୍ଥାନ ଓ ପଥର ଓ ମୂର୍ତ୍ତିମାନ ଦେଖାଯାଏ ସେଥିରୁ ଉତ୍କଳର ପୂର୍ବ ଗୌରବର କିଞ୍ଚିତ୍ ଇସାରା ମିଳେ । ଆଜି ଭୁବନେଶ୍ୱର ଓ ଖଣ୍ଡଗିରିର କାରିଗରି ଦେଖିବାକୁ ଦୂରଦେଶରୁ ଲୋକେ ଆସୁଅଛନ୍ତି । ପୂର୍ବେ ଆମ୍ଭମାନଙ୍କ ଦେଶର କାରିଗରଙ୍କର ଏପରି ହାତଯଶ ଥିଲା ଯେ ଏହା ଦେଖି ସାହେବମାନେ ସୁଦ୍ଧା ଆଜି ଆଶ୍ଚର୍ଯ୍ୟ ହୋଇଅଛନ୍ତି । ବାଲେଶ୍ୱରର ଲୋକମାନେ ସ୍ଲୁପ ବୋଟ ତିଆରି କରନ୍ତି ଓ ବାଲେଶ୍ୱରୀ କେଉଟମାନେ ସେହି ସ୍ଲୁପମାନଙ୍କୁ ସମୁଦ୍ରରେ ଚଳାନ୍ତି । ସୁରକି ମସଲା ନ ଲଗାଇ କେବଳ ଘସା କାମରେ ପଥର ଉପରେ ପଥର ବସାଇ ଏ ଦେଶର କାରିଗରମାନେ ଦେଉଳ ତିଆରି

କରିଯାଇଅଛନ୍ତି । ପଥର ଉପରେ ଏପରି ସୂକ୍ଷ୍ମଭାବରେ ମୂର୍ତ୍ତିମାନ ଖୋଳିଅଛନ୍ତି ଯେ କେତେ ଶହ ବର୍ଷ ଗଲାଣି ତେବେ ସୁଦ୍ଧା ବର୍ତ୍ତମାନ ସେ ମୂର୍ତ୍ତି ସବୁ ଅନେକ ଯାଗାରେ ଟିକିଏ ସୁଦ୍ଧା ଖୁଣ ହୋଇନାହିଁ । କେତେକ ସାହେବ ପଣ୍ଡିତମାନେ ଏ ମୂର୍ତ୍ତି ସବୁ ଗ୍ରୀସ, ରୋମ ଓ ମିସରର କାରିଗରି ଅପେକ୍ଷା ଖୁବ୍ ସରସ ବୋଲି ବାରମ୍ବାର କହିଯାଇଅଛନ୍ତି । ଏକ ସମୟରେ ଚିଲିକା ଓଡ଼ିଶାର ଗୋଟିଏ ପ୍ରଧାନ ବନ୍ଦର ଥିଲା ଓ ସେହି ବାଟେ ଏହି ଦେଶର ମହାଜନମାନେ ବୋଇତ ନେଇ ବିଦେଶକୁ ଯାଇ ବେପାର କରୁଥିଲେ । କୋଠାଯୋଡ଼ୀ ମହାନଦୀର ପଥରବନ୍ଧମାନ କେତେ ଶହ ବର୍ଷ ହେଲା କେତେ ପାଣିର ତୋଡ଼ମାଡ଼ ସହି ଠିଆ ହୋଇଅଛି । ପୂର୍ବେ ଆମ୍ଭମାନଙ୍କ ଦେଶର କାରିଗରମାନେ ଖିଲଣ କାମ ନ ଜାଣି ସୁଦ୍ଧା ଓଲଟ ନିଶୁଣି ପରି ପଥର ଉପରେ ପଥର ଥୋଇ ଶେଷକୁ ଖଣ୍ଡିଏ ଲେଖାଏଁ ଆଡ଼େଣି ପଥର ଦେଇ ନହଡିମୁଦାଦ୍ୱାରା ଅଠରନଳା ପୋଲ ଏପରି କୌଶଳରେ କରିଅଛନ୍ତି ଯେ ସେ ବର୍ତ୍ତମାନର ଖିଲଣ କାମ ଠାରୁ ବେଶି ମଜଭୁତ ଓ ଶକ୍ତ ହୋଇଅଛି । କେବଳ ପଥର କାମରେ ନୁହେଁ; କାଠ କାରିଗରିରେ ଉତ୍କଳୀୟମାନେ ପୂର୍ବେ ଖୁବ୍ ଉନ୍ନତି କରିଥିଲେ । ଓଡ଼ିଶା ଉପକୂଳରୁ କୈବର୍ତ୍ତମାନେ (କେଉଟ ନୁହନ୍ତି) ତମଲୁକଠାକୁ ଯାଇ ସେଠାରେ ରାଜପଣ କରିଥିଲେ । ଆମ୍ଭମାନଙ୍କ ପୂର୍ବପୁରୁଷମାନେ ମାପ ଓ ଜରୀବ କାର୍ଯ୍ୟରେ ବିଶେଷ ନିପୁଣ ଥିଲେ । ଭୂମି ଖାଲଢିପ ଜାଣିବା ନିମନ୍ତେ ଥାଳିଏ ପାଣି ଓ ଖଣ୍ଡିକେତେ ତାଳପତ୍ର ବ୍ୟବହାର କରୁଥିଲେ । ଏକ ସମୟରେ ଉତ୍କଳ ରାଜାଙ୍କର ସୈନ୍ୟଙ୍କ ମଧ୍ୟରେ ୫୦୦୦୦ ପାଇକ, ୧୦୦୦୦ ଘୋଡ଼ସବାର ଓ ୨୫୦୦୦ ହାତୀ ଥିଲେ । ଏହାଛଡ଼ା ମୁହୂର୍ତ୍ତକ ମଧ୍ୟରେ ତିରିଶ ଲକ୍ଷ ପାଇକ ଆଜ୍ଞା ପାଇଲେ ଏକତ୍ରିତ ହୋଇ ପାରୁଥିଲେ ।

ଏକ ସମୟରେ ଆମ୍ଭମାନଙ୍କ ପୂର୍ବପୁରୁଷମାନେ ବାହୁବଳରେ ମୁସଲମାନମାନଙ୍କୁ ଯୁଦ୍ଧରେ ପରାଜୟ କରିଥିଲେ । ଦୂରଦକ୍ଷିଣସ୍ଥ କାଞ୍ଚି ପର୍ଯ୍ୟନ୍ତ ଉତ୍କଳୀୟମାନଙ୍କ ଜୟପତାକା ଉଡୁଥିଲା । ଉତ୍କଳର ଧର୍ମସଂସ୍କାରକ ଜଗନ୍ନାଥ ଦାସ ଧର୍ମ ଓ ଭକ୍ତି ବିଷୟରେ ଚୈତନ୍ୟଦେବଙ୍କଠାରୁ ଉନ୍ନତ ଥିବାର ଦେଖି ନିଜେ ଚୈତନ୍ୟ ଭାବରେ ବିଗଳିତ ହୋଇ ତାଙ୍କୁ 'ଅତିବଡ଼' ଜଗନ୍ନାଥ ଦାସ ବୋଲି ନାମ ଦେଇଥିଲେ । ସେ ଧର୍ମ ଓ ଭକ୍ତିରେ ଜାତିଭେଦ ସ୍ୱୀକାର କରୁ ନ ଥିଲେ । ଆମ୍ଭ ପୂର୍ବପୁରୁଷମାନେ ସାମାନ୍ୟ ନଳ ପଦିକାରେ ମାପି ଯାହା ସ୍ଥିର କରିଥିଲେ ଇଂରାଜୀ ମାପ ଅନୁସାରେ ଆଜି ତାହା ଠିକ୍ ମିଳୁଅଛି ।

ପୂର୍ବେ ଆମ୍ଭମାନଙ୍କ ଦେଶରେ ସ୍ତ୍ରୀଶିକ୍ଷା ମଧ୍ୟ ପ୍ରଚଳିତ ଥିବାର ପ୍ରମାଣ ଅଛି । ଓଡ଼ିଆ କବି ଜଗନ୍ନାଥ ଦାସ ଓ ବଳରାମ ଦାସଙ୍କର ଏପରି ମୋହିନୀ ଶକ୍ତି ଥିଲା ଯେ ଆଜି ସୁଦ୍ଧା ଲକ୍ଷ ଲକ୍ଷ ଉତ୍କଳୀୟ ତାଙ୍କର ପଦମାନ ପଢ଼ି ପ୍ରେମରେ ମାତି ଉଠୁଅଛନ୍ତି । କବି

ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ, କବିସୂର୍ଯ୍ୟ ଇତ୍ୟାଦି କେତେ କେତେ ଉଚ୍ଚଧରଣର କବି ପୁରାତନ ଓଡ଼ିଆ ଭାଷା ଓ ସାହିତ୍ୟର ଶ୍ରୀ ବଢ଼ାଇ ଦେଇ ଯାଇଅଛନ୍ତି । ଓଡ଼ିଆମାନେ ସଂସ୍କୃତଚର୍ଚ୍ଚା ଓ ଶାସ୍ତ୍ରଚର୍ଚ୍ଚାରେ ଖୁବ୍ ଉଚ୍ଚସ୍ଥାନ ଅଧିକାର କରିଥିଲେ, ଚୈତନ୍ୟଦେବଙ୍କର ପୂର୍ବପୁରୁଷମାନେ ଯାଜପୁର ନିକଟବର୍ତ୍ତୀ ଏକ ସ୍ଥାନରେ ବାସ କରୁଥିଲେ, ଏ ବିଷୟ ବଙ୍ଗାଳି ପଣ୍ଡିତମାନେ ସ୍ୱୀକାର କରନ୍ତି; ଚୈତନ୍ୟଦେବଙ୍କର ପିତାଙ୍କ ନାମ ଜଗନ୍ନାଥ ମିଶ୍ର ଥିଲା । ଭାଷାବିଜ୍ଞାନ, ଅଶ୍ୱଶାସ୍ତ୍ର, ଇତିହାସ ଇତ୍ୟାଦି ଚର୍ଚ୍ଚାରେ ଆମ୍ଭମାନଙ୍କ ପୂର୍ବପୁରୁଷମାନେ ଉନ୍ନତ ଥିବାର ପ୍ରମାଣ ମିଳେ । ଓଡ଼ିଶା ରାଜାମାନଙ୍କ ଶାସନାଧୀନରେ ଥିଲା ସତ୍ୟ, କିନ୍ତୁ ପ୍ରତି ଗ୍ରାମରେ ପଞ୍ଚାୟତ ପ୍ରଥା ପ୍ରଚଳିତ ଥିଲା । ଉତ୍କଳର ଏହିପରି କେତେକ ଗୌରବର ବିଷୟ ଅଛି । ଧନ, ଧର୍ମ, ସାହିତ୍ୟ, ଶିଳ୍ପ, ବାଣିଜ୍ୟରେ ଉତ୍କଳୀୟମାନେ ଖୁବ୍ ଉନ୍ନତି କରିଥିଲେ । ଆମ୍ଭେମାନେ ସେହିମାନଙ୍କ ବଂଶଧର । କିନ୍ତୁ ଦୈବବିପାକରୁ ମଝିରେ କେତେଦିନ ଆମ୍ଭମାନଙ୍କ ଭାଗ୍ୟ ଅସ୍ତ ହୋଇଥିଲା ।  ଶୁଭକ୍ଷଣରେ ଇଂରାଜୀ ସଭ୍ୟତା ଆମ୍ଭମାନଙ୍କ ମାତୃଭୂମିକୁ ଛୁଇଁଅଛି । ଯେତେଦିନ ଆମ୍ଭେମାନେ ଆଖିବୁଜି ଶୋଇଥିଲୁଁ ଶୋଇଥିଲୁଁ । ବର୍ତ୍ତମାନ ସମସ୍ତେ ଅଣ୍ଟାଭିଡ଼ି ପୂର୍ବପୁରୁଷମାନଙ୍କ କୀର୍ତ୍ତି ସୁମରି, ଚାଲ, କାର୍ଯ୍ୟକ୍ଷେତ୍ରକୁ ବାହାରିବା । ଭାରତର ସମସ୍ତ ଜାତି ଇଂରାଜିସଭ୍ୟତା ପାଇ ଦିନକୁଦିନ ଉନ୍ନତି କରୁଅଛନ୍ତି । ଉତ୍କଳର ଅବସ୍ଥା କିପରି ଦିନକୁଦିନ ଉନ୍ନତ ହେବ ଏଥିଲାଗି ଏହି ସମ୍ମିଳନୀ ସଭା ଆରମ୍ଭ ହୋଇଅଛି । ଏପରି ଗୋଟିଏ ଜାତୀୟ ସଭା କରି ଆମ୍ଭେମାନେ ସମସ୍ତେ ଉନ୍ନତି ବାଟରେ ଚାଲିବା ପାଇଁ ମନପ୍ରାଣ ଦେଇ ଯତ୍ନ କରିବା । ବର୍ତ୍ତମାନ ମଧ ଉପଯୁକ୍ତ ସମୟ ଉପସ୍ଥିତ ହୋଇଅଛି । ଏହି ସମୟ ଉପସ୍ଥିତ ହୋଇ ନଥିଲେ ଆଜି ଉତ୍କଳ ସମ୍ମିଳନୀ ସଭା ଏତେଦୂର କୃତକାର୍ଯ୍ୟ ହୋଇ ନ ଥାନ୍ତା । ସବୁ ଭାଇଯାକ ଏକାଠେଇଁ ହୋଇ ଆପଣାର କିପରି ଦିନକୁ ଦିନ ବଢ଼ତି ହେବ ଏ ବିଷୟ ବସି ଦୁଃଖସୁଖ ହେବା ଆମ୍ଭମାନଙ୍କ ପକ୍ଷରେ ବହୁ ଭାଗ୍ୟର କଥା, କିନ୍ତୁ ଖାଲି କଥାବାର୍ତ୍ତାରେ ନିଶ୍ଚିନ୍ତ ହୋଇ ରହିଲେ କିଛି ଫଳ ହେବ ନାହିଁ । ଚାଲ ସମସ୍ତେ  ଯେ ଯାହା ଶକ୍ତି ଓ ବଳକୁ ଚାହିଁ କାର୍ଯ୍ୟ କରିବା । ଯେତେବେଳେ ରାମଚନ୍ଦ୍ର ସେତୁବନ୍ଧ ବାନ୍ଧୁଥିଲେ ସେତେବେଳେ ସେହି ସେତୁ ବାନ୍ଧିବାରେ ବଡ଼ ବଡ଼ ବୀରମାନେ ତାଙ୍କର ବଳ ପରାକ୍ରମ ଖଟାଇଥିଲେ, ଗୁଣ୍ଡିଚିମୂଷା ମଧ ତାହାର ବଳ ଓ ପରାକ୍ରମକୁ ଚାହିଁ ପାଣିରେ ବୁଡ଼ି ବାଲିରେ ଗଡ଼ି ସେ ବାଲିତକ ଆଣି ବନ୍ଧଉପରେ ଝାଡ଼ିଝୁଡ଼ି ହେଉଥିଲା । ଯାହାର ଯେ ଶକ୍ତି ଅଛି ଚାଲ ସମସ୍ତେ ମାତୃଭୂମି ସେବାରେ ଲଗାଇବା । ବଡ଼ବଡ଼ ବଡ଼ବଡ଼ଙ୍କ କର୍ମ କରନ୍ତୁ, ସାନସାନ ସାନସାନଙ୍କ କର୍ମ କରନ୍ତୁ, ଦେଖିବ ଯେ ସମସ୍ତ ଉତ୍କଳ ଦିନକୁଦିନ ଉନ୍ନତି କରିବ ।

ଗଞ୍ଜାମ, ସମ୍ବଲପୁର, ମେଦିନୀପୁର, ଓଡ଼ିଶାର ଭାଇମାନେ କାଳକ୍ରମେ ଭିନ୍ନ ଭିନ୍ନ

ହୋଇ ଯାଇଅଛନ୍ତି ସତ୍ୟ, କିନ୍ତୁ ସମସ୍ତେତ ଏକ ମାର ପୁଅ । ସମସ୍ତେ ଉତ୍କଳ ମାତାର ସନ୍ତାନ । ଆଜିଯାଏ ଆମ୍ଭେମାନେ ଏକାଠେଇଁ ହୋଇଅଛୁଁ ଈଶ୍ୱର କଲେ ଦିନେ ଆମ୍ଭମାନଙ୍କ ଜାତି ଭାରତବର୍ଷର ଆଉ ଆଉ ଜାତିଙ୍କ ସଙ୍ଗେ ସମକକ୍ଷ ହୋଇ ଠିଆ ହୋଇପାରିବ । କି କି ଉପାୟରେ ଏହା ହେବ ସେଥିପାଇଁ ସମ୍ମିଳନୀରେ ସମସ୍ତେ ରୁଣ୍ଡ ହୋଇଥିଲେ । ଆମ୍ଭମାନଙ୍କୁ ବାହାର କରି କର୍ମକ୍ଷେତ୍ରରେ ଅଣ୍ଟାଭିଡ଼ାଇ ଠିଆ କରାଇବା ନିମନ୍ତେ ଏହି ଉତ୍କଳସମ୍ମିଳନୀ ସଭାର କଳ୍ପନା । ବର୍ତ୍ତମାନ ଏପରି ଗୋଟିଏ ଜାତୀୟ କାର୍ଯ୍ୟ ଆରମ୍ଭ କରିବା ନିମନ୍ତେ ଉପଯୁକ୍ତ ସମୟ ଆସି ଉପସ୍ଥିତ ହୋଇଅଛି, ଏହାର ଢେର ପ୍ରମାଣ ଓ ସୂଚନା ମିଳିଅଛି । କ୍ରମଶଃ ଉତ୍କଳୀୟଙ୍କ ମନରେ ଜାତୀୟଭାବ ଓ ଜାତୀୟ ଅଭିମାନ ଉଦୟ ହୋଇଅଛି । ଉତ୍କଳୀୟମାନେ ବର୍ତ୍ତମାନ ରାଜନୈତିକ ଭାବରେ ଛିନ୍ନବିଛିନ୍ନ ହୋଇ ସୁଦ୍ଧା ସେହି ରାଜନୈତିକ ବିଚ୍ଛେଦକୁ ପରସ୍ପର ମଧ୍ୟରେ ସହାନୁଭୂତିଦ୍ୱାରା ବୁଡ଼ାଇ ପକାଇବାକୁ ଚେଷ୍ଟା କରୁଅଛନ୍ତି; ଏହା ସେହି ଜାତୀୟ ଭାବ ଉଦୟର ପ୍ରଥମ ସୋପାନ । ଏପରି ଜାତୀୟ ଭାବ ଉଦୟ ହୋଇ ନ ଥିଲେ ଆଜି ଉତ୍କଳସମ୍ମିଳନୀ ଏପରି ନିର୍ବିଘ୍ନରେ ସମ୍ପନ୍ନ ହୋଇ ପାରି ନ ଥାନ୍ତା । ସବୁ ଭାଇମାନେ ଏକାଠେଇଁ ହୋଇ ଆପଣାର ଦୁଃଖସୁଖ ବିଷୟ କଥାଭାଷା ହେବା କି କମ୍ ଭାଗ୍ୟ ? ଏଥିପାଇଁ ସୁବିଧା ଓ ମନ ଉଭୟ ଯେ ଆମ୍ଭମାନଙ୍କୁ ଏକାଦିନେ ମିଳିଲା ଏହା ଭାବିଲେ ମନ ସ୍ୱଦେଶ-ପ୍ରେମରେ ବୁଡ଼ିଯାଏ । ଭାଇଯାକ ଏହି ପ୍ରଥମ ସମ୍ମିଳନୀରେ ପରସ୍ପର ସଙ୍ଗେ ଦେଖା ସାକ୍ଷାତ ହୋଇଅଛନ୍ତି ମାତ୍ର । ନିଜ ନିଜର ଦୁର୍ଦ୍ଦଶା କପରି ଘୁଞ୍ଚିବ ଏ ବିଷୟରେ ପଦେ ଅଧେ କଥା ଭାଷା ହୋଇଅଛନ୍ତି ସତ୍ୟ, କିନ୍ତୁ ଏଣୁ ଯାଇ କବାଟ କିଳି ନ ଶୋଇ ଯେଝା ବୁଦ୍ଧି, ବଳ ଓ ଶକ୍ତି ଅନୁସାରେ ସମସ୍ତ ଭାଇମାନଙ୍କୁ ଅଣ୍ଟା ଭିଡ଼ିବାକୁ ହେବ । ଏଥି ନିମନ୍ତେ ଏଠାରେ ଗୋଟିଏ ଉଦାହରଣ ମନେ ପଡୁଅଛି । ସେ ଉଦାହରଣଟି ଆଧୁନିକ ସଭ୍ୟତା ଆଲୋକ ଯୁଗର ଉଦାହରଣ ନୁହେଁ କିମ୍ବା ନୂତନ ନୁହେଁ । ଭାରତର ପୂର୍ବକାଳରେ ଯେଉଁ ସଭ୍ୟତା ଥିଲା ସେହି ସମୟରେ ଗ୍ରାମର ଶାସନର ଭାର ଗ୍ରାମ୍ୟ ସମିତି ଅଧୀନରେ ଥିଲା । ସେଥିରେ ଯେଝାର ଯେ ଶକ୍ତି ତାହା ଲାଗୁଥିଲା, ବଡ଼ବଡ଼ କାର୍ଯ୍ୟରେ ବଡ଼ବଡ଼ଙ୍କ ଶକ୍ତି ଅନୁସାରେ ସେମାନେ କାର୍ଯ୍ୟ କରୁଥିଲେ, ସାନସାନ ମଧ୍ୟ ତାଙ୍କ ବଳକୁ ଚାହିଁ ତାଙ୍କ କାର୍ଯ୍ୟ କରୁଥିଲେ । ଗ୍ରାମ୍ୟ ସମିତିର କାର୍ଯ୍ୟ ଚଳିବା ନିମନ୍ତେ ଯେଝାର ଯେଉଁ କାର୍ଯ୍ୟ ଖଞ୍ଜାଥିଲା ସେ ସେ କାର୍ଯ୍ୟ କରୁଥିଲା ଓ କଳଟି ନିୟମିତରୂପେ ଚଳୁଥିଲା । ସେହି ପ୍ରାଚୀନ ସଭ୍ୟତା ଯୋଗୁ ଆଜି ଭାରତ ପୂଜା ପାଉଅଛି । ହାତ ହାତର କାର୍ଯ୍ୟ କରୁ, ଗୋଡ଼ ଗୋଡ଼ର କାର୍ଯ୍ୟ କରୁ, ମୁଣ୍ଡ ମୁଣ୍ଡ କାର୍ଯ୍ୟରେ ଲାଗୁ, ଆଖି ଆଖିର କାର୍ଯ୍ୟ କରୁ, ଦେଖିବ ଶରୀରଯାକ ଏକ ହୋଇ ସୁରୁଖୁରୁ ହୋଇ ସୁସ୍ଥ ରହିବ, କୌଣସିଆଡୁ ଟିକିଏ ଖଇଚା ହେଲେ ସମୁଦାୟ ଯନ୍ତ୍ରଟି

ବିଗିଡ଼ି ଯିବ ।

ଏ ସମ୍ମିଳନୀର ନାମ ଉତ୍କଳସମ୍ମିଳନୀ । ଏଥିରେ ସମସ୍ତ ଉତ୍କଳଭାଷୀ ଅଞ୍ଚଳର ମଙ୍ଗଳଜନକ ପ୍ରସ୍ତାବମାନ ପ୍ରସ୍ତାବିତ ହୋଇ କାର୍ଯ୍ୟରେ ପରିଣତ ହେବ । ବର୍ତ୍ତମାନ ସରକାର ବାହାଦୁରଙ୍କ ରାଜତ୍ୱରେ ଓଡ଼ିଶାର ସୀମା ଢେର କମି ଯାଇଅଛି । ଫଳରେ ମଧ୍ୟ ଦେଖା ଯାଉଅଛି ସେ ସମ୍ବଲପୁର, ଛୋଟନାଗପୁର, ମେଦିନୀପୁର, ଗଞ୍ଜାମ ଇତ୍ୟାଦି ସ୍ଥାନମାନ ଓଡ଼ିଶାର ବାହାରେ ଥାଇ ସୁଦ୍ଧା ସେ ଅଞ୍ଚଳରେ ଓଡ଼ିଆଙ୍କ ସଂଖ୍ୟା ବହୁତ, ସେଥିପାଇଁ ସମସ୍ତ ଉତ୍କଳଭାଷୀ ଅଞ୍ଚଳକୁ ''ଉତ୍କଳ'' ବୋଲି ନାମ ଦିଆ ହୋଇଅଛି । ଯେଉଁମାନେ ଉତ୍କଳର ସ୍ଥାୟୀ ଅଧିବାସୀ ହୋଇଅଛନ୍ତି ଅର୍ଥାତ୍ ଯେଉଁମାନେ ଉତ୍କଳକୁ ସେମାନଙ୍କ ଗୃହସ୍ୱରୂପ ମଣିଅଛନ୍ତି, ସେମାନେ ଭିନ୍ନ ଜାତୀୟ ହେଲେ ସୁଦ୍ଧା ସେମାନଙ୍କୁ ଉତ୍କଳୀୟ ବୋଲି ଗଣନା କରାଯିବ । ଯେଉଁମାନେ ଅନେକଦିନ ହେଲା ଏଠାକୁ ଆସି ଓଡ଼ିଶାକୁ ଆପଣାର ମାତୃଭୂମି ସ୍ୱରୂପ ଗ୍ରହଣ ଏବଂ ସ୍ୱୀକାର କରୁଅଛନ୍ତି ଓ ଓଡ଼ିଆମାନଙ୍କ ହିତସାଧନକୁ ସ୍ୱଜାତିପ୍ରତି କର୍ତ୍ତବ୍ୟକର୍ମ ବୋଲି ମନେ କରୁଅଛନ୍ତି ସେହିମାନଙ୍କୁ ଆମ୍ଭେମାନେ ଉତ୍କଳୀୟ ବୋଲି ଡାକୁଅଛୁଁ ।

ଏପରି ଗୋଟିଏ ଜାତୀୟକାର୍ଯ୍ୟ ଆରମ୍ଭ କରିବାକୁ ହେଲେ ଆମ୍ଭମାନଙ୍କର କାର୍ଯ୍ୟର ସୀମା କେତେଦୂର ଓ ଆମ୍ଭମାନଙ୍କ ସାମର୍ଥ୍ୟ କଣ ଅଛି ଏହା ପ୍ରଥମେ ଉତ୍ତମରୂପେ ବୁଝିବାକୁ ହେବ । ଏହି ସମ୍ମିଳନୀର ସୀମା ମଧ୍ୟରେ ରାଜନୈତିକ ଆନ୍ଦୋଳନ ଓ ଧର୍ମ ସମ୍ବନ୍ଧୀୟ ତର୍କ ଏ ଦୁହେଁ ସ୍ଥାନ ପାଇ ନାହାନ୍ତି । ଉତ୍କଳୀୟମାନଙ୍କର ବର୍ତ୍ତମାନ ଅବସ୍ଥାକୁ ବିଚାର କରିବାକୁ ଗଲେ ଦେଖାଯିବ ଯେ ଆଜିପର୍ଯ୍ୟନ୍ତ ଉତ୍କଳୀୟମାନେ ଭାରତବର୍ଷର ଅନ୍ୟାନ୍ୟ ଜାତିମାନଙ୍କଠାରୁ ଅନେକ ପଛରେ ପଡ଼ିଅଛନ୍ତି । ରାଜନୈତିକ ଆନ୍ଦୋଳନ ପ୍ରତି ମନଦେବା ପୂର୍ବରୁ ପ୍ରଥମେ ଦେଖିବାର ଉଚିତ ଯେ ଉତ୍କଳୀୟମାନେ ରାଜନୈତିକ ଚର୍ଚ୍ଚା କରିବାକୁ ଉପଯୁକ୍ତ ହୋଇଅଛନ୍ତି କି ନାହିଁ ? ରାଜନୈତିକ ଚର୍ଚ୍ଚା କରିବାକୁ ହେଲେ ଅନ୍ୟର ବା ସରକାର ବାହାଦୁରଙ୍କର କାର୍ଯ୍ୟକଳାପର ଦୋଷାଦୋଷ ବିବେଚନା କରିବାକୁ ହେବ; କିନ୍ତୁ ଧୀରଭାବରେ ଉତ୍କଳର ବର୍ତ୍ତମାନ ଅବସ୍ଥା ଭାବିଲେ ସ୍ଥିର ହେବ ଯେ ଅନ୍ୟର ଦୋଷ ଧରିବା ପାଇଁ ପଦାକୁ ବାହାରିବା ପୂର୍ବରୁ, ଆପଣାର ଦୋଷ ସଂଶୋଧନ କରି, ଆପଣା ଉପରେ ନିର୍ଭର କରି ଉନ୍ନତି କରିବା ଉଚିତ । ଲୋକେ କହନ୍ତି ''ଆପଣା ସୁନାତ ଭେଣ୍ଡି ପରସାଙ୍ଗେ କିଆଁ ବାଳ ଧରାଧରି'' । ଆପଣାର ଦୋଷ ସଂଶୋଧନ କରି ଘରେ ଉତ୍ତମରୂପେ ବାଡ଼ବୁଜି ବାହାରକୁ ଅଣ୍ଟା ଭିଡ଼ି ବାହାରିବାର ଉଚିତ । ଏଥିଯୋଗୁଁ କୌଣସି ରାଜନୈତିକ ତର୍କ ବା ସମାଲୋଚନାକୁ ସମ୍ମିଳନୀର ବର୍ତ୍ତମାନ ସୀମା ମଧ୍ୟରୁ ବାହାର କରିଦେବାକୁ ହୋଇଅଛି । ଦ୍ୱିତୀୟ କଥା ଧର୍ମ ସମ୍ବନ୍ଧୀୟ ଆଲୋଚନା; ଏହାଦ୍ୱାରା ଏପରି କେହି ମନେ କରିପାରନ୍ତି ଯେ ଏପରି

ବଡ଼ କାର୍ଯ୍ୟରେ ଧର୍ମ ସଙ୍ଗେ ଆଦୌ ସମ୍ପର୍କ ନ ରହିଲେ ଏହି ସମ୍ମିଳନୀର ମୂଳଦୁଆ ବନ୍ଧା ହୋଇପାରିବ ନାହିଁ । କିନ୍ତୁ ପୂର୍ବେ ଯାହା ବୋଲାଯାଇଅଛି ସେଥିରୁ ଉତ୍ତମରୂପେ ବୁଝାଯିବ ଯେ ଉତ୍କଳୀୟମାନଙ୍କ ମଧ୍ୟରେ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ, ବ୍ରାହ୍ମ ଇତ୍ୟାଦି ସମସ୍ତେ ଅଛନ୍ତି ଓ ସେମାନଙ୍କର ଧର୍ମ ଭିନ୍ନ ଭିନ୍ନ, ଏପରି ସ୍ଥଳରେ ଧର୍ମ ସମ୍ବନ୍ଧରେ ସେମାନଙ୍କର ମତ ମିଳିପାରିବ ନାହିଁ ଏବଂ ଏ ସମ୍ମିଳନୀରେ ଧର୍ମତର୍କ ପ୍ରବେଶ କଲେ ଆମ୍ଭମାନଙ୍କ ମଧ୍ୟରେ ଗୁରୁତର ମତଭେଦ ହେବାର ସମ୍ଭାବନା । ଏହି କାରଣରୁ ଧର୍ମ ସମ୍ବନ୍ଧୀୟ ତର୍କ ଏ ସମ୍ମିଳନୀର ସୀମା ମଧ୍ୟକୁ ଆସିନାହିଁ । କିନ୍ତୁ ସବୁ ଧର୍ମର ମୂଳରେ ସେହି ଅନନ୍ତ ମହାମହୀୟାନ୍ ପରମେଶ୍ୱର ବିରାଜମାନ । ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ୍, ବ୍ରାହ୍ମ, ସମସ୍ତେ ସେହି ଏକ ଅଭୟ ପାଦପଦ୍ମରେ ଶରଣାଗତ ହୁଅନ୍ତି । ଅତଏବ ସମସ୍ତଙ୍କର ଧର୍ମର ମୂଳଭିତ୍ତି ସେହି ବ୍ରହ୍ମାଣ୍ଡ ଠାକୁର, ତାଙ୍କର ନାମ ଧରି କୌଣସି କାର୍ଯ୍ୟରେ ହାତ ଦେଲେ କେଉଁ ସମ୍ପ୍ରଦାୟର କିଛି ଆପତ୍ତି ନାହିଁ; ବରଂଚ ମୂଳରେ ଏହିପରି ଗୋଟିଏ ଜୀବନ୍ତ ବନ୍ଧନ ନ ରହିଲେ ଏ ସମ୍ମିଳନୀରୂପ ବୃହତ୍ କାର୍ଯ୍ୟ ମଙ୍ଗଳମୟ ହୋଇ ଉଠିବାର ଅସମ୍ଭବ । ସେଇଥିପାଇଁ ଏ ସମ୍ମିଳନୀର ଆରମ୍ଭରେ ମାତୃପୂଜା କରି ବସିବା ପୂର୍ବରୁ ଭଗବାନଙ୍କ ନାମ ସ୍ମରଣ କରି, ସେହି ତେଜୋମୟଙ୍କ ବଳରେ ବଳୀୟାନ୍ ହୋଇ ଆମ୍ଭେମାନେ କାର୍ଯ୍ୟ ଆରମ୍ଭ କରିଅଛୁଁ । ଯାହାଙ୍କ ନାମ କୀର୍ତ୍ତନରେ କେଉଁ ସମ୍ପ୍ରଦାୟର କିଛି ଆପତ୍ତି ହୋଇ ନ ପାରେ, ସେହି ମଙ୍ଗଳମୟଙ୍କ ନାମ ଧରି ଆମ୍ଭେମାନେ ସମ୍ମିଳନୀର କାର୍ଯ୍ୟ ଆରମ୍ଭ କରିଅଛୁଁ । କିନ୍ତୁ ଧର୍ମ ସମ୍ବନ୍ଧୀୟ ତର୍କ କରିବାକୁ ଗଲେ ଏକ ସମ୍ପ୍ରଦାୟଙ୍କ ଚକ୍ଷୁରେ ଯାହା ଯୁକ୍ତି ଓ ବିଶ୍ୱାସପୂର୍ଣ୍ଣ ବୋଲି ଜଣାଯିବ, ଅପର ସମ୍ପ୍ରଦାୟଙ୍କ ପକ୍ଷରେ ତାହା ଅଡୁଆ ଲାଗିବ । ଯଦିଚ ସମ୍ମିଳନୀ ମୂଳରେ ସବୁ ଧର୍ମର ପ୍ରବର୍ତ୍ତକ ସେହି ଅନାଦି ଅନନ୍ତ ବିଦ୍ୟମାନ ତଥାଚ ଧର୍ମ ବିଷୟକ ତର୍କ ଏ ସମ୍ମିଳନୀର ସୀମା ମଧ୍ୟକୁ ଆସି ନାହିଁ ।

ଏ ଦୁଇ ବିଷୟର ତର୍କ ନ କରି କିପରି ଉତ୍କଳୀୟମାନଙ୍କର ଉନ୍ନତି ହେବ ଏହା ହିଁ ଏହି ସମ୍ମିଳନୀର ଉଦ୍ଦେଶ୍ୟ । କିପରି ଉତ୍କଳୀୟମାନେ ବିଦ୍ୟା, ଧନ, ଶିଳ୍ପ ଓ ସମାଜ ଇତ୍ୟାଦି ବିଷୟରେ ଉନ୍ନତି କରିବେ ଏହାହିଁ ଏ ସମ୍ମିଳନୀର କଳ୍ପନା । ଆଜି ପର୍ଯ୍ୟନ୍ତ ଉତ୍କଳୀୟମାନଙ୍କ ଭାଗ୍ୟ ଅନ୍ୟ କେତେ ଜାତିଙ୍କ ଭାଗ୍ୟ ସଙ୍ଗେ ଏକା ଛାଞ୍ଚରେ ଢଳା ହୋଇ ଆସିଅଛି । ଉତ୍କଳୀୟମାନେ କାଳକ୍ରମେ ଅନ୍ୟ ଜାତିମାନଙ୍କ ସଙ୍ଗେ ବଢ଼ିଅଛନ୍ତି, ବଢୁଅଛନ୍ତି ଓ ବଢ଼ିବେ, ଉତ୍କଳୀୟମାନଙ୍କ ସଙ୍ଗେ ଯେଉଁ ଜାତିମାନଙ୍କ ସହବାସ ହୋଇଅଛି ସେମାନଙ୍କ ସଙ୍ଗେ ଉତ୍କଳୀୟଙ୍କର କି ସମ୍ପର୍କ ରହିଅଛି ତାହା ଉତ୍ତମରୂପେ ବୁଝିବାର ଉଚିତ । କାରଣ ଅନ୍ୟ ଜାତିମାନଙ୍କଠାରୁ ଉତ୍କଳୀୟମାନେ ଢେର ଶିକ୍ଷାଲାଭ କରିଅଛନ୍ତି ଓ କରିବେ । ଏପରିସ୍ଥଳରେ ଉତ୍କଳୀୟମାନେ ଉପରୋକ୍ତ ଅନ୍ୟାନ୍ୟ

ଜାତିମାନଙ୍କର ଶିଷ୍ୟ ସ୍ୱରୂପ । ଶିଷ୍ୟ ହେଲେ ପ୍ରଥମେ ନିଜର ଅଭାବ ଓ ଦୋଷଗୁଡ଼ିକ ଉତ୍ତମରୂପେ ବୁଝି ଗୁରୁଙ୍କ ସାହାଯ୍ୟରେ ସେଗୁଡ଼ିକ ସଜାଡ଼ି ନେବାକୁ ହେବ । ତାହାହେଲେ ଗୁରୁଙ୍କ ସଙ୍ଗେ ଶିଷ୍ୟର କି ସମ୍ବନ୍ଧ ତାହା ଭଲରୂପେ ବୁଝିବାକୁ ହେବ । ଅତଏବ ଏକ ଜାତିର ଉନ୍ନତି ନିମନ୍ତେ ଅନ୍ୟ ଉନ୍ନତ ଜାତିର ସଙ୍ଗମ ଏକାନ୍ତ ଆବଶ୍ୟକ । ଅନ୍ୟ ଜାତିର ସଙ୍ଗ ହେବାକୁ ଗଲେ ପରସ୍ପର ମଧ୍ୟରେ ବନ୍ଧୁଭାବ ବଢ଼ାଇବାକୁ ହେବ । ଅନ୍ୟ ଜାତିର ଦୁର୍ଗୁଣଗୁଡ଼ିକ ପ୍ରେମଚକ୍ଷୁରେ କ୍ଷମା ଦେଇ ସେଗୁଡ଼ିକ ତ୍ୟାଗ କରି ଗୁଣଗୁଡ଼ିକ ଗ୍ରହଣ କରି ଆପଣା ଜାତିର ଉନ୍ନତି ସାଧନ କରିବାକୁ ହେବ । ଗୁଣଗୁଡ଼ିକ ଗ୍ରହଣ କରିବା ସହଜକଥା ନୁହେଁ । ବନ୍ଧୁ ଓ ପରମ ମିତ୍ର ଭାବରେ ଅପର ଜାତିଙ୍କ ପ୍ରତି ସମ୍ମାନ-ଦୃଷ୍ଟି ନ କଲେ ଅନ୍ୟର ଗୁଣଗୁଡ଼ିକ ସହଜରେ ଗ୍ରହଣ କରାଯାଇ ନ ପାରେ । ଭିନ୍ନ ଭିନ୍ନ ଜାତୀୟ ଦୁଇଜଣଙ୍କ ମଧ୍ୟରେ କୌଣସି ବିବାଦ ହେଲେ ଲୋକେ ଏହି ବିବାଦକୁ ଦୁଇ ଜାତିଙ୍କ ମଧ୍ୟରେ ବିବାଦ ହେଲା ବୋଲି ସ୍ଥିର କରନ୍ତି, କିମ୍ବା ଏହି ବ୍ୟକ୍ତିଗତ ବିବାଦକୁ ଜାତୀୟ ବିବାଦର ଫଳ ବୋଲି କହି ବୁଲନ୍ତି । ଏହି ଯୋଗୁଁ ଦୁଇ ଜାତି ମଧ୍ୟରେ ବନ୍ଧୁତା ସମୟ ସମୟରେ ଅସମ୍ଭବ ହୋଇଉଠେ । ଏପରି କରିବା ଦ୍ୱାରା ଆଜି ଯେଉଁ ନିଆଁ ଟିକିଏ ଦେଖା ଦେଲା କାଲି ସେ ବ୍ରହ୍ମାଣ୍ଡଯାକ ବ୍ୟାପିଯାଇ ଜାତିଙ୍କୁ ଉନ୍ନତି କରାଇ ଦେବ ନାହିଁ । ଏହି ସମ୍ମିଳନୀ ପରି ଜାତୀୟ କାର୍ଯ୍ୟର ଆରମ୍ଭ ହେଲେ ଭିନ୍ନ ଭିନ୍ନ ଜାତିର ଦୁଇଜଣଙ୍କ ମଧ୍ୟରେ ବିରୋଧ ହେଲେ ମଧ୍ୟ ତାହା ଜାତି ଜାତି ମଧ୍ୟରେ ବିରୋଧ ବୋଲି ଗଣାଯିବ ନାହିଁ ।

ସମସ୍ତ ଉତ୍କଳଭାଷୀ ପ୍ରଦେଶର ଲୋକମାନେ ଆଜିପର୍ଯ୍ୟନ୍ତ ନାନାବିଧି କାରଣରୁ ଭିନ୍ନଭିନ୍ନ ହୋଇ, ନିଜ ନିଜକୁ ନ ଚିହ୍ନି ଯେ ଯେଉଁଠାରେ ପଡ଼ିରହିଥିଲେ । ସବୁ ଭାଇଯାକ କିପରି ଥରେ ହେଲେ ଏକାଠେଇଁ ହୋଇପାରିବା ଏ ଭାବ କ୍ରମଶଃ ସମସ୍ତଙ୍କ ମନରେ ଉଦୟ ହୋଇଥିବାର ଢେର ପ୍ରମାଣ ମିଳିଅଛି । ଭାଷା ସୂତ୍ରରେ ଏ ଭାବ ପ୍ରଥମେ ଉଦିତ ହେଲା । ସମ୍ବଲପୁରରୁ କେତେକ ଦିନ ପୂର୍ବରେ ଯେତେବେଳେ କଚେରିମାନଙ୍କରୁ ଓଡ଼ିଆଭାଷା ଉଠିଗଲା, ସେତେବେଳେ ସମ୍ବଲପୁରର ଓଡ଼ିଆମାନେ କାନ୍ଦି ଉଠିଲେ ଓ ସେତେବେଳେ ଉତ୍କଳବ୍ୟାପୀ ହାହାକାର ପଡ଼ିଗଲା । ପରିଶେଷରେ ସମ୍ବଲପୁର ଭାଇମାନଙ୍କ ଦୃଢ଼ଚେଷ୍ଟା, ଏଠାର ଓଡ଼ିଶାର ଭାଇମାନଙ୍କ ମନର ଦୁଃଖ ଓ ସହାନୁଭୂତି, ଓ ଭଗବାନଙ୍କ ଅନୁଗ୍ରହରୁ ବଙ୍ଗଳାର ବର୍ତ୍ତମାନ ଛୋଟଲାଟ ଶ୍ରୀଯୁକ୍ତ ସର୍ ଆଣ୍ଡ୍ର ଫ୍ରେଜର ଯେ କି ସେ ସମୟରେ ମଧ୍ୟପ୍ରଦେଶର ଭାଗ୍ୟବିଧାତାରୂପେ ଠିଆ ହୋଇଥିଲେ ସେ ସମ୍ବଲପୁରର ଓଡ଼ିଆମାନଙ୍କୁ ଅଭୟ ବର ଦେଇ ଓଡ଼ିଆଭାଷାକୁ ସମ୍ବଲପୁରର କଚେରିମାନଙ୍କରେ ପୁନର୍ବାର ଚଳାଇଲେ । ଯେତେବେଳେ ମୃତ ଓଡ଼ିଆଭାଷା ସମ୍ବଲପୁରରେ ପୁନର୍ବାର ଜୀଇଁ ଉଠିଲା ସେତେବେଳେ ଉତ୍କଳର ଏ ମୁଣ୍ଡରୁ ସେ ମୁଣ୍ଡ

ପର୍ଯ୍ୟନ୍ତ ଆନନ୍ଦରେ ମାତି ଉଠିଲା । ସେହିଦିନ ଉତ୍କଳବାସୀ ଅଞ୍ଚଳର ଏକ ସୀମାରେ ବାସ କରୁଥିବା ଓଡ଼ିଆଙ୍କ ମଧ୍ୟରେ ଓ ଅନ୍ୟ ସୀମାରେ ବାସ କରୁଥିବା ଓଡ଼ିଆଙ୍କ ମଧ୍ୟରେ ଭାଇଭାବ ଥିବାର ପୂର୍ଣ୍ଣ ପ୍ରମାଣ ମିଳିଲା । ଆମ୍ଭେମାନେ ବିଚାରୁଛୁ ସେହିଦିନଠାରୁ ଉତ୍କଳୀୟମାନଙ୍କର ଗୋଟିଏ ନବଯୁଗ ଆରମ୍ଭ ହେଲା । କେତେଦିନ ପରେ ଗଞ୍ଜାମର ଭାଇମାନେ ବ୍ରହ୍ମପୁରଠାରେ ଶୁଭକ୍ଷଣରେ ଗୋଟିଏ ଜାତୀୟ ମେଳାର ସୂତ୍ରପାତ କଲେ । ପ୍ରଥମ ଉଦ୍ୟମରେ ଏହା ପୂର୍ଣ୍ଣରୂପେ କୃତକାର୍ଯ୍ୟ ହେବା ଅସମ୍ଭବ, କିନ୍ତୁ ସେଥିରେ ରାଜନୈତିକ ଓଡ଼ିଶାର କେତେକ ଭ୍ରାତା ଆମନ୍ତ୍ରିତ ହୋଇ ପୂର୍ଣ୍ଣ ହୃଦୟରେ ଯୋଗ ଦେଇଥିଲେ । ଯଦିଚ ପୂର୍ବଘଟନାରେ ଜାତୀୟ ଯୁଗପ୍ରଭାତର ଆଗାମୀ ସୂଚନା ଦେଖା ଯାଉଥିଲା, ବ୍ରହ୍ମପୁରର ଜାତୀୟ-ସମ୍ମିଳନୀ ସତକୁସତ ସେହି ନବଯୁଗର ପ୍ରଭାତ ଉତ୍କଳୀୟମାନଙ୍କୁ ଦେଖାଇଲା । ଯଦିଚ ସମଗ୍ର ଉତ୍କଳୀୟମାନଙ୍କ ମନରେ ପୂର୍ବରୁ ଗୁପ୍ତଭାବରେ ଜାତୀୟଭାବ ବଢୁଥିଲା, ସେହିଦିନ ସେ ଜାତୀୟ ଭାବଟି ବାହାରକୁ ଫୁଟିଉଠିଲା ଓ ଗଞ୍ଜାମ ଜାତୀୟ-ସମିତିର ଛାଞ୍ଚରେ କଟକରେ ଗୋଟିଏ ପ୍ରକାଣ୍ଡ ଉତ୍କଳସମ୍ମିଳନୀ-ସଭା ସ୍ଥାପନର କଳ୍ପନା ହେଲା । କେତେକଦିନ ପୂର୍ବରୁ ସମଗ୍ର ଉତ୍କଳରେ ଏପରି ଗୋଟିଏ ଜାତୀୟ ଅନୁଷ୍ଠାନ ଆବଶ୍ୟକ ବୋଲି କେହି କେହି କଳ୍ପନାଚକ୍ଷୁରେ ଦେଖୁଥିଲେ, ଗଞ୍ଜାମ ଜାତୀୟ ସମିତିରେ ସେହି କଳ୍ପନାପିତୁଳାଟି ସତକୁସତ ନାଚିବାର ଆଶା ଉଙ୍ଗ ଉଠିଲା । ଏହି ଜାତୀୟ ଅନୁଷ୍ଠାନର କିଛିଦିନ ପୂର୍ବରୁ ସମଗ୍ର ଉତ୍କଳୀୟମାନେ ଏକ ଶାସନ ଅଧୀନରେ ରହିବେ ବୋଲି ଗଞ୍ଜାମବାସିମାନେ ବଡ଼ଲାଟ ବାହାଦୁରଙ୍କ ନିକଟକୁ ଖଣ୍ଡିଏ ନିବେଦନପତ୍ର ପଠାଇଥିଲେ । ସମଗ୍ର ଉତ୍କଳୀୟଙ୍କ ସଙ୍ଗେ ଯେଉଁପରି ହେଉ ମିଳିତ ହେବା ଗଞ୍ଜାମ ଓଡ଼ିଆମାନଙ୍କର ଏକ ଧ୍ୟାନ ରହିଲା । କେବଳ ତାହା ନୁହେଁ, ଗଞ୍ଜାମ ଅଞ୍ଚଳର ପ୍ରଧାନ ପ୍ରଧାନ ରାଜାମାନେ ଆନନ୍ଦ ସହିତ ଏ ଆବେଦନରେ ଯୋଗଦେଲେ । ଆଜି ଯେଉଁ ଜାତୀୟଭାବ ଉତ୍କଳରେ ଦେଖା ଦେଇଅଛି, ସେଥି ନିମନ୍ତେ ଆମ୍ଭେମାନେ ସମ୍ବଲପୁର ଓ ଗଞ୍ଜାମବାସୀ ଭାଇମାନଙ୍କଠାରେ ଅନେକପରିମାଣରେ ଋଣୀ ।

ଯାହା ହେଉ ସର୍ବତ୍ର ଉତ୍କଳୀୟମାନେ କିପରି ଏକାଠେଇଁ ହେବେ ଏହି ଧ୍ୟାନରେ ଉତ୍କଳୀୟମାନେ ମନ ପ୍ରାଣ ଢାଳିଦେଲେ । ବର୍ତ୍ତମାନ ମଧ୍ୟ ସମସ୍ତେ ଏକାଠେଇଁ ହେବାର ବାଞ୍ଛା ପ୍ରତ୍ୟେକ ଉତ୍କଳୀୟଙ୍କ ମନରେ ଉଦୟ ହୋଇଅଛି ।

ପ୍ରଥମେ ଦେଖିବାର ଉଚିତ ଯେ କି କି ଉପାୟ କଲେ ଆମ୍ଭେମାନେ ଉନ୍ନତି କରିବା ଏବଂ କେଉଁଠାରୁ ଆରମ୍ଭ କଲେ ଓ କାହାକୁ ଧଇଲେ ଏ କାର୍ଯ୍ୟ ସିଦ୍ଧହେବ । ପ୍ରଥମେ ବୁଝିବାର ଉଚିତ ଯେ ଚାଷୀ ଓ କାରିଗରମାନେ ଦେଶର ମୂଳଦୁଆ । ସେହିମାନଙ୍କର ପରିଶ୍ରମରୁ ଭୂମି ଆବାଦ ହେଉଅଛି, ସେହିମାନଙ୍କ ପରିଶ୍ରମରେ ରାଜା କର

ପାଉଅଛନ୍ତି, ସେହିମାନେ ଏକା ଦେଶର ବଡ଼ଲୋକମାନଙ୍କୁ ପୋଷୁଅଛନ୍ତି, ସେମାନେ ଦେଶର ଧନ ଉତ୍ପନ୍ନ କରୁଅଛନ୍ତି ଓ ବଡ଼ଲୋକମାନେ ଘରେ ବସି ସେହି ଧନ ଭୋଗ କରୁଅଛନ୍ତି । ସେମାନେ କିପରି ଆପଣା କାର୍ଯ୍ୟରେ ଶିକ୍ଷିତ ହୋଇ ଦିନକୁଦିନ ଉନ୍ନତି କରିବେ ଏହା ବିଚାର କରିବା ପ୍ରଥମେ ଆବଶ୍ୟକ । ସେମାନେ ଜାତିର ହାତ ଗୋଡ଼ ପିଠି ସ୍ୱରୂପ । ହାତ ଗୋଡ଼ କାମ କରନ୍ତି, ପିଠି ବୋଝ ବୁହେ, କିନ୍ତୁ ପେଟ ବସି ଖାଉଥାଏ । ପେଟ ଯେ ଏତକ ସୁଖ ଭୋଗ କରେ ତାହା କେବଳ ହାତଗୋଡ଼ଙ୍କ କାର୍ଯ୍ୟ ଓ ପରିଶ୍ରମ ଯୋଗୁ ସିନା । ହାତ ଗୋଡ଼ ଉପରେ ସବୁ କାମ । ସେମାନେ ସୁସ୍ଥ ନ ରହିଲେ ସମୁଦାୟ ଶରୀର ଭଲ ରହିବ ନାହିଁ ଓ ପେଟ ଭୋକରେ ମରିବ । ଶେଷରେ ସମୁଦାୟ ଦେହଟି କଣ୍ଟା ହୋଇଯିବ । ଏହି ନ୍ୟାୟରେ ବିଚାର କରିବାକୁ ଗଲେ ଯେଉଁମାନେ ଉନ୍ନତି କଲେ ଜାତୀୟ ଧନ ବଢ଼ିବ ସେହିମାନଙ୍କୁ ସର୍ବପ୍ରଥମେ ଉପରକୁ ଉଠାଇବାର ଦରକାର । ଚାଷିମାନଙ୍କୁ ଓ କାରିଗରମାନଙ୍କୁ ଧନଲାଭର ଭଲ ଭଲ ଉପାୟମାନ ଶିଖାଇବାକୁ ହେବ, କିପରି ଉପାୟରେ ଚାଷ କଲେ ଭୂମିର ଉତ୍ପନ୍ନରେ ବେଶି ଲାଭ ହେବ, କେଉଁ ଚାଷ କଲେ ବେଶି ପଇସା ଆମଦାନି ହେବ, ଦେଶ, କାଳ, ପାତ୍ର ଚାହିଁ ଏ ସବୁ ବିଷୟ ଚାଷିମାନଙ୍କୁ ଶିଖାଇବାକୁ ହେବ । ଆଜିକାଲି ଦେଶୀୟ କାରିଗରମାନେ ଦିନକୁ ଦିନ ହୀନଅବସ୍ଥା ଲଭୁଅଛନ୍ତି ଏହାର କାରଣ ଏହି ଯେ ସେମାନେ ବିଲାତି କାରିଗରମାନଙ୍କ ସଙ୍ଗେ ପଟ ପକାଇ ପାରୁନାହାନ୍ତି; ପଟ ନ ପକାଇ ପାରିବାର ଅନେକ କାରଣ ଅଛି । ସେ କାରଣଗୁଡ଼ିକ ଶିକ୍ଷା କରି କାରିଗରମାନଙ୍କୁ ବତାଇବାକୁ ହେବ ଓ ଧନ ଲାଭ ହେବାର ନୂତନ ବାଟମାନ ସେମାନଙ୍କୁ ଶିଖାଇବାକୁ ହେବ ।

ବେପାର ବଣିଜର କିପରି ଉନ୍ନତି ହେବ ତାହା ମଧ୍ୟ ଭାବି ସ୍ଥିର କରିବାକୁ ହେବ । ''ବାଣିଜ୍ୟେ ବସତେ ଲକ୍ଷ୍ମୀଃ''; ବାଣିଜ୍ୟଦ୍ୱାରା ବିଦେଶରୁ ଧନ ଆପଣା ଦେଶକୁ ଆସିପାରେ । ଆଜି ଆମ୍ଭମାନଙ୍କ ଦେଶକୁ ବିଦେଶରୁ ଆସୁଥିବା ଜିନିଷ ବେଶି ହେବାରୁ ଦେଶରୁ ଦିନକୁଦିନ ଧନ କ୍ଷୟ ହେଉଅଛି । ଯେବେ ଆମ୍ଭ ଦେଶରୁ ବିଦେଶକୁ ବେଶି ଜିନିଷ ରପ୍ତାନି ହେବ ତାହାହେଲେ ଦିନକୁ ଦିନ ଆମ ଦେଶ ଧନୀ ହେବ । କି କି ଜିନିଷ ଆମ ଦେଶରୁ ବହୁତ ପରିମାଣରେ ଯାଇ ବିଦେଶରେ ଦାମ ଉଠି ଲାଭ ହେବ ତାହା ଭାବି ଚିନ୍ତି ସ୍ଥିର କରିବାକୁ ହେବ ଓ ସେହି ଅନୁସାରେ ବେପାରିମାନଙ୍କୁ ଶିଖାଇ କାମରେ ଲଗାଇବାକୁ ହେବ ।

ତାପରେ ସାହିତ୍ୟର କିପରି ଉନ୍ନତି ହେବ; ତାହା ଚିନ୍ତା କରିବାକୁ ହେବ । ସାହିତ୍ୟର ଉନ୍ନତି ନ ହେଲେ ଜାତିର ଉନ୍ନତି ହେବାର ବଡ଼ କଷ୍ଟ । କାରଣ ଚାଷୀ, କାରିଗର ଓ ବେପାରିମାନଙ୍କୁ ଶିକ୍ଷା ଦେବା ନିମନ୍ତେ ଓଡ଼ିଆଭାଷା ଦରକାର । ବର୍ତ୍ତମାନର ସଭ୍ୟତା ଓ ବିଦ୍ୟା ଅନୁସାରେ ସେମାନଙ୍କ ମନରେ ନୂଆ ନୂଆ ଭାବମାନ ପୂରାଇବାକୁ ହେବ,

ସେଥିପାଇଁ ଇଉରୋପ ଓ ବିଲାତର ଭଲ ଭଲ ନିପୁଣ ଲୋକମାନଙ୍କର ବହି ପଢ଼ି, ତାକୁ ଓଡ଼ିଆ ଭାଷାରେ ବୁଝାଯିବା ଭଳି ତର୍ଜମା କରି ଅଧାପାଠୁଆ ଓ ମୂର୍ଖ ଲୋକଙ୍କୁ ଉତ୍ତମରୂପେ ସମୁଜାଇବାକୁ ହେବ । ଏଥି ନିମନ୍ତେ ଭାଷାର ଉନ୍ନତି କରିବାର ଦରକାର; ସାହିତ୍ୟ ଉନ୍ନତି ନ ହେଲେ ଆମ୍ଭେମାନେ ଉନ୍ନତି କରିପାରିବୁଁ ନାହିଁ । ଏଥିର ଆହୁରି ମଧ୍ୟ ଅନେକ କାରଣ ଅଛି । ସେଗୁଡ଼ିକ ଏଠାରେ ବୁଝାଇବାର ଦରକାର ନାହିଁ ।

ତା'ପରେ ସମାଜର ଉନ୍ନତି କରିବା ବେଶି ଆବଶ୍ୟକ । ଇଂରାଜିସଭ୍ୟତାରେ ସବୁ ସମାଜ କ୍ରମେ କ୍ରମେ ଉନ୍ନତି କରୁଅଛି । ଆମ୍ଭମାନଙ୍କର ନିଜ ନିଜ ସମାଜର ଯେଉଁ ଦୋଷ ଅଛି ସେଗୁଡ଼ିକ ଅଲଗା କରିଦେବାକୁ ହେବ ଓ ବର୍ତ୍ତମାନ ଦେଶ କାଳ ପାତ୍ରକୁ ବିଚାରି ଯେଉଁ ଯେଉଁ ବାଟ ଫିଟାଇବାର ଦରକାର ସେଗୁଡ଼ିକ କରିବାକୁ ହେବ ।

ଯେଉଁ ଦେଶରେ ପଢ଼ାଶୁଣା କରିବା ଲୋକଙ୍କ ସଂଖ୍ୟା ଯେତିକି ବେଶି ସେ ଦେଶ ସେତିକି ଉନ୍ନତି କରିବ ଏଥିରେ ସନ୍ଦେହ ନାହିଁ । ପଢ଼ା ଶୁଣା ନ କରି ଆଜି ଓଡ଼ିଆ ପୁଏ ଭାରୀ ହୀନ ଅବସ୍ଥାରେ ଅଛନ୍ତି । ଯେପରି ଉପାୟ କଲେ ଓଡ଼ିଆମାନେ ବେଶି ପଢ଼ାଶୁଣା କରି, ନାନାଦି ଉପାୟରେ ଆପଣା ଦେଶର ମଙ୍ଗଳ କରିବେ ତାହା ବିଚାର କରି କାମ କରିବାକୁ ହେବ ।

ଆମ୍ଭମାନଙ୍କର ଏହି ସମ୍ମିଳନୀ କି କି ମତଲବରେ ପ୍ରତିଷ୍ଠା ହୋଇଅଛି ସେଥିରୁ କେତେଗୋଟି କଥା ଏଥିରେ ଲେଖାଗଲା ।

ଆଜିକାଲି ଆମ୍ଭେମାନେ ଇଂରାଜି ଶିକ୍ଷାଲାଭ କରି ଗୋଟିଏ ଦୋଷରେ ଦୋଷୀ ହୋଇଅଛୁଁ । ସାଧାରଣରେ ଦେଖାଯାଏ ଯେ ଯେଉଁମାନେ ଇଂରାଜିପାଠ ପଢ଼ି ବେଶି ଶିକ୍ଷିତ ହେଉଅଛନ୍ତି ସେମାନେ ସାଧାରଣ ଲୋକଙ୍କ ସଙ୍ଗେ ମିଶିବାକୁ ଇଚ୍ଛା କରନ୍ତିନାହିଁ । ମଧ୍ୟ ସାଧାରଣ ଲୋକେ ସେମାନଙ୍କ ପାଖ ମାଡ଼ିବାକୁ ଡରନ୍ତି । କିନ୍ତୁ ଏ ଭାବଟା ଯେତେ ଶୀଘ୍ର ଉଚ୍ଚପାଠୁଆଙ୍କ ମନରୁ ଦୂର ହୁଏ ସେତିକି ଦେଶର ମଙ୍ଗଳ । କାରଣ ଦେଶର କୌଣସି କାର୍ଯ୍ୟରେ ଛୋଟଠାରୁ ବଡ଼ ସମସ୍ତେ ନ ମିଶିଲେ ସେ କାର୍ଯ୍ୟ କେବେହେଁ ସିଦ୍ଧ ହେବ ନାହିଁ । ଉଚ୍ଚପାଠୁଆମାନେ ଦେଶର ଲୋକମାନଙ୍କୁ ଶିଖାଇ ବୁଝାଇ ବାଟରେ ଆଣିବାକୁ ଚେଷ୍ଟା କରିବେ ଓ ସାଧାରଣ ଲୋକେ ନିଜ ନିଜର ଅଭାବଯାକ ସେମାନଙ୍କୁ ନିର୍ଭୟ ହୋଇ ଜଣାଇବେ ଏବଂ ଦୁହେଁ ମିଳି ମିଶି କାର୍ଯ୍ୟ କରିବେ ତାହେଲେ ଦେଶର ଭବିଷ୍ୟତ-ମଙ୍ଗଳର ମୂଳଦୂଆ ବନ୍ଧା ହେବ । ଶିକ୍ଷିତମାନଙ୍କର ଉଚିତ ଯେ ସେମାନେ ଉଚ୍ଚଶିକ୍ଷାର ଫଳକୁ ସହଜଭାବରେ ସାଧାରଣଙ୍କୁ ବୁଝାଇଦେବେ ଏବଂ ବିଦେଶୀ ଶିକ୍ଷାରେ ଯାହା ଯାହା ଭଲ ଗୁଣ ପାଇବେ ସେଗୁଡ଼ିକ ଗ୍ରହଣ କରି ମନ୍ଦଗୁଡ଼ିକ ଛାଡ଼ିବେ । ତାହାହେଲେ ଆମ୍ଭଦେଶରେ ଇଂରାଜିଶିକ୍ଷାର ସୁଫଳ ଫଳିବାର ଆରମ୍ଭ ହେବ । ଏହି ଉଦ୍ଦେଶ୍ୟରେ ଉତ୍କଳସମ୍ମିଳନୀ ସଙ୍ଗେ ଉତ୍କଳର ରାଜା

ମହାରାଜାଙ୍କଠାରୁ ଚାଷୀ ମୂଲିଆ ପର୍ଯ୍ୟନ୍ତ ସମସ୍ତଙ୍କର ସମ୍ବନ୍ଧ ରହିବ ବୋଲି ଆମ୍ଭେମାନେ ସମସ୍ତଙ୍କୁ ହାତଯୋଡ଼ି ପ୍ରାର୍ଥନା କରୁଅଛୁଁ । ଏଥିନିମନ୍ତେ ଉତ୍କଳର ମହାରାଜା, ରାଜା, ଜମିଦାରଙ୍କଠାରୁ ଆରମ୍ଭ କରି ଗ୍ରାମାଧିକାରୀ, କରଣ, କାର୍ଯୀ, ପ୍ରଧାନ, ମକଦ୍ଦମ ସମସ୍ତଙ୍କୁ ପ୍ରାର୍ଥନା ଏହି କି ଯେ ପ୍ରତି ଗ୍ରାମ ସଙ୍ଗରେ ଏ ସମ୍ମିଳନୀର ସମ୍ପର୍କ ରଖିବାକୁ ସେମାନେ ଚେଷ୍ଟା କରିବେ ଓ ଯେପରି ଉତ୍କଳର ପ୍ରତ୍ୟେକ ଅଞ୍ଚଳର ପ୍ରକୃତ ପ୍ରତିନିଧି ଓ ମୁଖିଆମାନେ ଏ ସମ୍ମିଳନୀରେ ଯୋଗ ଦିଅନ୍ତି ଓ ଏ ସମ୍ମିଳନୀ ନାମ ମାତ୍ର କେବଳ ''ଉତ୍କଳ-ସମ୍ମିଳନୀ'' ନ ହୋଇ କାର୍ଯ୍ୟରେ ''ଉତ୍କଳ-ସମ୍ମିଳନୀ'' ହୋଇ ସମସ୍ତ ଉତ୍କଳ ଜାତିର ପ୍ରତିନିଧି ସ୍ୱରୂପ ଦାଣ୍ଡରେ ଠିଆ ହେବ ଏହା ପ୍ରତ୍ୟେକ ଉତ୍କଳୀୟଙ୍କ ମନରେ ଉଦୟ ହେବା ଉଚିତ । ପ୍ରତି ସବ୍‌ଡିଭିଜନରେ ଗୋଟିଏ ଗୋଟିଏ ସଭା ହେଉ, ଏହି ସଭାଗୁଡ଼ିକ ଶାଖା ସଭା ସ୍ୱରୂପ ହେଉ । ପ୍ରତି ଜିଲାରେ ଗୋଟିଏ ଗୋଟିଏ ସଭା ହେଉ । ପ୍ରତି ପ୍ରଗନାରୁ ଜଣେ, ଦୁଇଜଣ, ପାଞ୍ଚଜଣ ଲେଖାଏଁ ମୁଖ୍ୟଲୋକ ବଛା ହୋଇ ସବ୍‌ଡିଭିଜନ ସଭାକୁ ପଠାଯାଆନ୍ତୁ । ପ୍ରତି ସବ୍‌ଡିଭିଜନ ସଭାରୁ କେତେଜଣ ମୁଖ୍ୟଲୋକ ବାଛି ଜିଲା ସଭାକୁ ପଠାଯାଉ ଓ ପ୍ରତି ଜିଲା ସଭାରୁ ଜଣକେତେ ଲେଖାଏଁ ପ୍ରତିନିଧି ସମ୍ମିଳନୀ ସଭାକୁ ପଠାଯାଆନ୍ତୁ । ଏହିପରି ନିୟମରେ କାର୍ଯ୍ୟ କଲେ ସମ୍ମିଳନୀରେ ଦେଶର ମଙ୍ଗଳ ପାଇଁ ଯେଉଁ କାର୍ଯ୍ୟ କରିବାର ସ୍ଥିର ହେବ ତାହା ପାହାଚକୁ ପାହାଚ ଖସି ଶେଷରେ ପ୍ରତି ଗ୍ରାମର ଅଧିକାରୀ ନିକଟରେ ପହଞ୍ଚୁ ଓ ଗ୍ରାମାଧିକାରିମାନଙ୍କ ଦ୍ୱାରା ତାହା କାର୍ଯ୍ୟରେ ପରିଣତ କରାଯାଉ । ପ୍ରତ୍ୟେକ ଜିଲାରେ ଗୋଟିଏ ଗୋଟିଏ କେନ୍ଦ୍ରସଭା ବସୁ । ଏହିପରି କଲେ ଏ ସମ୍ମିଳନୀ ଜାତୀୟ ସଭା ହେବ ଓ ଏ ଉପାୟରେ ଦିନକୁଦିନ ଉତ୍କଳଜାତିର ଉନ୍ନତି ହେବ । ଏଥିରେ ଶିକ୍ଷିତମାନେ ମନ ପ୍ରାଣ ଢାଳି କାର୍ଯ୍ୟ କରି ଦେଶର ଅନ୍ୟାନ୍ୟ ଲୋକମାନଙ୍କ ସଙ୍ଗେ ସମ୍ପର୍କ ଓ ବନ୍ଧୁତା ରଖି, ବଡ଼ ବଡ଼ ଭାଇମାନେ ସାନ ସାନ ଭାଇମାନଙ୍କୁ ଉନ୍ନତିଆଡ଼କୁ ଆଣିବାକୁ ଚେଷ୍ଟା କରିବେ । ଯାହାଙ୍କଠାରେ ଧନ ଅଛି ସେ ଧନ ଦେଇ ଏହି ଜାତୀୟ କାର୍ଯ୍ୟରେ ଯୋଗ ଦିଅନ୍ତୁ । ଯାହାଙ୍କଠାରେ ଶକ୍ତି ଅଛି ସେ ଶକ୍ତି ଖରଚ କରନ୍ତୁ । ଯାହାଙ୍କ ହାତରେ କାଗଜ କଲମ ଅଛି ସେ କାଗଜ କଲମ ଧରନ୍ତୁ । ଯାହାଙ୍କଠାରେ ଯେଉଁ ସୁବିଧା ଅଛି ସେ ତାହା ବ୍ୟୟ କରନ୍ତୁ ଓ ଏହି ଚେଷ୍ଟାରେ ଭଗବାନ୍ ଆମ୍ଭମାନଙ୍କର ଭରସା ହେବେ ଏଥିରେ ସନ୍ଦେହ ନାହିଁ । ବଣରେ କାଠ ମିଳେ, ବିଲରେ ଛଣ ମିଳେ, ବୁଦାରେ ବେତ ମିଳେ, ଗାଁରେ ମୂଲିଆ ମିଳନ୍ତି, ଏ ସମସ୍ତଙ୍କୁ ଏକସ୍ଥାନକୁ ଆଣି ଉପସ୍ଥିତ କରାଇପାରିଲେ ଘରଖଣ୍ଡିକ ତିଆରି ହେବ । ଯେଉଁଠାରେ ଯାହା ପଡ଼ିଛି ସେଠାରୁ ସେଗୁଡ଼ିକ ଗୋଟାଇ ଆଣି ଏକସ୍ଥାନରେ ରଖି ବଳ ଖରଚ କଲେ ସେ ବଳରେ ଅସାଧ

ସାଧ୍ୟ ହେବ ଓ ଉତ୍କଳ ଜାତି ଦିନକୁଦିନ ଉନ୍ନତି କରି ଉତ୍କଳରେ ଯୁଗାନ୍ତର ଉପସ୍ଥିତ କରାଇବ । ଯଦି ଇଂରାଜି ଶିକ୍ଷା ତୁମ୍ଭମାନଙ୍କୁ କିଛି ସାର କଥା ଶିଖାଇ ଥାଏ ତେବେ ତାହା ଏହି : ସାଧାରଣ ଲୋକେ ଦେଶର ମୂଳଧନ । ଯେଉଁ ପର୍ଯ୍ୟନ୍ତ କୌଣସି ଉଦ୍ୟମରେ ସେମାନେ ଯୋଗ ନ ଦେବେ ସେ ପର୍ଯ୍ୟନ୍ତ ଦେଶର ଉନ୍ନତି ପୂର୍ଣ୍ଣ ହୋଇପାରିବ ନାହିଁ ।

ଯେଉଁ ଉତ୍କଳ ଦେଶର କୀର୍ତ୍ତି ଆଗେ ବର୍ଣ୍ଣନା କରାଯାଇଅଛି, ଯେଉଁ ଉତ୍କଳୀୟମାନଙ୍କର ପୂର୍ବକଥା ଭାବିଲେ ଆଜିକାଲିର ସଭ୍ୟତା ସଙ୍ଗେ ତୁଳିବାକୁ ମନ ବଳେ, ଯେଉଁ ଉତ୍କଳ କେତେ ଦୁରବସ୍ଥାରେ ପଡ଼ି ସୁଦ୍ଧା ଆଜିକାଲି ବିଲାତର ମହାପଣ୍ଡିତମାନଙ୍କ ମନକୁ ମୋହିତ କରୁଅଛି, ତୁମ୍ଭେମାନେ ସେହି ଉତ୍କଳର ସନ୍ତାନ, ସେହି ଉତ୍କଳ ଆମ୍ଭମାନଙ୍କର ମାତୃଭୂମି । ମାତୃକୋଳରେ ଥିଲାବେଳେ ବଡ଼ ସାନ ସମସ୍ତେ ସମାନ ଦିଶନ୍ତି, ଅତଏବ ଉଚ୍ଚପଦର ଗର୍ବ ଓ ନିମ୍ନପଦର ଭୟ ଛାଡ଼ି ଚାଲ ସମସ୍ତେ ଯେଝା ପାରୁପର୍ଯ୍ୟନ୍ତ କାମରେ ଲାଗିବା । ଏ ବିଷୟରେ ଈଶ୍ୱର ଆମ୍ଭମାନଙ୍କର ସହାୟ ହେବେ, ସରକାର ବାହାଦୁର ଆମ୍ଭମାନଙ୍କୁ ସାହାଯ୍ୟ କରିବେ, ସଭ୍ୟ ଜଗତର ଲୋକେ ଆମ୍ଭମାନଙ୍କୁ ବଳ ଦେବେ, ଏଥିରେ ଆଦୌ ସନ୍ଦେହ ନାହିଁ ।

***

୩

## ସମ୍ମିଳନୀର ପ୍ରଥମ ଅଧିବେଶନ ପୂର୍ବରୁ ଲେଫ୍‌ଟନାଣ୍ଟ ଗଭର୍ଣ୍ଣରଙ୍କ ନିକଟକୁ ପ୍ରେରିତ ତାରବାର୍ତ୍ତା (ଓଡ଼ିଆରେ ଅନୂଦିତ)

ଏଠାରେ ଜନରବ ଉଠିଅଛି ଯେ କିରାନି ପର୍ଯ୍ୟନ୍ତ ସମସ୍ତ ସରକାରୀ କର୍ମଚାରୀଙ୍କୁ ସମ୍ମିଳନୀ ଏବଂ ପ୍ରଦର୍ଶନୀରେ ଉପସ୍ଥିତ ହେବାକୁ ଗଭର୍ଣ୍ଣମେଣ୍ଟ ନିଷେଧ କରିଅଛନ୍ତି । ଗତ କାଲିଠାରୁ କେତେକ ସରକାରୀ କର୍ମଚାରୀ ସଭାରେ ଉପସ୍ଥିତ ହୋଇ ନ ପାରିବେ ବୋଲି ଦୁଃଖ ପ୍ରକାଶ କରି ଆମ୍ଭ ନିକଟକୁ ପତ୍ର ଲେଖିଅଛନ୍ତି । ଆହୁରି ମଧ୍ୟ ଜନରବ ଉଠିଅଛି ଯେ ରାଜାମାନଙ୍କୁ ଏ ସଭାରେ ଯୋଗଦେବା ନିମନ୍ତେ ଗଭର୍ଣ୍ଣମେଣ୍ଟ ନିଷେଧ କରିଅଛନ୍ତି । ଏହି ଜନରବ ଦ୍ୱାରା ସାଧାରଣଙ୍କ ମନ ଉତ୍ତେଜିତ ଏବଂ ନୈରାଶ୍ୟଜଡ଼ିତ ହୋଇଅଛି । ଏ ପ୍ରକାର ଜାତୀୟ ଆନ୍ଦୋଳନରେ ଗଭର୍ଣ୍ଣମେଣ୍ଟ ହସ୍ତକ୍ଷେପ କରିବେ ନାହିଁ, ଏହି ଆଶାରେ ଆଗନ୍ତୁକମାନଙ୍କ ଚର୍ଚ୍ଚା ନିମନ୍ତେ ବ୍ୟୟସାଧ୍ୟ ବନ୍ଦୋବସ୍ତମାନ

କରା ଯାଇଅଛି । ଓଡ଼ିଆମାନେ ଅନୁନ୍ନତ ଜାତି; ସେମାନଙ୍କ ମଧ୍ୟରୁ ଅଧିକାଂଶ ସରକାରୀ ଚାକର । ଯଦିଚ ସାମାନ୍ୟ କିରାନୀ ଓ ସ୍କୁଲ୍‌ଶିକ୍ଷକ ଆତ୍ମନିର୍ଭର ପ୍ରଣାଳୀରେ ଆପଣାର ଉନ୍ନତି କରିବା ପାଇଁ ସମ୍ମିଳନୀରେ ଯୋଗଦେବାକୁ ନିଷିଦ୍ଧ ହୁଅନ୍ତି, ତାହାହେଲେ ଆତ୍ମନିର୍ଭର ପ୍ରଣାଳୀ ମୂଳରେ କୁଠାରାଘାତ ହେବ ଏବଂ ଆପଣାର ଅବସ୍ଥା ଉନ୍ନତି କରିବା ବିଷୟରେ ଗଭର୍ଣ୍ଣମେଣ୍ଟ ବାଧା ଦେଉଅଛନ୍ତି ବୋଲି ମଣି ଓଡ଼ିଆମାନେ ଅସନ୍ତୁଷ୍ଟ ଓ ବିରକ୍ତ ହେବେ । ଗଭର୍ଣ୍ଣମେଣ୍ଟଙ୍କର ଏପରି ନିଷେଧକୁ ସାଧାରଣ ଲୋକେ ମନ୍ଦ ଅଭିପ୍ରାୟ ପ୍ରକାଶକ ବୋଲି ଅର୍ଥ କରୁଅଛନ୍ତି । ଏ ବିଷୟରେ ପୁନର୍ବିଚାର କରିବା ନିମନ୍ତେ ଛୋଟ ଲାଟ ବାହାଦୁରଙ୍କୁ ପ୍ରାର୍ଥନା କରୁଅଛୁଁ । ରାଜନୈତିକ କଂଗ୍ରେସ ସଂଲଗ୍ନ ପ୍ରଦର୍ଶନୀକୁ ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟ ସାହାଯ୍ୟ କରୁଅଛନ୍ତି । ଯେଉଁ ସମ୍ମିଳନୀ ସଙ୍ଗେ ରାଜନୀତିର ସମ୍ପର୍କ ନାହିଁ, ଏପରି ସମ୍ମିଳନୀରେ ବୋମ୍ବାଇଠାରେ ହାଇକୋର୍ଟ ଜଜ ଏବଂ ଗଭର୍ଣ୍ଣମେଣ୍ଟଙ୍କ ସେକ୍ରେଟରୀ ସଭାପତି ହୋଇଅଛନ୍ତି । ଓଡ଼ିଆମାନେ ଗଭର୍ଣ୍ଣମେଣ୍ଟଙ୍କ ନିକଟରେ ଅବିଶ୍ୱାସଜନକ ଏପରି କିଛି କାର୍ଯ୍ୟ କରିନାହାନ୍ତି କି ତହିଁରେ ଗଭର୍ଣ୍ଣମେଣ୍ଟଙ୍କର ଓଡ଼ିଆଙ୍କ ପ୍ରତି ବିଶ୍ୱାସ ଉଠି ଯାଇଅଛି ।

ସମ୍ମିଳନୀର ପ୍ରସ୍ତାବମାନ ଏହି :

୧ - ଉତ୍କଳଭାଷୀ ଅଞ୍ଚଳମାନଙ୍କୁ ଏକ ଶାସନାଧୀନରେ ରଖିବାଯୋଗୁଁ ବଡ଼ଲାଟଙ୍କୁ ଧନ୍ୟବାଦ ।

୨ - ସମ୍ବଲପୁରରେ ଓଡ଼ିଆଭାଷା ପୁନଃ ପ୍ରଚଳନ କରାଇବା ଯୋଗୁଁ ଛୋଟଲାଟଙ୍କୁ ଧନ୍ୟବାଦ ।

୩ - ଅନ୍ୟାନ୍ୟ ଜାତିମାନଙ୍କ ସଙ୍ଗେ ଉତ୍କଳୀୟମାନଙ୍କର ଭ୍ରାତୃଭାବ ସମ୍ବର୍ଦ୍ଧନ ।

୪ - ଆବଶ୍ୟକୀୟ ସାମାଜିକ ସଂସ୍କାର ନିମନ୍ତେ ସ୍ଥାୟୀ କମିଟି ଗଠନ ।

୫ - ଓଡ଼ିଆ ସାହିତ୍ୟର ଉନ୍ନତି ନିମନ୍ତେ କମିଟି ଗଠନ ।

୬ - ଦେଶୀୟ ଶିଳ୍ପର ଉନ୍ନତି ଏବଂ ବାର୍ଷିକ ପ୍ରଦର୍ଶନୀର ବ୍ୟବସ୍ଥା ।

୭ - ବାଳକମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ସୁଚାଳିତ ଉପାୟ ନିର୍ଦ୍ଧାରଣ ।

ଯେଉଁମାନଙ୍କ ଯୋଗୁଁ ସମ୍ମିଳନୀ ସୁଫଳ ହେବ ଅନ୍ୟାନ୍ୟ ପ୍ରସ୍ତାବମାନଙ୍କରେ ସେହିମାନଙ୍କୁ ଧନ୍ୟବାଦ ଦିଆଯାଇଅଛି ।

***

## ୪

## ପ୍ରଥମ ଅଧିବେଶନ : ତୃତୀୟ ପ୍ରସ୍ତାବକୁ ସମର୍ଥନ କରି ପ୍ରଦତ୍ତ ଭାଷଣ

ସ୍ଥିର ସମୁଦ୍ରରେ ଚନ୍ଦ୍ରର ଗୋଟିଏ ପ୍ରତିବିମ୍ବ ଦେଖାଯାଏ ମାତ୍ର ତରଙ୍ଗ ଉଠିଲେ ଶତଶତ ପ୍ରତିବିମ୍ବ ଦେଖାଯାଏ । ଆଜି ଭାଇମାନଙ୍କୁ ଦେଖି ମୋହର ହୃଦୟରେ ପ୍ରେମତରଙ୍ଗ ଉଠିବାରୁ ମୁଁ ଭାଇମାନଙ୍କୁ ଦେଖି ସେହିପରି ଆନନ୍ଦିତ ହେଉଛି । ଧାତୁ ଅଗ୍ନି ସାହାଯ୍ୟରେ ତରଳି ଯାଇଥାଏ ଏବଂ ହିନ୍ଦୁଙ୍କର ବିଶ୍ୱାସ ଯେ ଅଷ୍ଟଧାତୁ ଏକତ୍ରେ ମିଶି ଏମନ୍ତ ଏକ ଧାତୁମୟ ପଦାର୍ଥ ଉତ୍ପନ୍ନ ହୁଏ ଯାହା କି ଅନେକ ମହତ କାର୍ଯ୍ୟ ସାଧନ କରିଥାଏ । ଅତଏବ ଏହି ଭ୍ରାତୃପ୍ରେମ ଦ୍ୱାରା ଆମ୍ଭେମାନେ ଏପରି ଭାବରେ ଦ୍ରବୀଭୂତ ହେବୁଁ ଯେ ଏହି ନବଗଠିତ ଉତ୍କଳଖଣ୍ଡ ଅନେକ ଶୁଭ କାର୍ଯ୍ୟ ସମ୍ପାଦନ କରିପାରିବ । ଇତିହାସକୁ ଅବଲୋକନ କଲେ ଜଣାଯାଏ ଯେ ନାନାସ୍ଥାନର ଲୋକେ ଇଂଲଣ୍ଡକୁ ଆସି ଏକତ୍ରେ ବାସ ଏବଂ ମିଶ୍ରଣଦ୍ୱାରା ଇଂରାଜ ଜାତି ହୋଇଅଛି ଏବଂ ଏହି ଜାତି କିପରି ମହତ୍ କାର୍ଯ୍ୟମାନ ସାଧନ କରୁଅଛନ୍ତି ଏହା ବୋଲିବା ବାହୁଲ୍ୟ । ଆମ୍ଭମାନଙ୍କର ମାତୃଭୂମି ସକାଶେ ସେହିପରି ମିଶିବା ଆବଶ୍ୟକ । ଭାଇମାନଙ୍କ ମଧ୍ୟରୁ ଯଦି କେହି ମାତୃବିୟୋଗ ଦୁଃଖ ଭୋଗ କରିଥାନ୍ତି, ତେବେ ମାତୃବିୟୋଗ ରୂପ ଦାରୁଣ କ୍ଳେଶ ସେ ଅବଶ୍ୟ ବୁଝି ପାରୁଥିବେ । ବର୍ତ୍ତମାନ ଉତ୍କଳ ଜନନୀର ଦୁଃଖ ଦେଖି ଆମ୍ଭମାନଙ୍କ ମନରେ ତତୋଽଧିକ ଗଭୀର ଦୁଃଖ ହେବା ଅବଶ୍ୟଂଭାବି । କିପରି ଜନନୀର ଦୁଃଖ ମୋଚନ ହେବ ଦିବାରାତି ଆମ୍ଭମାନଙ୍କର ଏହା ଭାବିବା ଉଚିତ । ଅନ୍ୟାନ୍ୟ ଉନ୍ନତ ଜାତିମାନଙ୍କ ସଙ୍ଗେ ତୁଳନା କରିବାକୁ ଗଲେ ଉତ୍କଳର ଅବସ୍ଥା ଅତ୍ୟନ୍ତ ଶୋଚନୀୟ । ଏହି ଅବସ୍ଥା ଦୂର କରିବା ନିମନ୍ତେ ଆମ୍ଭମାନଙ୍କର ଉନ୍ନତ ଜାତିମାନଙ୍କ ସଙ୍ଗେ ଭାଇ ଭାବ ରଖିବା ଆବଶ୍ୟକ, ଭ୍ରାତୃ ଚକ୍ଷୁରେ ନ ଦେଖିଲେ ଉନ୍ନତ ଜାତିଙ୍କ ସଙ୍ଗେ ସମକକ୍ଷ ହେବା କାଠିକର ପାଠ ।

ମହାତ୍ମା ମହମ୍ମଦ କହିଅଛନ୍ତି ଯେ ଯେତେବେଳେ ସେ ପିଲାଥିଲେ ସେ ସମୟରେ ଗୋଟିଏ ସ୍ୱର୍ଗଦୂତ ଆସି ତାହାଙ୍କ ଛାତିକୁ କାଟି ମେଲାକଲା ଓ ହୃଦୟର ପିଣ୍ଡଟି ବାହାରକରି ଆଣିଲା । ସେହି ପିଣ୍ଡରେ ଗୋଟିଏ କଳାଦାଗ ଥିଲା । ସ୍ୱର୍ଗୀୟ ଦୂତ ସେହି କଳାଦାଗଟି ଉଠାଇନେଇ ପିଣ୍ଡକୁ ପୁନର୍ବାର ଛାତିରେ ବସାଇ ଦେଲା । ସେହିପରି ଆମ୍ଭେମାନେ ସମସ୍ତେ ହୃଦୟରୁ କଳାଦାଗଟି ଉଠାଇଦେବାର ଉଚିତ । କଳାଦାଗଗୁଡ଼ିକ ଆଉ କିଛି ନୁହେ, ତାହା ଆମ୍ଭମାନଙ୍କର ଗର୍ବ ଓ ଅଭିମାନ । ଏଗୁଡ଼ିକୁ ହୃଦୟରୁ ବାହାର କରିଦେବାକୁ ପଡ଼ିବ । ବିଜ୍ଞାନର ସିଦ୍ଧାନ୍ତ ଏହି ଯେ ମନୁଷ୍ୟ ଦେହର ମାଂସ ଓ ହାଡ଼ର

କଣିକାଗୁଡ଼ିକ ସାତବରଷରେ ଥରେ ବଦଳିଯାଏ । ତଥାପି ଶରୀର ବଢୁଥାଏ । ସେହିପରି ତୁମ୍ଭେ ଆମ୍ଭେ ଉତ୍କଳୀୟ ଜାତିର ମାଂସ ଓ ଅସ୍ଥି-କଣିକା ମାତ୍ର । ଆଜି ତୁମ୍ଭେ ଓ ଆମ୍ଭେ ଅଛୁଁ, କାଲି ତୁମ୍ଭେ ଆମ୍ଭେ ଚାଲିଯିବା; ତଥାପି ମନୁଷ୍ୟ ଶରୀରପରି ଆମ୍ଭର ଜାତିଟି ଦିନକୁ ଦିନ ବଢୁଥିବ । ଜନନୀ ସେବାରେ ଆତ୍ମଗର୍ବ, ସ୍ୱାର୍ଥପରତା ତ୍ୟାଗ କରିବାକୁ ହେବ । ମୁଁ ବା ତୁମ୍ଭେମାନେ କାଲି ଇହସଂସାରରୁ ଚାଲିଯିବା, କିନ୍ତୁ ଜାତି ଅମର ଓ ଚିରଜୀବୀ । ସ୍ୱାର୍ଥତ୍ୟାଗ ଓ ପ୍ରେମ ଜାତୀୟ ଉନ୍ନତିର ପ୍ରଧାନ ସହାୟ ।

***

## ୫
## ଦ୍ୱିତୀୟ ଅଧିବେଶନ : ପ୍ରାରମ୍ଭିକ ବକ୍ତବ୍ୟ

ରେଭେନ୍‌ସା କଲେଜର ପ୍ରୋଫେସର ଶ୍ରୀ କୃଷ୍ଣପଦ ବିଦ୍ୟାରତ୍ନ ଗୋଟିଏ ଶ୍ଳୋକ ପାଠ କରିବାର ଇଚ୍ଛା ପ୍ରକାଶ କରିଅଛନ୍ତି । ସମୟ ନ ଥିବାରୁ କାର୍ଯ୍ୟନିର୍ବାହକ ସମିତିକୁ ନ ଡାକି ମୁଁ ନିଜର ଦାୟିତ୍ୱରେ ସେ ଶ୍ଳୋକ ପାଠ କରିବାର ପ୍ରସ୍ତାବ କରିଅଛି । ଆପଣମାନଙ୍କର ଅନୁମତି ପ୍ରାର୍ଥନା କରୁଅଛି ....

ଆପଣମାନେ ନିମନ୍ତ୍ରଣପତ୍ରରୁ ଦେଖିଥିବେ ଯେ କେଉଁଝରର ମହାରାଜା ଅଭ୍ୟର୍ଥନାସଭାର ସଭାପତି । ସେ ଶରୀର ଅସୁସ୍ଥତା ବିଷୟ ଲେଖି ସଭାରେ ଯୋଗଦାନ କରି ନ ପାରି ଦୁଃଖ ପ୍ରକାଶ କରିଅଛନ୍ତି । ଏଣୁକରି ତାଙ୍କର ଜ୍ୟେଷ୍ଠପୁତ୍ର ଟୀକାଏତ ବକ୍ତବ୍ୟ ପ୍ରକାଶ କରିବେ ।.....

ନିମ୍ନଲିଖିତ ମହାରାଜା, ରାଜା ଓ ଭଦ୍ରବ୍ୟକ୍ତିଗଣ ଏହି ସମ୍ମିଳନୀରେ ଯୋଗଦାନ କରି ନ ପାରି ଯେଉଁସବୁ ସହାନୁଭୂତି-ସୂଚକ ତାର ଓ ପତ୍ର ପଠାଇଅଛନ୍ତି ତାହା ପଢ଼ିବା ଉଚିତ ।

ମଧ୍ୟପ୍ରଦେଶ କୋରାର ରାଜାଠାକୁର–ଠାକୁର ଉଦ୍ୟତ ନାରାୟଣ ସିଂହଦେବ; ଶ୍ରୀଯୁକ୍ତ ଆନନ୍ଦପୁର ରାଜା; ଶ୍ରୀଯୁକ୍ତ କେଉଁଝର ମହାରାଜା; ଶ୍ରୀଯୁକ୍ତ ସୋନପୁର ରାଜା, ଶ୍ରୀଯୁକ୍ତ ବଡ଼ଖେମୁଣ୍ଡି ରାଜା, ଶ୍ରୀଯୁକ୍ତ ଖଡ଼ିଆଳ ରାଜା; ଶ୍ରୀଯୁକ୍ତ ଖଡ଼ିଆଳର ଯୁବରାଜ – 'ଉତ୍କଳ ଦୁର୍ଦ୍ଦଶା' ନାମକ ଖଣ୍ଡିଏ ପୁସ୍ତକ ବିତରଣ ନିମିତ୍ତ ପଠାଇ ଅଛନ୍ତି; ଶ୍ରୀଯୁକ୍ତ ଢେଙ୍କାନାଳର ରାଜା, ଶ୍ରୀଯୁକ୍ତ ଧଳଭୂମର ରାଜା, ଶ୍ରୀଯୁକ୍ତ ନରସିଂହପୁର ରାଜା, ଶ୍ରୀଯୁକ୍ତ ସୁରଙ୍ଗୀ ରାଜା, ଶ୍ରୀଯୁକ୍ତ ଖଣ୍ଡପଡ଼ା ରାଜା – ସେ ଟ୧୦ଙ୍କା ସମ୍ମିଳନୀର ଖରଚପାଇଁ ପଠାଇଅଛନ୍ତି; ଶ୍ରୀଯୁକ୍ତ ଆଳି ରାଜା; ଶ୍ରୀଯୁକ୍ତ ବରପାଲି ରାଜା; ଶ୍ରୀଯୁକ୍ତ

ବାଲିଆବେଢ଼ାର ପ୍ରହରାଜ; ପୁରୀର ମହନ୍ତ ରାଧାକାନ୍ତ ଦାସ – ସେ ଟ୨୦ଙ୍କା ପଠାଇଅଛନ୍ତି ।

କଲିକତାର ନିମ୍ନଲିଖିତ ସମ୍ବାଦପତ୍ରମାନଙ୍କର ସମ୍ପାଦକମାନଙ୍କୁ ନିମନ୍ତ୍ରଣ କରିଥିଲୁଁ । ଯଥା:- ଅମୃତବଜାର ପତ୍ରିକା ...

***

## ୬

## ଦ୍ୱିତୀୟ ଅଧିବେଶନ: ପଞ୍ଚମ ପ୍ରସ୍ତାବର ଆଲୋଚନାରେ ଅଂଶଗ୍ରହଣ କରି ପ୍ରଦତ୍ତ ଭାଷଣ

ସଭାପତି ମହାଶୟ ଓ ଭାଇମାନେ ! ସଭାପତି ମହୋଦୟ ଆପଣାର ବକ୍ତୃତାରେ କହିଅଛନ୍ତି ଯେ ଜାତୀୟ ଜୀବନ ଓ ଏକତ୍ରିତ ଭାବରେ କାର୍ଯ୍ୟ କରିବା ଏ ଦୁଇଟି ଭିନ୍ନ କୌଣସି ଜାତି ଉନ୍ନତି କରିଥିବାର ପୃଥିବୀର ଇତିହାସରେ ମିଳେ ନାହିଁ । ବ୍ୟକ୍ତିଗତ ଉଦାହରଣରୁ ଆପଣମାନେ ବୁଝିପାରିବେ ଯେ, କି ଅବସ୍ଥାରେ ଜଣେ ମନୁଷ୍ୟ ଓ ଆଉ ଜଣେ ମନୁଷ୍ୟ ମଧ୍ୟରେ ପ୍ରୀତି ଏବଂ ବନ୍ଧୁତା ହୋଇପାରେ । ଦୁଇ ଶବ ମଧ୍ୟରେ କଦାପି ବନ୍ଧୁତା ହୋଇ ନ ପାରେ । ସେହିପରି ଦୁଇଜାତି ମଧ୍ୟରେ ବନ୍ଧୁତା ହେଲେ ଉଭୟ ଜାତି ମଧ୍ୟରେ ଜୀବନ ଥିବାର ନିତାନ୍ତ ଆବଶ୍ୟକ । ଅର୍ଥାତ୍ ଉଭୟ ଜାତିରେ ଜାତୀୟ ଜୀବନ ଥିବାର ଦରକାର । ମୁଁ ଅନ୍ୟ ଜାତିଙ୍କ ବିଷୟରେ କିଛି ଏଠାରେ କହିବାକୁ ଇଚ୍ଛା କରୁ ନାହିଁ । କାରଣ ମୁଁ ଆମ୍ଭମାନଙ୍କୁ ଭାରତୀୟ ସମସ୍ତ ଜାତିଙ୍କ ଅପେକ୍ଷା ଅଶିକ୍ଷିତ, ମୂର୍ଖ ଓ ଅସଭ୍ୟ ବୋଲି ଗଣନା କରେ ଓ ଅନ୍ୟ ଜାତିମାନଙ୍କୁ ଆମ୍ଭମାନଙ୍କ ଜାତିର ଜ୍ୟେଷ୍ଠଭ୍ରାତା ସ୍ୱରୂପ ଜ୍ଞାନ କରେଁ । ଯାହାଙ୍କୁ ମୁଁ ଜ୍ୟେଷ୍ଠ ଭ୍ରାତା ବୋଲି ଜ୍ଞାନ କରେ ସେ ପିତୃତୁଲ୍ୟ । ତାହାଙ୍କର ନ୍ୟାୟ ଅନ୍ୟାୟ ବିଚାର କରିବା, ତାଙ୍କ କାର୍ଯ୍ୟର ଦୋଷାଦୋଷ ଆଲୋଚନା କରିବାର କ୍ଷମତା ମୋର କିମ୍ବା ମୋର ଜାତିର ନାହିଁ । ସେମାନଙ୍କର କଥା ଛାଡ଼ । ପ୍ରଥମେ ଆମ୍ଭ ଜାତିକଥା ଧରିବାକୁ ଗଲେ ମୁଁ ଉପସ୍ଥିତ ଉତ୍କଳୀୟ ଭାଇମାନଙ୍କୁ, ପଚାରୁଛି –"ଆମ୍ଭମାନଙ୍କର ଜାତୀୟ ଜୀବନ ଅଛି କି ?" ଜାତି ଜାତି ମଧ୍ୟରେ ଭାବ ହେବା ନିମନ୍ତେ ଜାତୀୟ ଜୀବନର ଆବଶ୍ୟକ । ଆମ୍ଭମାନଙ୍କ ମଧ୍ୟରେ ଯେଉଁ ଜୀବନ ପରିଲକ୍ଷିତ ହୁଏ ତାହା ବ୍ୟକ୍ତିଗତ ଜୀବନ । ବ୍ୟକ୍ତିଗତ ଜୀବନ କ୍ଷଣସ୍ଥାୟୀ; ତାହା କାଲି ଶ୍ମଶାନରେ ଶେଷ ହେବ । ଶରୀର ଅଭ୍ୟନ୍ତରରେ ଯେଉଁ ଆତ୍ମା ବିଦ୍ୟମାନ ତାହା ଈଶ୍ୱରଙ୍କ ନିକଟରେ ପହୁଞ୍ଚିବ । ତଳେ ପାର୍ଥିବ ଜୀବନର ଆକର୍ଷଣ ଶକ୍ତି ଅର୍ଥାତ୍ ମୋର ସ୍ତ୍ରୀ, ମୋର ଅପତ୍ୟ, ମୋର ସମ୍ପତ୍ତି ଏବଂ ଭୂତ ପାର୍ଥିବ ଭାବଗୁଡ଼ିକ ମୋତେ ପ୍ରତିକ୍ଷଣ ତଳକୁ ଓଟାରୁଅଛି । ଉପରେ ସ୍ୱର୍ଗୀୟ ଜୀବନର ଆକର୍ଷଣ ଶକ୍ତି,

ଅର୍ଥାତ୍, ମୋର ପରିତ୍ରାଣ, ମୋର ଅନନ୍ତ ବିଶ୍ରାମସ୍ଥାନ ମୋତେ ସର୍ବଦା ଉପରକୁ ଟାଣୁଅଛି । ଚତୁଃପାର୍ଶ୍ୱରେ ଅନ୍ୟାନ୍ୟ ଜାତି ଓ ସମାଜ ବିଦ୍ୟମାନ । ସେହି ଜାତି ଓ ସମାଜମାନଙ୍କ ସଙ୍ଗେ ଜୀବନ ମିଳାଇ ଆଳାପ କରିବା ଆମ୍ଭମାନଙ୍କର ଗୋଟିଏ ପ୍ରଧାନ କର୍ମ । ଜାତୀୟ ଜୀବନ ପ୍ରତିଷ୍ଠିତ ହେଲେ ଜାତି ଜାତି ମଧ୍ୟରେ ସଦ୍ଭାବ ହେବ । ଜାତି ଜାତି ମଧ୍ୟରେ ଯେଉଁ ସଦ୍ଭାବ ତହିଁର ବିଚ୍ଛେଦ ହେବନାହିଁ । କିନ୍ତୁ ବ୍ୟକ୍ତିଗତ ସଦ୍‌ଭାବ ଚିରସ୍ଥାୟୀ ନୁହେ, ତାହା କ୍ଷଣଭଙ୍ଗୁର । କେହି କେହି ଏପରି ବିଚାର କରନ୍ତି ଯେ ଜାତୀୟ ସଦ୍ଭାବ ହେଲେ ବ୍ୟକ୍ତିଗତ ଅସଦ୍ଭାବ ରହିବ ନାହିଁ । ଏପରି ବିଚାର ଭ୍ରାନ୍ତି ମୂଳକ । ଜାତୀୟ ଜୀବନ ପ୍ରତିଷ୍ଠିତ ହେଲେ ସୁଦ୍ଧା ଜାତି ମଧ୍ୟରେ ବ୍ୟକ୍ତିଗତ ବିବାଦ ସମୂଳେ ଲୋପ ପାଇବା ଅସମ୍ଭବ । ଏପରି କେହି ମନେ କରିବେ ନାହିଁ ଯେ, ଉତ୍କଳରେ ଜାତୀୟ ଜୀବନ ପ୍ରତିଷ୍ଠିତ ହୋଇ ତହିଁର ମୂଳଦୂଆ ଦୃଢ଼ ହେଲେ ଆମ୍ଭ ଦେଶରେ ବ୍ୟକ୍ତିଗତ ବିବାଦ ଆଦୌ ରହିବ ନାହିଁ ଓ ଅଦାଲତଗୁଡ଼ିକ ଉଠିଯିବ । ବ୍ୟକ୍ତିଗତ ଜୀବନରେ ଅସଦ୍ଭାବ ଥିଲେ ସୁଦ୍ଧା ଜାତୀୟ ସଦ୍ଭାବରେ କିଛି ଅଭାବ ଘଟିବ ନାହିଁ । ମୁଁ କୌଣସି ଶିକ୍ଷିତ ଓ ପଦସ୍ଥ ଉତ୍କଳୀୟଙ୍କ ଠାରୁ ତଳଲିଖିତ ମର୍ମରେ ପତ୍ର ପାଇଅଛି -

''ମୋ ସଙ୍ଗେ ଆପଣଙ୍କ ମନ ମିଳିଲା ନାହିଁ, ଅତଏବ ମୁଁ ସମ୍ମିଳନୀରେ କାର୍ଯ୍ୟ କରିପାରିବି ନାହିଁ ।'' ଏଥିର କାରଣ ଆମ୍ଭମାନଙ୍କର ଜାତୀୟ ଜୀବନର ଅଭାବ । ଜାତୀୟ ଜୀବନ ଗଠିତ ହେଲେ ବ୍ୟକ୍ତିଗତ ଭାବରେ ଅସଦ୍ଭାବ ଥିଲେ ସୁଦ୍ଧା ଜାତୀୟ ଅନୁଷ୍ଠାନରେ ସମସ୍ତେ ମିଳିମିଶି କାର୍ଯ୍ୟ କରିପାରିବା, ଏଥିରେ ସନ୍ଦେହ ନାହିଁ । ଏଠାରେ ଆପଣମାନଙ୍କୁ ଗୋଟିଏ ଉଦାହରଣ ଦେବାକୁ ଇଚ୍ଛା ହେଉଅଛି :—

ପ୍ରଥମେ ଆକାଶରୁ କ୍ଷୁଦ୍ର ଜଳବିନ୍ଦୁ ପୃଥିବୀ ଉପରେ ପଡ଼େ । ତତ୍ପରେ ଜଳବିନ୍ଦୁଗୁଡ଼ିକ ଏକତ୍ରିତ ହୋଇ ଗୋଟିଏ ଜଳାଧାର ହୋଇ ତଳକୁ ବହିଯାଏ । ଏହିପରି କେତେଗୁଡ଼ିଏ ଜଳାଧାର ମିଶି ଗୋଟିଏ ନାଳରେ ପରିଣତ ହୁଏ । ଏହିପରି କେତେଗୁଡ଼ିଏ ନାଳ ନଦୀରେ ପରିଣତ ହେଇ ତଳକୁ ବହିଯାଏ ଓ ଶେଷରେ ସମୁଦ୍ରରେ ଯାଇ ପଡ଼େ । ଆପଣମାନେ ଦେଖନ୍ତୁ, ସବୁ ସ୍ଥଳରେ ସବୁ ଅବସ୍ଥାରେ ଜଳ ନିଜର ଜାତୀୟ ଗୁଣକୁ ଧାରଣ କରି ନିଜର ଜାତୀୟ ଜୀବନର ଟେକ ରଖିଅଛି । ଜଳର ଜାତୀୟ ଗୁଣ ନିମ୍ନଗତି । ବିନ୍ଦୁଏ ଜଳରେ ସେହି ଗୁଣ ବିଦ୍ୟମାନ ଓ ମହାସମୁଦ୍ରରେ ମଧ୍ୟ ଜଳ ନିଜର ଜାତୀୟ ଗୁଣକୁ ହରାଇ ପାରିନାହିଁ । ଆମ୍ଭ ସମସ୍ତଙ୍କର ସର୍ବଦା ମନେରଖିବା ଉଚିତ ଯେ, ଆମ୍ଭମାନଙ୍କର ଜାତୀୟ ଜୀବନ ଅଛି । ସବୁ ଅବସ୍ଥାରେ ସବୁ କାଳରେ ସବୁ ସ୍ଥାନରେ ଆମ୍ଭେମାନେ ପ୍ରତ୍ୟେକେ ଜାତୀୟ ଜୀବନର ଟେକ ରଖି କାର୍ଯ୍ୟ କରିବା ଏକାନ୍ତ ଆବଶ୍ୟକ । ଆମ୍ଭମାନଙ୍କ ମଧ୍ୟରୁ ଯେବେ କେହି ଭ୍ରମରେ ପଡ଼ିଥାନ୍ତି, ସେ ଭ୍ରମ ଅତି ଶୀଘ୍ର ସଂଶୋଧନ କରିବା ଏକାନ୍ତ ଆବଶ୍ୟକ ।

ଯେବେ କେହି ଜଣେ ଓଡ଼ିଆ ଜାତିଙ୍କୁ ଗାଳିଦିଏ, ତାହାହେଲେ ତୁମ୍ଭ ମନରେ ରାଗ ହୁଏ କାହିଁକି ? ଏଥିର କାରଣ ନିରୂପଣ କରିବାକୁ ଗଲେ ସ୍ପଷ୍ଟ ଜଣାଯିବ ଯେ ଏହା ଜାତୀୟ ଜୀବନର ଚିହ୍ନ । ଯେବେ ଜାତୀୟ ଜୀବନର ଚିହ୍ନ ଆମ୍ଭମାନଙ୍କ ମଧ୍ୟରେ ଅଛି ତେବେ ଆମ୍ଭେମାନେ ପ୍ରତ୍ୟେକେ ଯେ କୌଣସି କାର୍ଯ୍ୟ କରୁଁ ସେତେବେଳେ ନିଜେ ନିଜକୁ ସର୍ବପ୍ରଥମେ ଏହି ପ୍ରଶ୍ନଟି ପଚାରିବା ଆବଶ୍ୟକ — ''ମୋ କାର୍ଯ୍ୟଦ୍ୱାରା ମୋ ଜାତିର ନିନ୍ଦା ହେବ କି ନାହିଁ ?'' ମୁଁ ମିଥ୍ୟାବାଦୀ ହେଲେ କିମ୍ବା ଖୋସାମତ କଲେ ଏହି ନିନ୍ଦାରେ ମୋ ଜାତି ଭାଗୀ ହେବ, ଏହା ପ୍ରତ୍ୟେକ ବ୍ୟକ୍ତିର ବୁଝିବାର ଆବଶ୍ୟକ । ମୋତେ ଯେବେ ଜଣେ କୁବାକ୍ୟ କହେ ତେବେ ମୁଁ ତହିଁର ପ୍ରତିଉତ୍ତର କଲେ ତଦ୍ଦ୍ୱାରା ମୋ ଜାତିର ଗୌରବ ବୃଦ୍ଧି ହେବ କି ନାହିଁ ? ଜାତିର ମୂଲ୍ୟ ବଢ଼ିଲେ ଜାତୀୟ ଲୋକେ ତହିଁର ସୁଫଳ ଭୋଗ କରିବେ ଏଥିରେ ସନ୍ଦେହ ନାହିଁ । ଯାପାନ ଜାତିଙ୍କ ବିଷୟ ଆମ୍ଭମାନଙ୍କର ସଭାପତି ମହାଶୟ ତାହାଙ୍କର ବକ୍ତୃତାରେ କହିଅଛନ୍ତି । ଯାପାନ ଜାତିର ଉନ୍ନତିର ମୂଳମନ୍ତ୍ର କଅଣ ? ''ମୋର ପ୍ରାଣ ଯାଉ, ଲକ୍ଷେ ଯାପାନୀଙ୍କର ପ୍ରାଣ ଯାଉ, କିନ୍ତୁ ଯାପାନ ଜାତିର ମାନବୃଦ୍ଧି ହେଉ,'' ଏହି ଭାବ ପ୍ରତ୍ୟେକ ଯାପାନୀଙ୍କ ହୃଦୟରେ ନୃତ୍ୟ କରୁଅଛି । ଏହି ଭାବ ଯୋଗୁଁ ଆଜି ଯାପାନୀ ଜାତି ପୃଥିବୀରେ ସର୍ବତ୍ର ପୂଜିତ ହେଉଅଛି । ''ମୁଁ ଦିନେ ମିରିବି, ମୁଁ ଆଜି ମଲେ ମୋ ଜାତିର ମାନ ବୃଦ୍ଧି ହେବ, ମୋର ପୂର୍ବପୁରୁଷଙ୍କର ମାନବୃଦ୍ଧି ହେବ ଓ ମୋର ସନ୍ତାନ ସନ୍ତତିମାନଙ୍କର ମାନ ବଢ଼ିବ,'' ଏହି ଭାବାପନ୍ନ ଲୋକଙ୍କୁ ନେଇ ଯାପାନ ଜାତି ଗଠିତ । ଜାତିର ମାନବୃଦ୍ଧି ସଙ୍ଗେ ସଙ୍ଗେ ଜଗତର ଚକ୍ଷୁରେ ସେ ଜାତିର ମୂଲ୍ୟ ବଢୁଅଛି ଏଥିରେ ସନ୍ଦେହ ନାହିଁ । ଉଦାହରଣ ସ୍ୱରୂପ ଦେଖନ୍ତୁ ଯେ ଯାପାନ ଜାତି ଟଙ୍କା କରଜ ନେବାକୁ ବିଜ୍ଞାପନ ଦେଲା ମାତ୍ରେ ସମସ୍ତ ସଭ୍ୟଜାତି ତାଙ୍କୁ ଟଙ୍କା ଋଣ ଦେବାପାଇଁ ପ୍ରସ୍ତୁତ । ଏଥିର କାରଣ, ଜଗତର ଚକ୍ଷୁରେ ଯାପାନ ଜାତିର ମୂଲ୍ୟ ବଢ଼ିଅଛି । ଯେତେବେଳ ପର୍ଯ୍ୟନ୍ତ ବ୍ୟକ୍ତିଗତ ଜୀବନକୁ ଜାତି ନିମନ୍ତେ ବଳିଦେବା ଶିଖିନାହାନ୍ତି, ସେତେବେଳ ପର୍ଯ୍ୟନ୍ତ ଜାତୀୟ ଜୀବନ ଗଠିତ ହୋଇନାହିଁ ବୋଲି ଜାଣିବାକୁ ହେବ ଓ ସେତେବେଳ ଯାଏଁ ଜାତୀୟ ଜୀବନର ମୂଲ୍ୟ ଲୋକମାନେ ଜାଣି ନାହାନ୍ତି ବୋଲି କହିବାକୁ ହେବ । ଗୋଟିଏ ଦେଶୀ କୁକୁରକୁ ଆଦର ସହିତ ହୃଷ୍ଟପୁଷ୍ଟ କରି ରଖନ୍ତୁ ଓ ତାକୁ ନେଇ ଗୋଟିଏ ବିଲୁଆ ଦେଖାଇ ଦିଅନ୍ତୁ, ଦେଖିବେ ଯେ ବିଲୁଆଟି ଖିଙ୍କାରି ହେଲା ମାତ୍ରକେ ଦେଶୀ କୁକୁରଟି ଲାଙ୍ଗୁଡ଼ ଗୁଞ୍ଜି ଆପଣଙ୍କ ନିକଟକୁ ପଳାଇ ଆସିବ । କିନ୍ତୁ ଗୋଟିଏ ବିଲାତି ଡାହାଳ କୁକୁରଛୁଆ ଆଣନ୍ତୁ, ତାକୁ ଗୋଟିଏ ବାଘ ଦେଖାଇ ଦିଅନ୍ତୁ, ଦେଖିବେ ସେ ଡାହାଳ ଛୁଆଟି ନିର୍ଭୟଭାବରେ ମହାବଳ ବାଘ ଆଡ଼କୁ ଝପଟିଯିବ । ଯେବେ ସେ ଡାହାଳ କୁକୁରଛୁଆଟି କଥା କହି ପାରୁଥାନ୍ତା, ତାହାର ଅସୀମ ସାହସିକ କାର୍ଯ୍ୟର କାରଣ ଆପଣ ତା'କୁ

ପଚାରିଲେ ସେ ଏହିପରି ଜବାବ ଦିଅନ୍ତା-

"ମୁଁ ଜାଣେ ଯେ ମୁଁ ମହାବଳ ବାଘକୁ ଆକ୍ରମଣ କରିବାକୁ ଯାଇ ସେ ବାଘ ହାତରେ ମରିବି । କିନ୍ତୁ ମୋର ଜାତିର ଗୁଣ ସାହସିକତା, ମୁଁ ମୋର ଜୀବନ ପ୍ରତି ମାୟା ରଖି ବାଘ ନିକଟକୁ ନ ଗଲେ ମୋ ଜାତିର ମାନ ଓ ମୂଲ୍ୟ କମିଯିବ । ମୁଁ ମରେ ପଛକେ କିନ୍ତୁ ଡାହାଳ କୁକୁରର ଦାମ ମୋର ସାହସିକତା ଦ୍ୱାରା ବଢ଼ିବ; ଏଥିରେ ସନ୍ଦେହ ନାହିଁ ।" ଏହି ଉଦାହରଣର ଅର୍ଥ ଏହି କି ଆମ୍ଭେମାନେ ସମସ୍ତେ କାର୍ଯ୍ୟ କଲାବେଳେ ଥରେ ଆମ୍ଭମାନଙ୍କର ଭାବିବା ଉଚିତ ଯେ "ମୋ କାର୍ଯ୍ୟ ଦ୍ୱାରା ମୋ ଜାତିର ମାନ ବଢ଼ୁଛି କି ନାହିଁ ?" ଯେବେ ମୋତେ ଜଣେ କୁବାକ୍ୟ କହେ ଓ ମୁଁ ଯେବେ ଜାଣିପାରେ ଯେ ମୁଁ ସେ କୁବାକ୍ୟର ପ୍ରତ୍ୟୁତ୍ତର ନ ଦେଇ ଚୁପ୍ ରହିଲେ ମୋ ଜାତିର ମାନ ବଢ଼ିବ ଓ ମୋ ଜାତିର ଗମ୍ଭୀରତା ବଢ଼ିବ, ତାହାହେଲେ ଏପରି ସ୍ଥଳରେ ମୋର ନୀରବ ରହିବା ଏକାନ୍ତ କର୍ତ୍ତବ୍ୟ ।

ଦୋଷ ଗୁଣ ଦେଖିବା ସମ୍ବନ୍ଧରେ ମୋର ବକ୍ତବ୍ୟ ଏହି ଯେ ଯୋଡ଼ିଏ ଆଖିରୁ ଗୋଟିଏ ଆଖି ବନ୍ଦ କର ଓ ଗୋଟିଏ ଆଖି ଖୋଲା ରଖ । ବନ୍ଦ ଆଖିରେ ଅନ୍ୟ ଜାତିଙ୍କର ଦୋଷାଗୁଣ ଦେଖ ଓ ଖୋଲା ଆଖିରେ ସେମାନଙ୍କର ଗୁଣଗୁଡ଼ିକ ନିରୀକ୍ଷଣ କର ଓ ସେହି ଗୁଣଗୁଡ଼ିକ ଶିକ୍ଷା କର । ସବୁ ବ୍ୟକ୍ତି ଓ ସବୁ ଜାତିଙ୍କଠାରେ ଅନୁକରଣ କରିବା ଯୋଗ୍ୟ ଅନେକଗୁଡ଼ିଏ ଗୁଣ ଅଛି । ମୋର ପୂର୍ବବର୍ତ୍ତୀ ବକ୍ତା ଉମର ସାହେବ ମହୁମାଛି ଓ ପିମ୍ପୁଡ଼ିଙ୍କ ଉଦାହରଣ ଦେଇ ଯାହା କହିଅଛନ୍ତି, ସେଥିରୁ ଆପଣମାନେ ଦେଖି ପାରିବେ ଯେ କ୍ଷୁଦ୍ରପିପୀଲିକା ଓ ମଧୁମକ୍ଷିକାଙ୍କଠାରୁ ଆମ୍ଭମାନଙ୍କର ଅନେକ ଶିକ୍ଷା କରିବାର ବିଷୟ ଅଛି ।

ସୂର୍ଯ୍ୟ ନିର୍ବିକାର ଭାବରେ ସବୁଠାରେ କିରଣ ବିତରଣ କରୁଅଛନ୍ତି । ସମୁଦ୍ରର ଲୁଣି ପାଣିରେ, ମିଶ୍ରି ସରବତ୍‌ରେ, ନର୍ଦ୍ଦମାରେ, ସବୁ ସ୍ଥାନରେ ତାଙ୍କ କିରଣ ପଡୁଛି । କିନ୍ତୁ ଆପଣମାନେ ଦେଖନ୍ତୁ ଯେ ସୂର୍ଯ୍ୟଙ୍କର କିରଣ ବିଶୁଦ୍ଧ ଜଳତକ ଟାଣିନିଏ ଓ ମଇଳା, ଦୁର୍ଗନ୍ଧ,ପଙ୍କଗୁଡ଼ିକ ଛାଡ଼ିଯାଏ । ବିଶୁଦ୍ଧ ଜଳଗୁଡ଼ିକ ବାଷ୍ପ ରୂପରେ ଟାଣିନିଏ ଓ ସେହିଗୁଡ଼ିକ ପୁନର୍ବାର ପୃଥିବୀରେ ସେଚନ କରେ । ଏଥିରୁ ଆମ୍ଭେମାନେ ଏଇ ମହାଶିକ୍ଷା ପାଉଅଛୁଁ ଯେ ସବୁଠାରେ ଦୋଷତକ ତ୍ୟାଗ କରି ଗୁଣଗୁଡ଼ିକ ଗ୍ରହଣ କର ।

ପରିଶେଷରେ ଏ ସମ୍ବନ୍ଧରେ ମୋର ବକ୍ତବ୍ୟ ଏହିକି ଉତ୍କଳ ଜନନୀ ଭାରତ ଜନନୀଙ୍କଠାରୁ ବିଚ୍ଛିନ୍ନ ନୁହନ୍ତି, ଭାରତ ଜନନୀଙ୍କର ସପତ୍ନୀ କିମ୍ବା ଶତ୍ରୁ ନୁହନ୍ତି । ଭାରତ ଜନନୀଙ୍କର ପାଞ୍ଚ ଛଅ ଗୋଟି ପୁତ୍ର । ଭିନ୍ନ ଭିନ୍ନ ଶିଶୁଙ୍କୁ ବିଭିନ୍ନ ପ୍ରକାର ପରିଚର୍ଯ୍ୟା ଆବଶ୍ୟକ । ଜନନୀ କେଉଁ ଶିଶୁକୁ କ୍ରୋଡ଼ରେ ପୂରାଇ ମଧୁମୟ ସ୍ନେହ ଚକ୍ଷୁରେ ସ୍ତନପାନ କରାଉଅଛନ୍ତି । କେଉଁ ଶିଶୁଙ୍କର ଦୁଷ୍ଟ ଚରିତ୍ରକୁ ଦମନ କରିବା ପାଇଁ ବେତ୍ରାଘାତ କରୁଅଛନ୍ତି । କେଉଁ ଶିଶୁଙ୍କୁ ନିକଟରେ ବସାଇ ତାଙ୍କଠାରୁ ପରାମର୍ଶ ଗ୍ରହଣ କରୁଅଛନ୍ତି ।

ଅର୍ଥାତ୍ ଶିଶୁର ବିଭିନ୍ନ ଅବସ୍ଥାରେ ଜନନୀ ବିଭିନ୍ନ ରୂପ ଧାରଣ କରି ଦଣ୍ଡାୟମାନ ହେଉଅଛନ୍ତି । ଯେଉଁ ମଧୁମୟୀ ମୂର୍ତ୍ତିରେ ଜନନୀ ଶିଶୁକୁ ସ୍ତନପାନ କରାନ୍ତି, ଉତ୍କଳ ଜନନୀ ଆଜି ସେଇ ସ୍ନେହମୟୀ ମୂର୍ତ୍ତିରେ ଆଜି ଆମ୍ଭମାନଙ୍କର ସମ୍ମୁଖରେ ଏହି ସମ୍ମିଳନୀ ମଣ୍ଡପରେ ଉପସ୍ଥିତ ହୋଇଅଛନ୍ତି । ଏହି ମୂର୍ତ୍ତି ଭାରତମାତାଙ୍କର ଗୋଟିଏ ମୂର୍ତ୍ତିବିଶେଷ । ଏହି ରୂପଟି ଭାରତମାତାଙ୍କର ଗୋଟିଏ ଅବତାର । ଏପରି ସ୍ଥଳରେ ଉତ୍କଳମାତା ଭାରତମାତାଙ୍କର ସପତ୍ନୀ ନୁହନ୍ତି ।

ଏହି ସମ୍ମିଳନୀ ସଭାରେ ଉତ୍କଳୀୟ, ବଙ୍ଗୀୟ, ତେଲଗୁ, ରାଜପୁତ, ମାରୱାଡ଼ି ପ୍ରଭୃତି ବିଭିନ୍ନ ଜାତୀୟ ପ୍ରତିନିଧିମାନେ ଉପସ୍ଥିତ ହୋଇଅଛନ୍ତି । ଏହା ଯେବେ ଭାରତୀୟ ଅନୁଷ୍ଠାନ ମଧ୍ୟରେ ଗଣ୍ୟ ନ ହେବ, ତେବେ କଂଗ୍ରେସ କଦାପି ଜାତୀୟ ଅନୁଷ୍ଠାନ ମଧ୍ୟରେ ଗଣ୍ୟ ହୋଇ ନ ପାରେ ।

ଯେଉଁ ସ୍ଥାନର ଲୋକମାନଙ୍କର ଯାହା ଯାହା ଆବଶ୍ୟକ, ଦେଶ, କାଳ, ପାତ୍ର, ବୟସ ଓ ଶିକ୍ଷା ଅନୁସାରେ ଆମ୍ଭମାନଙ୍କୁ ସେହି ସେହି ବିଷୟରେ ଉନ୍ନତି କରିବାକୁ ହେବ ଯଦି ଦେଶର ଉନ୍ନତି କରିବାକୁ ଅନ୍ତର ସହିତ ଇଚ୍ଛା କର ତେବେ ଆପଣମାନଙ୍କୁ ମୁଁ ସ୍ଥିରଭାବରେ କହୁଅଛି, ଭାରତମାତାଙ୍କର ପବିତ୍ର ନାମରେ ଉତ୍କଳ ଜନନୀଙ୍କର ସ୍ନେହମୟ ନାମ ଧରି ମୁଁ ଆପଣମାନଙ୍କୁ ପ୍ରାର୍ଥନା କରୁଅଛି ଯେ ଦେଶର ଉନ୍ନତି କରିବା ବେଳେ ଦେଶର ଗରୀବ ଦୁଃଖୀଙ୍କୁ ଭୁଲନ୍ତୁ ନାହିଁ । ସମସ୍ତଙ୍କୁ ସଙ୍ଗେ ନେଇ ଦେଶର ଉନ୍ନତି କର । ଯେବେ ଶିକ୍ଷିତ ଲୋକମାନେ ଆପଣାକୁ ସାଧାରଣ ଅପେକ୍ଷା ଉଚ୍ଚତର ବୋଲି ଅହଙ୍କାର କରନ୍ତି ତାହା ହେଲେ ସେ [ସେମାନେ] ଅଧମ ଏବଂ ତାହାଙ୍କ [ସେମାନଙ୍କ] ଶିକ୍ଷା ଶିକ୍ଷାପଦବାଚ୍ୟ ନୁହେଁ । ଏମାନଙ୍କୁ ଛାଡ଼ି ତୁମ୍ଭେ ଏକାକୀ ସଭ୍ୟତା ସୋପାନରେ କଦାପି ଉଠି ପାରିବ ନାହିଁ । ଏପରି ଅବହେଳାରେ ଈଶ୍ୱରଙ୍କର ତଥା ଭାରତ ମାତାଙ୍କର ଆଶୀର୍ବାଦ କଦାପି ପଡ଼ିବ ନାହିଁ । ଏହା ନିଶ୍ଚିତ ।

***

## ୭

## ଦ୍ୱିତୀୟ ଅଧିବେଶନ: ଦଶମ ପ୍ରସ୍ତାବକୁ ସମର୍ଥନ କରି ପ୍ରଦତ୍ତ ବକ୍ତୃତା

ସଭାପତି ମହାଶୟ ଓ ଭାଇମାନେ ! ଏଥିପୂର୍ବେ ଦୁଇ ଏକଜଣ ବକ୍ତା ଏହି ସଭାରେ ଜାତୀୟ ବିବାଦ ସମ୍ବନ୍ଧେ କେତେକ କଥା କହିଅଛନ୍ତି । ମୁଁ କାଲି ଆପଣମାନଙ୍କୁ ଯାହା କହିଥିଲି ପୁନର୍ବାର ତାହା କହୁଅଛି ଓ ଜୀବନ ଥିବା ଯାକେ କହିବି ଯେ ''ବଙ୍ଗ ମାତା ଏବଂ ଉତ୍କଳ ମାତା ଏକ, ଭାରତମାତାଙ୍କର ବିଭିନ୍ନ ଅବତାର ମଧ୍ୟ ଏକ, ଭ୍ରମରେ

ଯଦି କେହି ଏହାକୁ ଅନ୍ୟ ବିବେଚନା କରନ୍ତି ମୁଁ ଭରସା କରେ ସେହି ଭ୍ରମରେ କେହି ଉତ୍କଳୀୟ ପଡ଼ିବେ ନାହିଁ । ଭ୍ରମ ହେତୁରୁ ଚିହ୍ନି ନ ପାରିବା ହେତୁ, ଲବ କୁଶ ରାମ ଲକ୍ଷ୍ମଣଙ୍କୁ ହତ କରିଥିଲେ । ଆମ୍ଭଙ୍କୁ ଯେ ଭାଇ ବୋଲି ନ ଚିହ୍ନି ଆଘାତ କରିବ, କରୁ । ଲବ କୁଶ ଗୌରବ କରିଥିଲେ କିନ୍ତୁ ଘରେ ସୀତାଦେବୀ କାନ୍ଦୁଥିଲେ । ମୁଁ ଭରସା, ଅନୁନୟ ଓ ଆଶା କରେ ଓ ଈଶ୍ୱର ଆଜ୍ଞା କରିଅଛନ୍ତି ଯେ –

''ଆଦ୍ୟେ ସ୍ମରି ଭଗବାନ ସର୍ବେ ହୋଇ ଏକ ପ୍ରାଣ
କର ମାତୃପାଦପୂଜା ଏ ମନ୍ଦିରେ ।''

ଏ ମନ୍ଦିରରେ ଯେ ପ୍ରବେଶ କରିବେ ପବିତ୍ର ହୃଦୟ ନେଇ ପ୍ରବେଶ କଲେ ତାହାର ପୂଜା ମାତା ଓ ଈଶ୍ୱର ଗ୍ରହଣ କରିବେ । ପ୍ରବେଶ କରିବା ପୂର୍ବରୁ ମନେ କରିବା ଉଚିତ ଏ ମାତୃଭୂମିର ପୂଜାସ୍ଥାନ । ମୁଁ ଯେବେ କୁପୁତ୍ର ପରି ମାତାର ଅବମାନନା କରେଁ, ଯେଉଁ ବକ୍ଷସ୍ଥଳରେ ସ୍ତନପାନ କରିଥିଲି, ସେଇ ବକ୍ଷରେ ଅଜ୍ଞାନରେ ଗୋଇଠା ମାରିଥିଲି ତଥାପି ମାତା ପକାଇ ଦେଇନାହାନ୍ତି । ମାତୃଭୂମିକୁ ପ୍ରତିଦିନ ଗୋଇଠା ମାରି ଅବମାନନା କଲେ ସୁଦ୍ଧା କୁପୁତ୍ରକୁ ମାତୃଭୂମି କଦାପି ତ୍ୟାଗ କରିବେ ନାହିଁ । କିନ୍ତୁ ସେଇ ମାତାଙ୍କ ପ୍ରତି ଭକ୍ତି କାର୍ଯ୍ୟରେ ଆମ୍ଭର କର୍ତ୍ତବ୍ୟ । ମୁଁ ଯେତେବେଳେ କୌଣସି ଭ୍ରାତାକୁ ଦେଖେ ଯେ ତାଙ୍କ ମନରେ ଭକ୍ତି ନ ଥାଇ ଏ ଗୃହରେ ପ୍ରବେଶ କରିଅଛନ୍ତି ତାହାହେଲେ ନୈରାଶ୍ୟରେ ଜଡ଼ିତ ହୁଏଁ । ଜାତୀୟ ଜୀବନ ନାହିଁ । ଗତବର୍ଷ କହିଥିଲି ଉତ୍କଳ ଜନନୀ ମୃତ୍ୟୁଶଯ୍ୟାରେ ପଡ଼ିଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କ ମନ୍ତ୍ରରେ କଣ୍ଠ ପିଟିବ । ଯେବେ ଆପଣ କେହି ରୋଗୀର ଚିକିତ୍ସା କରିଥାନ୍ତି ତେବେ ମୁଁ ଚିତ୍ର ମଧ ଲେଖନ୍ତି । ପ୍ରିୟ ଜନନୀ ଶଯ୍ୟାଗତ, ସନ୍ନିପାତ, ବଉଳା, ଜ୍ଞାନ ନାହିଁ । କବିରାଜ ପାପର ବିଷୟ । ଡାକ୍ତର ଔଷଧ ଗୃହର ହାହାମୟ କ୍ରନ୍ଦନ । ଏହି ଅବସ୍ଥାରେ ଉତ୍କଳ ଜନନୀଙ୍କୁ ଗତବର୍ଷ ଦେଖିଥିଲୁଁ । ଯେବେ ପ୍ରିୟ ଜନନୀଙ୍କୁ ଏପରି ଅବସ୍ଥାରେ ଦେଖିଥାଅ, ତେତେବେଳେ ପ୍ରଥମ ଜ୍ଞାନ ହେଲେ ସନ୍ନିପାତ ରୋଗୀ କିସ କହେ । ଯେଉଁ ମାତାଙ୍କ ଜୀବନ ଆଶା ଛାଡ଼ିଥିଲ ଲୁଗାପଟା ପକାଇ ଶରୀର ଉଷୁମ କରୁଥିଲ, ସେହି ମାତା ଜ୍ଞାନ ପାଇ କହୁଅଛନ୍ତି, ''ଏ କାହାର ଲୁଗା, ଏ ଲୁଗା ମୋର ନୁହେଁ ।'' ଆରବର୍ଷ ସନ୍ନିପାତ ଅବସ୍ଥା, ଏ ବର୍ଷ ଜ୍ଞାନାବସ୍ଥା; ସମସ୍ତେ ମନେକର, ସେହି ଅବସ୍ଥାରେ ମାତାଙ୍କ ନିକଟରେ ଉପସ୍ଥିତ ହୋଇ ବିଚାର କର ଯେ ପର ଲୁଗା ରଖିବ କି ନିଜର ଲୁଗା ଆଣି ତାଙ୍କୁ ଦେବ । ଏଠାରେ ଜାତୀୟ ଜୀବନର ପ୍ରୟୋଜନ । ଜାତୀୟ ଜୀବନ ଯେବେ ଅନୁଭବ କରିଥାଅ, ତେବେ ତନ୍ତୀ, ବଢ଼େଇ, ଶିଳ୍ପୀଙ୍କ ଉନ୍ନତି କରିବା ଅତି ସହଜ ।

ପ୍ରତ୍ୟେକ ଲୋକର ହୃଦୟରେ ଯେତେବେଳେ ଜାତିର ଚିନ୍ତା ପ୍ରବେଶ କରିବ ତେତେବେଳେ ଆମ୍ଭମାନଙ୍କ ମଧ୍ୟରେ ଜାତୀୟ ଜୀବନ ପ୍ରବେଶ କରିବ । ମୋର

ଶରୀରର ପ୍ରତ୍ୟେକ ରେଣୁ, ମୋର ମାନସିକ ଚିନ୍ତାର ପ୍ରତ୍ୟେକ ଚିନ୍ତା ସେହି ଜାତୀୟ ଜୀବନର ଏକ ଏକ ଅଂଶ । ତନ୍ତିର ଅବସ୍ଥାକୁ ଉନ୍ନତ କରିବା ଜାତୀୟ ଜୀବନର ଉନ୍ନତି ଉପରେ ନିର୍ଭର କରୁଅଛି । କେତେକ ଦିନ ପୂର୍ବେ କଲିକତାରେ ଜଣେ ଔଷଧାଳୟ କର୍ତ୍ତା ଇଂରେଜଙ୍କ ଦୋକାନରେ ଜଣେ ଦେଶୀୟ ଲୋକ ପହୁଞ୍ଚିବାରୁ ଇଂରେଜ ପଚାରିଲେ ବାଟରେ ଏତେ ଦୋକାନ ବା ଡାକ୍ତରଖାନା ଅଛି ସେଠାରୁ ନିଅନାହିଁ କାହିଁକି ? ସେ ଦେଶୀୟ ଜଣଙ୍କ ଉତ୍ତର କଲେ, ''ସେମାନେ ଠକନ୍ତି'' । ସେ ସାହେବ ମୋତେ ଇଂରେଜିରେ ପଚାରିଲେ ''Mr.Das, what became of your patriotism.'' ତୁମ୍ଭର ଜାତୀୟ ଜୀବନ କାହିଁ ? ତୁମ୍ଭେ ଯେବେ ଜଣେ ଇରୋପିୟାନକୁ ଦେଖି ଯାହା କରିବ ନାହିଁ କିନ୍ତୁ ନିଜ ଜାତି ସମକ୍ଷରେ ତାହା କରିବ । ତୁମ୍ଭର ଜାତି ପ୍ରତି ଘୃଣା, ତୁମ୍ଭଠାରେ ଜାତୀୟ ଜୀବନ ଲେଶମାତ୍ର ନାହିଁ ।

ବିଲାତର ଉନ୍ନତି ସମ୍ବନ୍ଧରେ ଦୁଇଟି ଛବି ରହିଅଛି । ଛବିରେ ଥିବା ନାଲି ରଙ୍ଗରୁ ପ୍ରକାଶ ଯେ ବିଲାତରେ ୧୮୪୦ ସାଲ ପର୍ଯ୍ୟନ୍ତ ବାଣିଜ୍ୟର ଅବସ୍ଥା । ଯେତେବେଳେ ଜାତୀୟ ଜୀବନ ହେଲା ସେ ନୀଳବର୍ଣ୍ଣ – ୧୮୪୦-୧୮୭୦ ପର୍ଯ୍ୟନ୍ତ । ହଳଦିଆ ରଙ୍ଗ ୧୮୭୦ ସାଲଠାରୁ ଆଜି ପର୍ଯ୍ୟନ୍ତ ବାଣିଜ୍ୟର କି ଉନ୍ନତି ହେଲା । ଜାତୀୟ ଜୀବନ ଆରମ୍ଭର ୩୦ବର୍ଷ ମଧ୍ୟରେ ବିଶେଷ ଉନ୍ନତି ।

କଲିକତାରେ ଥିବା ଇଂରେଜୀ ଜୋତାଦୋକାନରେ ଜଣେ ସାହେବ ପହଞ୍ଚି ଦେଖିଲେ ଯେ ବିଦେଶୀୟ ଜିନିଷ ଶସ୍ତା, ସ୍ୱଦେଶୀୟ ଜିନିଷ ମହଙ୍ଗା । କିନ୍ତୁ ଇଂରେଜ ବିଦେଶୀ ଜୋତା କିଣିବେ ନାହିଁ । ମୁଁ ଦଶବର୍ଷ ପୂର୍ବେ ମନେ କରିଥିଲି ଇଂରେଜୀ ଜୋତା ମୋ ଭାଗରେ କିପରି ନ ପଡ଼ୁ । କିନ୍ତୁ ଦଶ ବର୍ଷ ମଧ୍ୟରେ ମୁଁ ଦେଶୀ ଯୋତା ପିନ୍ଧିଅଛି । ଆମ୍ଭର ପ୍ରତିଜ୍ଞା କରିବା ଉଚିତ ଯେ ''ବିଦେଶୀ ଦ୍ରବ୍ୟ'' କିଣିବା ପୂର୍ବରୁ ଚିନ୍ତା କରିବା । ଯେତିକି କରିପାରିବ ତେତିକି କର । କୌଣସି ବିଦେଶୀୟ ପଦାର୍ଥ ଅସମ୍ଭବ । ମୋର ପରାମର୍ଶ ଯେ ଗୋଟିଏ ଚିଜ ଧର । ଦଶ କୋଡ଼ିଏ ଜଣ ପ୍ରତ୍ୟେକ ଗ୍ରାମରୁ ଏକତ୍ରିତ ହୁଅ, ପ୍ରତିଜ୍ଞା କର – ଏକ ନମ୍ବର ସୂତା, ଏକରକମ ଧଡ଼ିର ଲୁଗା ପଖାଳକରା ଲୁଗା ସ୍ୱରୂପ ପିନ୍ଧିବ । ତନ୍ତୀ ବୁଣିବାକୁ ପ୍ରସ୍ତୁତ । ତାକୁ ଏଠାକୁ ପଠାଅ । ସେ ପାଞ୍ଚହାତ ବୁଣୁଥିଲେ ଏଠାରେ ୧୨-୧୫ ହାତ ବୁଣି ଶିଖିଯିବ । ସେ ଏଠାରୁ ଫେରିଲେ ସମସ୍ତେ ସେହି ଲୁଗା ପିନ୍ଧିବ । ବର୍ତ୍ତମାନ ବାରଅଣା ସେତେବେଳେ ଲାଭ ହେଲା । ତନ୍ତୀ ଖରିଦଦାର ସମସ୍ତେ ସନ୍ତୁଷ୍ଟ ହେବେ । ୫୦ଜଣ ଏକ ମନ ଏକ ପ୍ରତିଜ୍ଞା ହୁଅ । ପ୍ରଥମେ ଘରେ ପିନ୍ଧିବା ଲୁଗା ପଖାଳକରାରେ ଆରମ୍ଭ କର । କ୍ଷୁଦ୍ର ସୀମାରେ କର । ସେଥିର ଆଦର ବୃଦ୍ଧି ହେଲେ ସେହି ତନ୍ତୀ ଅନ୍ୟ ପାଞ୍ଚଜଣଙ୍କୁ ଶିଖାଅ[ଶିଖାଉ] । ସରୁ ଲୁଗା ନିମନ୍ତେ ଅନ୍ୟ ଗୋଟିଏ ତନ୍ତୀ ନିୟୋଗ କର । ୫୦ଜଣ ଦୃଢ଼ ପ୍ରତିଜ୍ଞା କରି ଗୋଟାଏ

ଚିଜ ସମ୍ବନ୍ଧରେ ପ୍ରତିଜ୍ଞା କର । ଯେବେ ପ୍ରତିଜ୍ଞା ଭଙ୍ଗ ହେବ ତେବେ ଜାତୀୟ ଜୀବନରେ ଆଘାତ ଲାଗିବ । ଯେଉଁ ପ୍ରତିଜ୍ଞା ପାଳନ କରିପାରିବ ତାହା କର । ୧୦ଜଣ ଏକାଠି ହୋଇ ଏକ ଧାଡ଼ିରେ ପଖାଳକରା ପିନ୍ଧ । ଉତ୍କଳ ଜନନୀ ଏହା ତୁମ୍ଭମାନଙ୍କୁ ମାଗୁଅଛନ୍ତି । ପ୍ରଥମେ ଘରେ ପିନ୍ଧିବା ଲୁଗା ଖଣ୍ଡକ ଦେଶୀୟ ହେଉ । ଏ ବିଷୟର ସମଗ୍ର ବିବରଣ ସମ୍ମିଳନୀ ପକ୍ଷରୁ ଗ୍ରାମ୍ୟ ସମିତିକୁ ପ୍ରେରିତ ହେବ ।

ପରିଶେଷରେ ମୋର ପ୍ରାର୍ଥନା ଏହି ଯେ, 'ଏକତ୍ର ହେବାକୁ ଶିଖ, ଜୀବନର ସୀମା ବୃଦ୍ଧି କରିବାକୁ ଶିଖ ।' ଟେକା ପଡ଼ିଲେ ଢେଉ ଏକସ୍ଥାନରୁ ଉଠି କ୍ରମେ କ୍ରମେ ବିସ୍ତାର ହୁଏ । ଯେବେ ତୁମ୍ଭ ଅନ୍ତଃକରଣ ଜାତୀୟ ଜୀବନ ପାଇଁ ଦିନେ କାନ୍ଦିଥାଏ; ''ମୋ ଜାତିର ଅଧୋଗତି ହୋଇଅଛି –'' ଏ କଥା ଦିନେ ଯେବେ ବାଜିଥାଏ, ତେବେ ତୁମ୍ଭେ ସ୍ଥିର ହୋଇ ପାରିବ ନାହିଁ ।

ଏଇ ଦେଶର ଦାତା କର୍ଣ୍ଣ ଗୋଟିଏ ନିଷ୍ଠାପର ଉଦାହରଣ । ମୁଁ ନିଜ ଚକ୍ଷୁରେ ଦେଖିଛି ୭୦।୮୦ ବରଷ ବୃଦ୍ଧ ଯୁବକ ସହ ଦୁବଘାସ କେରାଏ ନେଇ ଗୋରୁକୁ ଦେଲେ ପଛେ ମୁଁ ଖାଇବି, ଏପରି କର୍ତ୍ତବ୍ୟ କର୍ମରେ ନିଷ୍ଠା ରଖିଥିଲା । ବର୍ତ୍ତମାନ ଅଶିକ୍ଷିତଙ୍କ ମଧ୍ୟରେ [ଏପରି ଭାବ] ପ୍ରବଳ ଅଛି । ରୋଜ ଶୋଇବାବେଳ ପୂର୍ବରୁ ଆପଣାକୁ ପ୍ରଶ୍ନ ପଚାରିବ – ''ମୁଁ ଆଜି ଜାତୀୟ ଜୀବନ ସମ୍ବନ୍ଧରେ କଅଣ କରିଛି ।'' ଜଣେ ଡେପୁଟିଙ୍କୁ ଦିନେ ପଚାରିଲି ତୁମ୍ଭେ ଜାତୀୟ ଜୀବନ ସମ୍ବନ୍ଧରେ କଅଣ କରିଅଛ । ସେ କହିଲେ ମୋର ସମୟ ନାହିଁ । ମୁଁ କହିଲି ବାଟଘାଟ, କଚେରିରେ ଯାହାକୁ ଦେଖୁଛ ଓ ମଧ୍ୟ ତୁମ୍ଭର ନିଜ ସ୍ତ୍ରୀକୁ ଏଇ ସମ୍ବନ୍ଧରେ କହିବାକୁ କିଛି ସମୟ ପାଉନାହଁ କି ? ତୁମେ ସମସ୍ତେ ମନକୁ ପଚାର, ''ସ୍ତ୍ରୀକୁ କେବେ କହିଛ ତୋର ଜାତୀୟ ଜୀବନ ହେବା ଉଚିତ । ଏ ପିଲାମାନେ ଯେପରି ଜାତିର ଗୌରବ ବୃଦ୍ଧି କରି ପାରନ୍ତି ସେହିପରି ତୁ ତାଙ୍କୁ ଗଢ଼ାଇବୁ ।'' ଯେବେ ପ୍ରତ୍ୟେକ ଲୋକ ପ୍ରତିଦିନ ପାଞ୍ଚ ମିନିଟ୍ ସମୟ ଏଥିରେ ବ୍ୟୟ କରନ୍ତି, ତେବେ ଦଶ ପନ୍ଦର ବର୍ଷ ମଧ୍ୟରେ ଜାତି ବଦଳି ଯିବ ।

***

## ୮

## ତୃତୀୟ ଅଧିବେଶନର ଦ୍ୱିତୀୟ ପ୍ରସ୍ତାବର ଅନୁମୋଦକ ଭାବରେ ବକ୍ତବ୍ୟ

ଭାଇମାନେ,ଉତ୍କଳ ସମ୍ମିଳନୀର ଦୁରବସ୍ଥା ଦେଖି ମୋ ମନରେ ଯେପରି ଦୁଃଖ ଜାତ ହୋଇଅଛି, ମୋର ପୁତ୍ର ନଷ୍ଟ ହୋଇଥିଲେ ମୋ ମନରେ ସେପରି ଦୁଃଖ ହୁଅନ୍ତା ନାହିଁ । ସମ୍ମିଳନୀ ତିନିବର୍ଷ ହେଲା ସ୍ଥାପିତ ହୋଇଅଛି; କିନ୍ତୁ ଏପର୍ଯ୍ୟନ୍ତ କୌଣସି କାର୍ଯ୍ୟ କରିବାକୁ କ୍ଷମ ହୋଇନାହିଁ । ବର୍ତ୍ତମାନ ତାର ଶୈଶବାବସ୍ଥା । ଏ ଅବସ୍ଥାରେ ବିଶେଷ

କାର୍ଯ୍ୟ ଯଦିଚ ଆଶା କରାଯାଏ ନାହିଁ, ତଥାଚ ତାମସା ଦେଖିବା ବ୍ୟତୀତ ଉତ୍କଳୀୟମାନଙ୍କର ସମ୍ମିଳନୀର ଉଦ୍ଦେଶ୍ୟ ସାଧନରେ ବ୍ରତୀ ହୋଇ ଅନ୍ତରର ସହିତ ଚେଷ୍ଟା କରିବା ଉଚିତ ଥିଲା । ପ୍ରତି ଅଧିବେଶନରେ ଶତ ଶତ,ସହସ୍ର ସହସ୍ର ଲୋକେ କେବଳ ତାମସା ଦେଖିବା ନିମନ୍ତେ ଉପସ୍ଥିତ ହୁଅନ୍ତି ଏବଂ ମୁଁ ସେହି ତାମସା ଦେଖିଅଛି । କିନ୍ତୁ କିଛି କରିପାରିନାହିଁ । ମୁଁ ଉତ୍କଳ ଜନନୀର କୁପୁତ୍ର, ମୋ ଦ୍ୱାରା କିଛି ହୋଇପାରିବ ନାହିଁ । ସମସ୍ତଙ୍କର ଧାରଣା ଯେ ଉତ୍କଳସମ୍ମିଳନୀ ମଧୁବାବୁଙ୍କର, କିନ୍ତୁ ତାହା ସହିତ ମୋର ବିଶେଷ କିଛି ସମ୍ପର୍କ ନାହିଁ । ଆପଣମାନଙ୍କ ସହିତ ଯେପରି ସମ୍ପର୍କ, ମୋ ସହିତ ସେହିପରି ସମ୍ପର୍କ । ଏହି ସମ୍ମିଳନୀ ପ୍ରତ୍ୟେକ ଉତ୍କଳୀୟଙ୍କର, ଏପରି ମନେ କରିବା ଉଚିତ । ଯେ ପର୍ଯ୍ୟନ୍ତ ସେ ଧାରଣା ହୋଇନାହିଁ; ସେ ପର୍ଯ୍ୟନ୍ତ ସମ୍ମିଳନୀର ଉଦ୍ଦେଶ୍ୟ କୌଣସି ପ୍ରକାରେ ସାଧିତ ହେବ ନାହିଁ ।

ଉତ୍କଳ ଜନନୀର ତିନିପୁତ୍ର ମଧ୍ୟରୁ ତାହାର ପୀଡ଼ା ସମୟରେ ଦୁଇପୁତ୍ର ମୃତ୍ୟୁଶଯ୍ୟା ପାଖରେ ଉପସ୍ଥିତ । ଅନ୍ୟ ଏକପୁତ୍ର(ଗଞ୍ଜାମବାସୀ) ଅନେକ ଦୂରରେ ଥିବାରୁ ଜନନୀ ତାହାକୁ ପାଖରେ ନ ଦେଖି ବିଶେଷ କଷ୍ଟ ବୋଧ କରୁଅଛି । ସେହି ଦୂରବର୍ତ୍ତୀ ପୁତ୍ର ମାତୃସେବା କରି ନ ପାରି ମଧ ବିଶେଷ ଦୁଃଖିତ । ମାତା ପୀଡ଼ିତ ହେଲେ ଦୁଇ/ ତିନି ବର୍ଷର ଶିଶୁ ମୁଖରେ ତଜ୍ଜନିତ ଦୁଃଖ ପ୍ରତିଭାତ ହୋଇଥାଏ । ବର୍ତ୍ତମାନ ଉତ୍କଳ ଜନନୀର ସେହି ଅବସ୍ଥା । ଜନନୀ ବିପଦଗ୍ରସ୍ତ, ପାଖରେ ଦୁଇପୁତ୍ର ମିଳିତ, ଅନ୍ୟ ଏକ ପୁତ୍ର ବହୁ ଦୂରରେ ଅଛି, ଆସି ପାରି ନାହିଁ । ମୃତଶଯ୍ୟାରେ ଏକ ପୁତ୍ରକୁ ନ ଦେଖି ଜନନୀ ମନରେ କିପରି ଦୁଃଖ ଜାତ ହୁଏ, ତାହା ସହଜରେ ଅନୁମେୟ । ଉତ୍କଳ ଜନନୀ ଯେ ସେଥି ନିମନ୍ତେ ବିଶେଷ ଦୁଃଖିତ, ସନ୍ଦେହ ନାହିଁ । ସେ ପୁତ୍ର ମାତା ପାଶକୁ ଆସି ସେବା ଶୁଶ୍ରୂଷା କରି ଜୀବନ ଚରିତାର୍ଥ କରିବା ନିମନ୍ତେ ବିଶେଷ ଚେଷ୍ଟା କରୁଅଛି । ତିନିପୁତ୍ର ଏକତ୍ର ନ ହେଲେ ଶୁଶ୍ରୂଷା ସମ୍ପୂର୍ଣ୍ଣ ହେବ ନାହିଁ। ଜନନୀ ପାଖରେ ତିନିଜଣଙ୍କର ଯେ ଏକ ସମୟରେ ସମ୍ମିଳନ ହେବ, ଏପରି ଆଶା କରୁଁ ।

***

୯

## ତୃତୀୟ ଅଧିବେଶନର ଚତୁର୍ଥ ପ୍ରସ୍ତାବର ପ୍ରସ୍ତାବକ ଭାବରେ ପ୍ରଦତ୍ତ ବକ୍ତୃତା

ଇ.ଏଫ୍.ଗାଉସ୍ ସାହେବ କଟକର କଲେକ୍ଟର ହୋଇ ଓଡ଼ିଶାର କମିଶନର ହୋଇଥିଲେ । ସେ ଯେ କେବଳ ରାଜକର୍ମଚାରୀ ଥିଲେ ତାହା ନୁହେ । ସେ ଜଣେ ଉତ୍କଳର ହିତାକାଂକ୍ଷୀ ପରମ ବନ୍ଧୁ ଥିଲେ । ସେ ମହାତ୍ମାଙ୍କ ସହିତ ମୋର ଅନେକ

ଦିନରୁ ଆଳାପ ପରିଚୟ ଥିଲା । ସେ ଅନେକ ସମୟରେ ମୋ ସହିତ ଓଡ଼ିଶାର ଅବସ୍ଥା ସମ୍ବନ୍ଧରେ କଥାବାର୍ତ୍ତା କରିଥିଲେ । ପ୍ରକୃତରେ ସେ ଜଣେ ସଦାଶୟ ଓ ଦୟାଶୀଳ ବ୍ୟକ୍ତି ଥିଲେ । ଓଡ଼ିଶାର ଦୁରବସ୍ଥା ଦେଖି ତାହାଙ୍କ ହୃଦୟରେ ଆଘାତ ଲାଗିଥିଲା । ସେ ଅସମୟରେ ସ୍ୱର୍ଗାରୋହଣ କରିବାରୁ ଆମ୍ଭେମାନେ ଓଡ଼ିଶାର ଜଣେ ପ୍ରକୃତ ହିତାକାଂକ୍ଷୀ ବନ୍ଧୁଙ୍କୁ ହରାଇଅଛୁଁ । କେନ୍ଦୁଝରର ମହାରାଜା, ପାରଳାଖେମିଡ଼ି, ଖଣ୍ଡପଡ଼ା ଓ ହିନ୍ଦୋଳର ରାଜାମାନେ ସମ୍ମିଳନୀର ପ୍ରଧାନ ପ୍ରତିପୋଷକ ଥିଲେ । ସେମାନଙ୍କ ମୃତ୍ୟୁରେ ସମ୍ମିଳନୀର ଯେ ବିଶେଷ କ୍ଷତି ହୋଇଅଛି, ତାହା ବୋଲିବା ବାହୁଲ୍ୟ ମାତ୍ର । ବାଲେଶ୍ୱରର କରଣ ଜମିଦାର ସାମନ୍ତ ରାଜନାରାୟଣ ଦାସ ଜଣେ ଶାସ୍ତ୍ରାଧାୟୀ ଓ ଯୋଗାଭ୍ୟାସୀ ଥିଲେ । ପ୍ରକୃତ ନିୟମରେ ସେ ଯୋଗାଭ୍ୟାସ କରି ନ ପାରିବାରୁ ତାହାଙ୍କର ମସ୍ତିଷ୍କ ବିଚଳିତ ହୋଇଥିଲା । ସେହି ଅବୈଧକ୍ରିୟାଜନିତ ରୋଗରେ ତାହାଙ୍କର ଶୋଚନୀୟ ମୃତ୍ୟୁ ଘଟନା ହୋଇଅଛି । ସେ ବିଶେଷ ନୀତି ଓ ଦାନପରାୟଣ ଥିଲେ । ରାୟ ହରିବଲ୍ଲଭ ବୋଷ ବାହାଦୁରଙ୍କୁ ମୁଁ ବହୁକାଳରୁ ଜାଣିଥିଲି, ମୁଁ ତାହାଙ୍କ ସହିତ ଅନେକ ବର୍ଷ କାର୍ଯ୍ୟକ୍ଷେତ୍ରରେ କାର୍ଯ୍ୟ କରି ତାହାଙ୍କ ସମ୍ବନ୍ଧରେ ମୁଁ ଯେତେ ଜାଣିଅଛି, ବୋଧହୁଏ ଆଉ କେହି ତେତେ ଜାଣିପାରିନାହାନ୍ତି । ସେ ଜଣେ ନିଷ୍ଠାପର, ସଚ୍ଚରିତ୍ର, ବୁଦ୍ଧିମାନ୍, ଚତୁର, ସୁଧୀର ଓ କାର୍ଯ୍ୟଦକ୍ଷ ବ୍ୟକ୍ତି ଥିଲେ । ସେ ଅନେକ କାଳ ସରକାରୀ ଓକିଲାତୀ କର୍ମ କରି ସୁଖ୍ୟାତି ଲାଭ କରିଥିଲେ । ଏହି ସମସ୍ତ ମହାନୁଭବ ବ୍ୟକ୍ତିମାନଙ୍କ ମୃତ୍ୟୁରେ ଉତ୍କଳ ବିଶେଷ ପ୍ରକାରରେ କ୍ଷତିଗ୍ରସ୍ତ ହୋଇଅଛି ।

***

## ୧୦

## ତୃତୀୟ ଅଧିବେଶନର ଚତୁର୍ଦ୍ଦଶ ପ୍ରସ୍ତାବର ପ୍ରସ୍ତାବକ ଭାବରେ ପ୍ରଦତ୍ତ ବକ୍ତୃତା

ସମ୍ମିଳନୀର ପ୍ରସ୍ତାବମାନ ଅତ୍ୟନ୍ତ ଗୁରୁତର ଓ ବହୁ ବ୍ୟୟସାପେକ୍ଷ । ତାହା କାର୍ଯ୍ୟରେ ପରିଣତ କରିବା ନିମନ୍ତେ ଅନେକ ଅର୍ଥର ପ୍ରୟୋଜନ । ବିନା ଟଙ୍କାରେ ପ୍ରସ୍ତାବମାନ ପ୍ରକୃତ କାର୍ଯ୍ୟରେ ପରିଣତ ହେବା ଅସମ୍ଭବ ଜାଣି ଗତ ଅଧିବେଶନରେ ଅର୍ଥସଂଗ୍ରହ ସକାଶ ଗୋଟିଏ ସମିତି ଗଠିତ ହୋଇଅଛି ।  କି ପ୍ରକାରେ ଅର୍ଥ ସଂଗ୍ରହ କରାଯିବା ବର୍ତ୍ତମାନ ତାହା ବିଚାର୍ଯ୍ୟ । ମୁଁ ପ୍ରସ୍ତାବ କରୁଅଛି ପ୍ରତ୍ୟେକ ଉତ୍କଳୀୟ ଯେବେ ପ୍ରତିବର୍ଷ ତାହାଙ୍କର ଏକ ଦିନର ଆୟ ସମ୍ମିଳନୀକୁ ଅର୍ପଣ କରନ୍ତି ତାହାହେଲେ ମୋ ବିବେଚନାରେ ଯଥେଷ୍ଟ ହୋଇପାରେ । ଏଥିରେ ଉପସ୍ଥିତ ସଭ୍ୟବୃନ୍ଦଙ୍କର ସମ୍ମତି ଥିଲେ ସେମାନେ ହସ୍ତ ଉତ୍ତୋଳନ କରି ସମ୍ମତି ପ୍ରକାଶ କରିବେ ।

***

## ୧୧

## ଚତୁର୍ଥ ଅଧିବେଶନ : ଷଷ୍ଠ ପ୍ରସ୍ତାବର ଅନୁମୋଦକ ଭାବରେ ପ୍ରଦତ୍ତ ମନ୍ତବ୍ୟ

ଆମ୍ଭେମାନେ ଅନ୍ୟାନ୍ୟ ଉତ୍କଳୀୟେତର ଜାତିମାନଙ୍କ ସହିତ ସୌହାର୍ଦ୍ଦ୍ୟ ଓ ଭ୍ରାତୃଭାବ ସଂସ୍ଥାପନା କରିବା ଉଚିତ । କାରଣ ଅନ୍ୟାନ୍ୟ ଉତ୍କଳୀୟେତର ଜାତିମାନେ ଆମ୍ଭମାନଙ୍କଠାରୁ ଉଚ୍ଚ ଶିକ୍ଷିତ, ଧୀଶକ୍ତିସମ୍ପନ୍ନ ଓ କର୍ମବୀର ଅଟନ୍ତି । ସେମାନଙ୍କର ମହତ କାର୍ଯ୍ୟର ପଦାଙ୍କାନୁସରଣ ଆମ୍ଭମାନଙ୍କର ଅନୁକରଣୀୟ । ଆମ୍ଭେମାନେ ସକଳ ବିଷୟରେ ଅନୁନ୍ନତ । ଏପରି ଅବସ୍ଥାରେ କି ସାମାଜିକ ଉନ୍ନତି, କି ଜାତୀୟ ଉନ୍ନତି, କି ଶିକ୍ଷୋନ୍ନତି ପ୍ରଭୃତି, ଯାବତୀୟ ଉନ୍ନତି ବିଷୟକ ପରାମର୍ଶ ସେମାନଙ୍କଠାରୁ ଗ୍ରହଣ କରା କର୍ତ୍ତବ୍ୟ ।

ଭାଇମାନେ, ଯଦି ଉନ୍ନତି ଲଭିବାକୁ ଇଚ୍ଛା କର, ବୀଜ ଯେପରି ନୀଚକୁ ଯାଇ ବୃକ୍ଷକୁ ଉଚ୍ଚକୁ ଉଠାଏ, ସେହିପରି ନିଜେ ନୀଚକୁ ଯାଅ ଓ ଜାତିକୁ ଉଚ୍ଚକୁ ଉଠାଅ ।

***

## ୧୨

## ପଞ୍ଚମ ଅଧିବେଶନର ପ୍ରଥମ ପ୍ରସ୍ତାବର ସମର୍ଥକ ହିସାବରେ ଉପସ୍ଥାପିତ ଭାଷଣ

ଭାଇମାନେ,

ସଭାପତି ମହାଶୟଙ୍କ ବକ୍ତୃତାର ଶେଷ ଭାଗରେ ସେ କହିଅଛନ୍ତି ଯେ, ଆଜି ସମ୍ମିଳନୀର ବିଦ୍ୟାରମ୍ଭ ଦିନ । ବିଶ୍ୱନାଥ ବାବୁ ମଧ୍ୟ ତାଙ୍କ ବକ୍ତୃତାରେ ଉକ୍ତ ବିଷୟ ଉଲ୍ଲେଖ କରିଅଛନ୍ତି । ଉତ୍କଳବାସୀ ! ସମ୍ମିଳନୀ ତୁମ ଆମ ଛଡ଼ା ଆଉ କିଛି ନୁହେଁ । ଯେତେବେଳେ ଉତ୍କଳଭାଷୀ ଓ ଉତ୍କଳବାସୀମାନେ ଏକାଠି ହେଉଁ ତାହାହିଁ ସମ୍ମିଳନୀ । ଯେବେ ସମ୍ମିଳନୀର ଆଜି ବିଦ୍ୟାରମ୍ଭ ତେବେ ସମସ୍ତ ଉତ୍କଳବାସୀ ଓ ଉତ୍କଳଭାଷୀମାନଙ୍କର ଆଜି ବିଦ୍ୟାରମ୍ଭ ।

ଉତ୍କଳ ଜନନୀ ଓ ଭାରତ ଜନନୀଙ୍କର କିଛି ପ୍ରଭେଦ ନାହିଁ । ଶରୀରର କୌଣସି ଅଂଶରେ ପୀଡ଼ା ହେଲେ ସେହି ଅଂଶର ଚିକିତ୍ସା କରିବାକୁ ହେବ । କିନ୍ତୁ ଏହି ଅଂଶବିଶେଷର ଚିକିତ୍ସାଦ୍ୱାରା ସମସ୍ତ ଶରୀରର ଉନ୍ନତି ହେବ । ଉତ୍କଳର ଚିକିତ୍ସାର ଉଦ୍ଦେଶ୍ୟ ଭାରତର ଉନ୍ନତି ।

ସଭାପତି ମହାଶୟ ତାଙ୍କ ବକ୍ତୃତାରେ 'ସଞ୍ଜୀବନୀ ମନ୍ତ୍ର'ର ଉଲ୍ଲେଖ କରିଅଛନ୍ତି । ସଭାପତି ମହୋଦୟ ଉତ୍କଳର ଅତୀତ ଗୌରବର କଥା ଉଲ୍ଲେଖ କରିଥିଲେ । ସେ ସବୁ ମନେ ପଡ଼ିଲେ ଛାତି ଫୁଲି ଉଠେ । କିନ୍ତୁ ବର୍ତ୍ତମାନ ଅବସ୍ଥା କଅଣ ? ବର୍ତ୍ତମାନ ଅବସ୍ଥା ଏହି ଯେ ଉତ୍କଳବାସୀ ସମସ୍ତଙ୍କର ଘୃଣାର୍ହ ହୋଇଅଛନ୍ତି । ଅତୀତର କଥା ସ୍ମରଣ କଲେ ଆମ୍ଭେମାନେ ନିଜେ ନିଜକୁ ଘୃଣା କରିବୁଁ ।

ବଡ଼ଦେଉଳ ବାଲିରେ ପୋତି ହୋଇ ଯାଇଥିଲା । ରାଜାଙ୍କ ଘୋଡ଼ାଟାପୁ ବାଜିବାରୁ ରାଜା ତାକୁ ପୁନରୁଦ୍ଧାର କରିଥିଲେ । ''ଏହି ସ୍ଥାନରେ ବଡ଼ ଦେଉଳକୁ ଚାହଁ ଓ ଜାତିର ପୁନରୁଦ୍ଧାର କର''— ଏହା ଆମ୍ଭମାନଙ୍କର ବୀଜମନ୍ତ୍ର ହେବା ଆବଶ୍ୟକ । ଜାତୀୟ ଜୀବନରେ ଏହି କଥାକୁ ବୀଜମନ୍ତ୍ର କରି ଜପ । ଯେଉଁ ପୂର୍ବ ପୁରୁଷମାନେ ଏହି କୀର୍ତ୍ତି କରିଥିଲେ ସେହିମାନଙ୍କର ରକ୍ତ ଯେ ଶରୀରରେ ଅଛି; କିନ୍ତୁ ତଦନୁସାରେ ମୁଁ କାର୍ଯ୍ୟ କରୁଅଛି କି ନା ଏହା ସମସ୍ତେ ଭାବିବା ଉଚିତ । ଭାଇ ! ଏଠାରେ ମୁଁ ଗୋଟିଏ ଦୃଷ୍ଟାନ୍ତ ଦେଉଅଛି । ଗୋଟିଏ ଭଲ ଜାତି ଡାହାଳ କୁକୁରଛୁଆକୁ ଆଣ । ଗୋଟିଏ ବାଘକୁ ତାକୁ ଦେଖାଇଦିଅ । ତାର ବାଘକୁ ମାରି ପାରିବାକୁ ବଳ ଥାଉ ବା ନ ଥାଉ ସେ ବାଘକୁ କାମୁଡ଼ିବାକୁ ଦଉଡ଼ିଯିବ । ଭାଇ ! ତାକୁ ପଚାର, ''ତୁ ତ ପିଲାଟିଏ, ବାଘକୁ ମାରିପାରିବୁ ବୋଲି ଦଉଡୁଛୁ ?'' ସେ ଉତ୍ତର ଦେବ,'' ମୁଁ ଜାଣିଛି ଯେ ମୁଁ ବାଘକୁ କାମୁଡ଼ି ପାରିବି ନାହିଁ । କିନ୍ତୁ ମୁଁ ମୋ ଜାତିର ନାମ ବୁଡ଼ାଇବି ନାହିଁ । ''

ଯେଉଁ ଜାତି ବଡ଼ ଦେଉଳ, ଭୁବନେଶ୍ୱର ଓ ଅନ୍ୟାନ୍ୟ ଶିଳ୍ପ କାର୍ଯ୍ୟମାନ କରିଥିଲେ ସେହି ଜାତିର ରକ୍ତ ଆମ୍ଭ ଦେହରେ ଅଛି କି ? ବିଦ୍ୟାରମ୍ଭ ସମୟରେ ଏହି କଥା ଭାବ, ନିଜ ଜାତୀୟ ଜୀବନ ଆପଣା ଦେହରେ ଅଛି କି ନାହିଁ ? ଯେବେ ନ ଥାଏ ସେ କିପରି ହେବ ଚେଷ୍ଟା କର । ଜାତୀୟ ଜୀବନ ବ୍ୟକ୍ତିଗତ ଜୀବନରୁ ପୃଥକ୍ । ''ଜାତି ପାଇଁ ବାଟରେ ଭିକ୍ଷା କରି ମରିବି'' — ଏହିପରି ପଣ ନ କରିବା ପର୍ଯ୍ୟନ୍ତ ଜାତୀୟ ଜୀବନର ସଞ୍ଚାର ହେବ ନାହିଁ । ବ୍ୟକ୍ତିଗତ ଜୀବନ ସ୍ୱାର୍ଥପର । ସ୍ୱାର୍ଥପରତା ଯେତେ ବୃଦ୍ଧି ହେବ ଜାତୀୟ ଜୀବନ ତେତିକି କମିବ । ସ୍ୱାର୍ଥପରତା ଯେବେ କମିଯିବ ଜାତୀୟ ଜୀବନ ତେତିକି ବୃଦ୍ଧି ହେବ ।

ମୋ ପିତାମହୀ ସତୀ ଥିଲେ । ସେ କିପରି ନ୍ୟାୟରେ ବଢ଼ିଥିଲେ ସେ କଥା ମୋତେ ଅନେକ ଥର କହିଥିଲେ । କୌଣସି କୌଣସି ଲୋକ ମୋତେ ସମୟ ସମୟରେ କହନ୍ତି, କାହିଁକି ଏ କାମ କରୁଛ ? ଅମୁକ ଚିଡ଼ିବେ ଯେ ? ସେତେବେଳେ ମୋ ମନେ ହୁଏ ମୋ ପିତାମହୀଙ୍କ ରକ୍ତ ମୋ ଦେହରେ ବହୁଛି, ମୁଁ ସେ ରକ୍ତ କଳୁଷିତ କରିବି ନାହିଁ । ସେହିପରି ସମସ୍ତେ ଚିନ୍ତା କର, ପୂର୍ବପୁରୁଷଙ୍କ ରକ୍ତ କଳୁଷିତ କରିବି ନାହିଁ । ଆମ୍ଭେମାନେ ସମସ୍ତଙ୍କୁ ଭାଇ ବୋଲି ସମ୍ବୋଧନ କରୁଅଛୁ । ତାହାର ମାନେ ଏହି ଯେ

ସଭାପତି ମହାଶୟ ତାଙ୍କ ବକ୍ତୃତାରେ 'ସଞ୍ଜୀବନୀ ମନ୍ତ୍ର'ର ଉଲ୍ଲେଖ କରିଅଛନ୍ତି । ସଭାପତି ମହୋଦୟ ଉତ୍କଳର ଅତୀତ ଗୌରବର କଥା ଉଲ୍ଲେଖ କରିଥିଲେ । ସେ ସବୁ ମନେ ପଡ଼ିଲେ ଛାତି ଫୁଲି ଉଠେ । କିନ୍ତୁ ବର୍ତ୍ତମାନ ଅବସ୍ଥା କଅଣ ? ବର୍ତ୍ତମାନ ଅବସ୍ଥା ଏହି ଯେ ଉତ୍କଳବାସୀ ସମସ୍ତଙ୍କର ଘୃଣାର୍ହ ହୋଇଅଛନ୍ତି । ଅତୀତର କଥା ସ୍ମରଣ କଲେ ଆମ୍ଭେମାନେ ନିଜେ ନିଜକୁ ଘୃଣା କରିବୁଁ ।

ବଡ଼ଦେଉଳ ବାଲିରେ ପୋତି ହୋଇ ଯାଇଥିଲା । ରାଜାଙ୍କ ଘୋଡ଼ାଟାପୁ ବାଜିବାରୁ ରାଜା ତାକୁ ପୁନରୁଦ୍ଧାର କରିଥିଲେ । ''ଏହି ସ୍ଥାନରେ ବଡ଼ ଦେଉଳକୁ ଚାହଁ ଓ ଜାତିର ପୁନରୁଦ୍ଧାର କର''– ଏହା ଆମ୍ଭମାନଙ୍କର ବୀଜମନ୍ତ୍ର ହେବା ଆବଶ୍ୟକ । ଜାତୀୟ ଜୀବନରେ ଏହି କଥାକୁ ବୀଜମନ୍ତ୍ର କରି ଜପ । ଯେଉଁ ପୂର୍ବ ପୁରୁଷମାନେ ଏହି କୀର୍ତ୍ତି କରିଥିଲେ ସେହିମାନଙ୍କର ରକ୍ତ ଯେ ଶରୀରରେ ଅଛି; କିନ୍ତୁ ତଦନୁସାରେ ମୁଁ କାର୍ଯ୍ୟ କରୁଅଛି କି ନା ଏହା ସମସ୍ତେ ଭାବିବା ଉଚିତ । ଭାଇ ! ଏଠାରେ ମୁଁ ଗୋଟିଏ ଦୃଷ୍ଟାନ୍ତ ଦେଉଅଛି । ଗୋଟିଏ ଭଲ ଜାତି ଡାହାଳ କୁକୁରଛୁଆକୁ ଆଣ । ଗୋଟିଏ ବାଘକୁ ତାକୁ ଦେଖାଇଦିଅ । ତାର ବାଘକୁ ମାରି ପାରିବାକୁ ବଳ ଥାଉ ବା ନ ଥାଉ ସେ ବାଘକୁ କାମୁଡ଼ିବାକୁ ଦଉଡ଼ିଯିବ । ଭାଇ ! ତାକୁ ପଚାର, ''ତୁ ତ ପିଲାଟିଏ, ବାଘକୁ ମାରିପାରିବୁ ବୋଲି ଦଉଡୁଛୁ ?'' ସେ ଉତ୍ତର ଦେବ,'' ମୁଁ ଜାଣିଛି ଯେ ମୁଁ ବାଘକୁ କାମୁଡ଼ି ପାରିବି ନାହିଁ । କିନ୍ତୁ ମୁଁ ମୋ ଜାତିର ନାମ ବୁଡ଼ାଇବି ନାହିଁ । ''

ଯେଉଁ ଜାତି ବଡ଼ ଦେଉଳ, ଭୁବନେଶ୍ୱର ଓ ଅନ୍ୟାନ୍ୟ ଶିଳ୍ପ କାର୍ଯ୍ୟମାନ କରିଥିଲେ ସେହି ଜାତିର ରକ୍ତ ଆମ୍ଭ ଦେହରେ ଅଛି କି ? ବିଦ୍ୟାରମ୍ଭ ସମୟରେ ଏହି କଥା ଭାବ, ନିଜ ଜାତୀୟ ଜୀବନ ଆପଣା ଦେହରେ ଅଛି କି ନାହିଁ ? ଯେବେ ନ ଥାଏ ସେ କିପରି ହେବ ଚେଷ୍ଟା କର । ଜାତୀୟ ଜୀବନ ବ୍ୟକ୍ତିଗତ ଜୀବନରୁ ପୃଥକ୍ । ''ଜାତି ପାଇଁ ବାଟରେ ଭିକ୍ଷା କରି ମରିବି'' – ଏହିପରି ପଣ ନ କରିବା ପର୍ଯ୍ୟନ୍ତ ଜାତୀୟ ଜୀବନର ସଞ୍ଚାର ହେବ ନାହିଁ । ବ୍ୟକ୍ତିଗତ ଜୀବନ ସ୍ୱାର୍ଥପର । ସ୍ୱାର୍ଥପରତା ଯେତେ ବୃଦ୍ଧି ହେବ ଜାତୀୟ ଜୀବନ ତେତିକି କମିବ । ସ୍ୱାର୍ଥପରତା ଯେବେ କମିଯିବ ଜାତୀୟ ଜୀବନ ତେତିକି ବୃଦ୍ଧି ହେବ ।

ମୋ ପିତାମହୀ ସତୀ ଥିଲେ । ସେ କିପରି ନ୍ୟାୟରେ ବଢ଼ିଥିଲେ ସେ କଥା ମୋତେ ଅନେକ ଥର କହିଥିଲେ । କୌଣସି କୌଣସି ଲୋକ ମୋତେ ସମୟ ସମୟରେ କହନ୍ତି, କାହିଁକି ଏ କାମ କରୁଛ ? ଅମୁକ ଚିଡ଼ିବେ ଯେ ? ସେତେବେଳେ ମୋ ମନେ ହୁଏ ମୋ ପିତାମହୀଙ୍କ ରକ୍ତ ମୋ ଦେହରେ ବହୁଛି, ମୁଁ ସେ ରକ୍ତ କଳୁଷିତ କରିବି ନାହିଁ । ସେହିପରି ସମସ୍ତେ ଚିନ୍ତା କର, ପୂର୍ବପୁରୁଷଙ୍କ ରକ୍ତ କଳୁଷିତ କରିବି ନାହିଁ । ଆମ୍ଭେମାନେ ସମସ୍ତଙ୍କୁ ଭାଇ ବୋଲି ସମ୍ବୋଧନ କରୁଅଛୁ । ତାହାର ମାନେ ଏହି ଯେ

ମୋ ଭାଇ ଯେଉଁ ମାତାଙ୍କ ରକ୍ତ ମାଂସରେ ଗଠିତ, ମୁଁ ସେହି ରକ୍ତ ମାଂସରେ ଗଠିତ । ସମସ୍ତେ ଭାରତ ସନ୍ତାନ । ସମସ୍ତେ ଏକ ରକ୍ତ ମାଂସସମ୍ଭୂତ । ଯେତେବେଳେ ଏ ଜ୍ଞାନ ହେବ, ତେତେବେଳେ ଜାତୀୟ ଜୀବନର ଅଭାବ ରହିବ ନାହିଁ । ଉତ୍କଳର ଅସ୍ତମିତ ଗୌରବର ବିଷୟ ଥରେ ଚିନ୍ତା କର । ଯେତେବେଳେ ଶିଶୁ ସ୍ତନ୍ୟପାନ କରୁଥାଏ, ତେତେବେଳେ ବିଶ୍ୱାସପୂର୍ଣ୍ଣ ନୟନରେ ମାତାର ମୁଖ ପ୍ରତି ଦୃଷ୍ଟି ରଖିଥାଏ । ଏହିଠାରେ ଆମ୍ଭେମାନେ ଉତ୍କଳଜନନୀ ତଥା ଭାରତ ଜନନୀର କ୍ରୋଡ଼ରେ ବସିଥାଉଁ । ସମସ୍ତେ ଏହି କଥା ଭାବ ଓ ପ୍ରତିଜ୍ଞା କର ଯେ, ଯେଉଁ ଉତ୍କଳ ଜନନୀ ମୋତେ ଜନ୍ମ ଦେଇଅଛନ୍ତି, ତା' ସକାଶ ଏହି ସଭାରେ ଦୃଢ଼ ପ୍ରତିଜ୍ଞା କରୁଅଛି ଯେ "ମୁଁ ପ୍ରତିଦିନ ପାଞ୍ଚ ମିନିଟ୍ ସମୟ ଦେଶର କଥା ଭାବିବି ଏବଂ ସମ୍ମିଳନୀ ସକାଶେ ଉତ୍କଳ ନିମନ୍ତେ ଓ ଭାରତ ନିମନ୍ତେ ଅନ୍ତତଃ ପାଞ୍ଚ ମିନିଟ୍ ସମୟ ବ୍ୟୟ କରିବି ।"

ଏ ମନ୍ତ୍ର ସମସ୍ତେ ମୁହଁରେ ପାଟି କରି କହ । ଏହା ସମ୍ମିଳନୀର ବିଦ୍ୟାରମ୍ଭ ।

***

## ୧୩

## ଷଷ୍ଠ ଅଧିବେଶନ: ଅଷ୍ଟମ ପ୍ରସ୍ତାବର ଅନୁମୋଦକ ରୂପେ ପ୍ରଦତ୍ତ ଭାଷଣ

ଭଲଣ୍ଟିୟରଗଣ, ତୁମ୍ଭମାନଙ୍କୁ ମୁଁ କି ଉପଯୁକ୍ତ ଶବ୍ଦଦ୍ୱାରା ସମ୍ବୋଧନ କରିବି ତାହା ମୁଁ ଜାଣେ ନାହିଁ । ତୁମ୍ଭେମାନେ ଦେଶର ଭାବୀ ଆଶାର ସ୍ଥଳ, ଅତଏବ ତୁମ୍ଭମାନଙ୍କୁ 'ଉତ୍କଳର ଭାବୀ ଆଶା' ବୋଲି ସମ୍ବୋଧନ କରିବି । ମନୁଷ୍ୟ ବୃଦ୍ଧ ହେଲେ ଭବିଷ୍ୟତ ପାଇଁ ଚିନ୍ତା କରେ, ମୁଁ ବୃଦ୍ଧ ହୋଇଅଛି; ମୋର ଗୋଟିଏ ଗୋଡ଼ ସଂସାରରେ ଅନ୍ୟଟି ଶ୍ମଶାନରେ । ଏ ଅବସ୍ଥାରେ ମୁଁ ଉତ୍କଳ ଜନନୀର ଭବିଷ୍ୟତ କଳ୍ପନାଚକ୍ଷୁରେ ଦେଖୁଅଛି । ଦେଖୁଅଛି ତୁମ୍ଭମାନଙ୍କ ଦ୍ୱାରା ଅତି ଉଜ୍ଜ୍ୱଳ ହେବ । ତୁମ୍ଭେମାନେ ଅଳ୍ପ ବୟସ୍କ, ସୁତରାଂ ଜୀବନରେ ବୋଧହୁଏ ଏହି ପ୍ରଥମ ଧନ୍ୟବାଦ ପାଇଲ । ତୁମ୍ଭେମାନେ ଯେ ଜନ୍ମଭୂମିର ସେବାକରି ଜୀବନର ପ୍ରଥମ ଧନ୍ୟବାଦ ଅର୍ଜ୍ଜନ କଲ, ଏଥିପାଇଁ ନିଜକୁ ଧନ୍ୟ ମନେ କର । କେବେ ହେଁ ଧନ୍ୟବାଦର ପ୍ରତ୍ୟାଶୀ ହେବ ନାହିଁ । ଯଦି ସ୍ୱଦେଶର, ସ୍ୱଜାତିର ଉପକାର କରିବାକୁ ଚାହଁ ତେବେ ଜନନୀର ଜରାକ୍ଲିଷ୍ଟ, ଜୀର୍ଣ୍ଣ, ମୁମୂର୍ଷୁ ଅବସ୍ଥା ଅବଲୋକନ କର । ଯେଉଁ ଉତ୍କଳର ବାହୁବଳ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ପ୍ରକମ୍ପିତ କରିଥିଲା, ଆଜି ଦେଖ ସେ ଜନନୀର ହୃଦୟରେ ରକ୍ତର ସଞ୍ଚାର ନାହିଁ; ଯେଉଁ ଉତ୍କଳ ଜଗନ୍ନାଥ ମନ୍ଦିରରେ ସାମ୍ୟବାଦର ନିଶାଣ ଉଡ଼ାଇଅଛନ୍ତି, ସେ ଉତ୍କଳ ଆଜି ଦୃଷ୍ଟି-ଶକ୍ତିହୀନ । ତୁମ୍ଭମାନଙ୍କର ଏହି ସମୟରେ ଉପସ୍ଥିତ ଧନ୍ୟବାଦ ବା ସମ୍ମିଳନୀର

ନିୟମାବଳୀକୁ ଆଶା କରିବାର ସମୟ ନାହିଁ । ନିୟମ ଶ୍ମଶାନବେଳକୁ କାର୍ଯ୍ୟରେ ଲାଗିବ, କର୍ମବେଳେ ନିୟମର ପ୍ରୟୋଜନ ନାହିଁ। ଆଗେ ତୁମ୍ଭେମାନେ ମନୁଷ୍ୟ ହେବାକୁ ଶିକ୍ଷାକର । ନିୟମ କହେ, ଯାହାର କାର୍ଯ୍ୟ ସେ କରୁ, ଅନ୍ୟ କେହି କରିବ ନାହିଁ । ନିୟମ ନ ଥିଲେ ସମସ୍ତଙ୍କର କାର୍ଯ୍ୟ ସମସ୍ତେ କରିବେ । ତୁମ୍ଭେମାନେ ଉତ୍କଳର ପୂର୍ବଗୌରବ ହୃଦୟରେ ଅଙ୍କିତ କର, ଦେଶ ପାଇଁ କାନ୍ଦିବାକୁ ଶିଖ; ଯେତେବେଳେ ଦେଶଦୁଃଖ ଦେଖି ଆଖିରୁ ପାଣି ବାହାରିବ ତେତେବେଳେ ନିୟମର ପ୍ରୟୋଜନୀୟତା ରହିବ ନାହିଁ। ଜୀବନର ପ୍ରଧାନ ବ୍ରତ କର, ''ମୁଁ ଜନ୍ମ ହେଲାବେଳେ ଦେଶର ଅବସ୍ଥା ଯାହା ଥିଲା, ମରିଲାବେଳେ ତାହାଠାରୁ ଉନ୍ନତ ଦେଖିଯିବ।'' ଆଜିଠାରୁ ପ୍ରତିଜ୍ଞା କର ତୁମ୍ଭେମାନେ ସମ୍ମିଳନୀର ଗୋଟିଏ ଗୋଟିଏ ସୁଦୃଢ଼ ସ୍ତମ୍ଭସ୍ୱରୂପ ହେବ; ସମ୍ମିଳନୀକୁ କାନ୍ଧରେ ଘେନି ବୁଲିବ । ପ୍ରତିଜ୍ଞା ଆଜି କର କାରଣ ବୟସ ହେଲେ ସୁଖ ଓ ଭୋଗ ମଧ୍ୟରେ କକ୍ଷଭ୍ରଷ୍ଟ ହୋଇଯିବ । ପିଲାଦିନରୁ ଆତ୍ମତ୍ୟାଗ କରିବାକୁ ଶିକ୍ଷା କର । ଏହି ଶିକ୍ଷା ଜୀବନର ପ୍ରଧାନ ଶିକ୍ଷା ।

***

## ୧୪

## ଅଷ୍ଟମ ଅଧିବେଶନର ଦ୍ୱିତୀୟ ପ୍ରସ୍ତାବର ପ୍ରସ୍ତାବକ ଭାବରେ ପ୍ରଦତ୍ତ ଇଂରାଜୀ ଅଭିଭାଷଣ ପୂର୍ବରୁ ଓଡ଼ିଆରେ ଦିଆଯାଇଥିବା ସୂଚନା

ସଭାପତି ମହାଶୟ ଓ ଭାଇମାନେ !

ବର୍ତ୍ତମାନ ମୁଁ ଏଠାରେ ଠିଆ ହେବାର ପାଞ୍ଚମିନିଟ୍ ପୂର୍ବରୁ ସେକ୍ରେଟରୀ ମହାଶୟ [ଚିକିଟିର ରାଜା] କହିଲେ ଯେ, ମୋତେ ଇଂରାଜୀରେ କହିବାକୁ ହେବ । ତଦନୁସାରେ ମୁଁ ମୋର ବକ୍ତବ୍ୟ ଇଂରାଜୀରେ ଆପଣମାନଙ୍କୁ ଜଣାଇବି ।

***

## ୧୫

## ଅଷ୍ଟମ ଅଧିବେଶନର ଚତୁର୍ଥ ପ୍ରସ୍ତାବର ପ୍ରସ୍ତାବକ ଭାବରେ ପ୍ରଦତ୍ତ ବକ୍ତୃତା

ଭାଇମାନେ ! ମୋ ଉପରେ ଆପଣମାନେ ଏହି ଭାର ଦେଇଅଛନ୍ତି ଯେ ମୁଁ ଆପଣମାନଙ୍କ ନିକଟରେ ଆଗାମୀ ବର୍ଷରେ ଏ ସମ୍ମିଳନୀର କାର୍ଯ୍ୟ ଯେଉଁମାନେ କରିବେ, ସେମାନଙ୍କର ନାମ ପଢ଼ି କରି ଶୁଣାଇବି । ମୋତେ କ୍ଷମା କରିବେ । ମୁଁ

ବିଶ୍ୱାସ କରେ, ଏ ପର୍ଯ୍ୟନ୍ତ ଆମ୍ଭମାନଙ୍କ ମଧ୍ୟରେ ସମ୍ମିଳନୀର ପ୍ରକୃତ ଅର୍ଥ ଅନେକେ ଗ୍ରହଣ କରି ପାରି ନାହାନ୍ତି । ଯେଉଁମାନେ ଏ ବିଷୟରେ ଅଜ୍ଞ, ସେମାନଙ୍କ ମଧ୍ୟରେ ମୁଁ ପ୍ରଥମ । ସମ୍ମିଳନୀ କାର୍ଯ୍ୟ କି ଉପାୟରେ କରିବାକୁ ହେବ ଓ ତହିଁର ପରିଣାମ କଣ ହେବ, ତାହା ମୁଁ ସମସ୍ତଙ୍କ ଅପେକ୍ଷା କମ ଜାଣେ ।

ସମ୍ମିଳନୀର ପ୍ରଥମାବସ୍ଥାରେ ସମ୍ମିଳନୀ ସହିତ ମୋର କିଛି ସମ୍ପର୍କ ଥିଲା । ନାନା ପ୍ରକାର ଆଶା ମନରେ ଉଦିତ ହୋଇଥିଲା, କିନ୍ତୁ ପରିପୂର୍ଣ୍ଣ ହୋଇ ନାହିଁ । ସୁତରାଂ ମୁଁ ସମ୍ମିଳନୀ ବିଷୟରେ ଅତି ଅଜ୍ଞ । କିନ୍ତୁ ଏହି ପର୍ଯ୍ୟନ୍ତ ବୁଝିଅଛି ଯେ ସମ୍ମିଳନୀ ଜାତିର ସଭା ଓ ମନୁଷ୍ୟ ପ୍ରାଣରେ ଜାତୀୟ ଜୀବନ ଉଦ୍ରେକ କରିବା ଏହାର ଉଦ୍ଦେଶ୍ୟ । ପ୍ରତ୍ୟେକଙ୍କର ଦୁଇ ଗୋଟି ଜୀବନ । ୧ - ବ୍ୟକ୍ତିଗତ ଜୀବନ, ୨ - ଜାତୀୟଜୀବନ । ମୁଁ ଖାଉଛି, ପିନ୍ଧୁଛି, ଅର୍ଥ ଉପାର୍ଜ୍ଜନ କରୁଛି, ମୋ ପିଲା ବଡ଼ଲୋକ ହେବ; ଏ ଇଚ୍ଛା ବ୍ୟକ୍ତିଗତ ଜୀବନର ଇଚ୍ଛା । ମାତ୍ର ଜାତୀୟ ଜୀବନ ତାହା ନୁହେଁ । ଉଦାହରଣ ଦିଏ- ଯେବେ ଜଣେ କହେ ଓଡ଼ିଆଙ୍କୁ ମାର, ତେବେ ସମସ୍ତଙ୍କ ରକ୍ତ ଗରମ ହେବ । ଏଥିରୁ ଜାତୀୟ ଜୀବନ ଅଛି[ର] ପରିଚୟ ମିଳିଲା । କିନ୍ତୁ ଆମ୍ଭମାନଙ୍କର ଜାତୀୟ ଜୀବନ ବଡ଼ ଶିଥିଳ । ତାକୁ ଉତ୍ତେଜିତ କରି ବ୍ୟକ୍ତିଗତ ଜୀବନ ପରି ବଳବାନ୍ କରିବାକୁ ହେବ, ଏହା ହିଁ ସମ୍ମିଳନୀର ଉଦ୍ଦେଶ୍ୟ ।

ମୁଁ ଓଡ଼ିଆ, ଓଡ଼ିଶାରେ ଜନ୍ମଗ୍ରହଣ କରିଅଛି ଏବଂ ବାସ କରୁଅଛି । ଉତ୍କଳ ମାତାଙ୍କ କୋଳରେ ମୋର ଅସ୍ଥି ମାଂସ ରହିବ । ଯେଉଁମାନେ କୀର୍ତ୍ତି କରି ଯାଇଅଛନ୍ତି, ସେମାନେ ମୋର ପୂର୍ବପୁରୁଷ । ତାଙ୍କର କୀର୍ତ୍ତିରକ୍ଷାର ଭାର ମୋ ଉପରେ ନ୍ୟସ୍ତ । ପ୍ରତ୍ୟେକ ଲୋକମନରେ ଏହିପରି ଭାବ ସଞ୍ଚାର କରିବା ସମ୍ମିଳନୀର ଉଦ୍ଦେଶ୍ୟ । ବ୍ୟକ୍ତିଗତ ଜୀବନ ସ୍ୱାର୍ଥପରତା ପରିପୂର୍ଣ୍ଣ, ମାତ୍ର ଜାତୀୟଜୀବନରେ ସ୍ୱାର୍ଥ ନାହିଁ । ମୁଁ ବଡ଼ଲୋକ ହେବି, ମୋ ପୁଅ ସୁଖରେ ଜୀବନ ଯାପନ କରିବ, ଏହା ବ୍ୟକ୍ତିଗତ ଜୀବନ । ମୁଁ ମରିବି, ମୋତେ କେହି ଚିହ୍ନିବେ ନାହିଁ, ମୋର ମୃତ୍ୟୁ ପରେ ମୋର ନାମ ଲେଶ ମାତ୍ର ରହିବ ନାହିଁ, ମୋର ଶରୀରର ବଳ, ମୋର ଶରୀରର ରକ୍ତ ଜାତିକୁ ବଳବାନ୍ କରିବ, ଏହା ହିଁ ଜାତୀୟଜୀବନ । ସମ୍ମିଳନୀ ଜାତୀୟଜୀବନର ସନ୍ତାନସ୍ୱରୂପ । ମନେ କରନ୍ତୁ, ଉପେନ୍ଦ୍ରଭଞ୍ଜ ଏହିଠାରେ ଜନ୍ମଗ୍ରହଣ କରିଥିଲେ । କୋଟି କୋଟି ଓଡ଼ିଆ ତାଙ୍କୁ ଆମ ଜାତିର କବି ବୋଲି କହୁଅଛନ୍ତି । କିନ୍ତୁ ଉପେନ୍ଦ୍ରଙ୍କ ପିତା ମାତାଙ୍କର ନାମ, ତାଙ୍କ ବାଲ୍ୟକାଳର କଥା ଅଧିକାଂଶ କହିପାରିବେ ନାହିଁ । ମାତ୍ର ସମସ୍ତେ କହନ୍ତି, ଆମ୍ଭର ଉପେନ୍ଦ୍ର ଭଞ୍ଜ । ମୁଁ ପ୍ରଶ୍ନ କରେଁ, ''ତୁମ୍ଭର କିପରି ହେଲେ ?'' ଜାତି କହିଲା– ଜାତିର ଯୋଗ୍ୟ ସୁସନ୍ତାନ ଜାତିର ଏବଂ କୁସନ୍ତାନ ବାପମାଆଙ୍କର । ଏହା ଜାତିର ବିଚାର ଅଟେ । ସମ୍ମିଳନୀ ଜାତୀୟ ଅନୁଷ୍ଠାନ, ଏହାକୁ ନେଇ ଯେ କାର୍ଯ୍ୟ କରିବ, ସେ ଜାତି

ନିୟମାବଳୀକୁ ଆଶା କରିବାର ସମୟ ନାହିଁ । ନିୟମ ଶ୍ମଶାନବେଳକୁ କାର୍ଯ୍ୟରେ ଲାଗିବ, କର୍ମବେଳେ ନିୟମର ପ୍ରୟୋଜନ ନାହିଁ । ଆଗେ ତୁମ୍ଭେମାନେ ମନୁଷ୍ୟ ହେବାକୁ ଶିକ୍ଷାକର । ନିୟମ କହେ, ଯାହାର କାର୍ଯ୍ୟ ସେ କରୁ, ଅନ୍ୟ କେହି କରିବ ନାହିଁ । ନିୟମ ନ ଥିଲେ ସମସ୍ତଙ୍କର କାର୍ଯ୍ୟ ସମସ୍ତେ କରିବେ । ତୁମ୍ଭେମାନେ ଉତ୍କଳର ପୂର୍ବଗୌରବ ହୃଦୟରେ ଅଙ୍କିତ କର, ଦେଶ ପାଇଁ କାନ୍ଦିବାକୁ ଶିଖ; ଯେତେବେଳେ ଦେଶଦୁଃଖ ଦେଖି ଆଖିରୁ ପାଣି ବାହାରିବ ତେତେବେଳେ ନିୟମର ପ୍ରୟୋଜନୀୟତା ରହିବ ନାହିଁ । ଜୀବନର ପ୍ରଧାନ ବ୍ରତ କର, ''ମୁଁ ଜନ୍ମ ହେଲାବେଳେ ଦେଶର ଅବସ୍ଥା ଯାହା ଥିଲା, ମରିଲାବେଳେ ତାହାଠାରୁ ଉନ୍ନତ ଦେଖିଯିବ ।'' ଆଜିଠାରୁ ପ୍ରତିଜ୍ଞା କର ତୁମ୍ଭେମାନେ ସମ୍ମିଳନୀର ଗୋଟିଏ ଗୋଟିଏ ସୁଦୃଢ଼ ସ୍ତମ୍ଭସ୍ୱରୂପ ହେବ; ସମ୍ମିଳନୀକୁ କାନ୍ଧରେ ଘେନି ବୁଲିବ । ପ୍ରତିଜ୍ଞା ଆଜି କର କାରଣ ବୟସ ହେଲେ ସୁଖ ଓ ଭୋଗ ମଧ୍ୟରେ କକ୍ଷଭ୍ରଷ୍ଟ ହୋଇଯିବ । ପିଲାଦିନରୁ ଆତ୍ମତ୍ୟାଗ କରିବାକୁ ଶିକ୍ଷା କର । ଏହି ଶିକ୍ଷା ଜୀବନର ପ୍ରଧାନ ଶିକ୍ଷା ।

***

## ୧୪

## ଅଷ୍ଟମ ଅଧିବେଶନର ଦ୍ୱିତୀୟ ପ୍ରସ୍ତାବର ପ୍ରସ୍ତାବକ ଭାବରେ ପ୍ରଦତ୍ତ ଇଂରାଜୀ ଅଭିଭାଷଣ ପୂର୍ବରୁ ଓଡ଼ିଆରେ ଦିଆଯାଇଥିବା ସୂଚନା

ସଭାପତି ମହାଶୟ ଓ ଭାଇମାନେ !

ବର୍ତ୍ତମାନ ମୁଁ ଏଠାରେ ଠିଆ ହେବାର ପାଞ୍ଚମିନିଟ୍ ପୂର୍ବରୁ ସେକ୍ରେଟରୀ ମହାଶୟ [ଚିକିଟିର ରାଜା] କହିଲେ ଯେ, ମୋତେ ଇଂରାଜୀରେ କହିବାକୁ ହେବ । ତଦନୁସାରେ ମୁଁ ମୋର ବକ୍ତବ୍ୟ ଇଂରାଜୀରେ ଆପଣମାନଙ୍କୁ ଜଣାଇବି ।

***

## ୧୫

## ଅଷ୍ଟମ ଅଧିବେଶନର ଚତୁର୍ଥ ପ୍ରସ୍ତାବର ପ୍ରସ୍ତାବକ ଭାବରେ ପ୍ରଦତ୍ତ ବକ୍ତୃତା

ଭାଇମାନେ ! ମୋ ଉପରେ ଆପଣମାନେ ଏହି ଭାର ଦେଇଅଛନ୍ତି ଯେ ମୁଁ ଆପଣମାନଙ୍କ ନିକଟରେ ଆଗାମୀ ବର୍ଷରେ ଏ ସମ୍ମିଳନୀର କାର୍ଯ୍ୟ ଯେଉଁମାନେ କରିବେ, ସେମାନଙ୍କର ନାମ ପଢ଼ି କରି ଶୁଣାଇବି । ମୋତେ କ୍ଷମା କରିବେ । ମୁଁ

ନିକଟରେ ଯାଇ ପହୁଞ୍ଚିବ । ଟଙ୍କା ମାଗିବ, କେହି ଦେବେ ନାହିଁ । ଉପେନ୍ଦ୍ରଙ୍କୁ ପଢ଼ାଇବାକୁ ଟଙ୍କା ମାଗିଥିଲେ କେହି ଦେଇ ନ ଥାନ୍ତେ । କାଲି ରିପୋର୍ଟରେ ପଢ଼ିଲୁଁ, କେହି ଟଙ୍କା ଦେଲେ ନାହିଁ । ସମ୍ମିଳନୀ ଜାତିର ପୁତ୍ର ହୋଇ ନାହିଁ । ଯୁବକ ସମିତିଙ୍କ ପତ୍ରରୁ ତାହା ପ୍ରକାଶ । ଜାତିର ସମ୍ମିଳନୀ ହେଲେ ବ୍ୟକ୍ତିର ନାମ, ମଧୁସୂଦନର ନାମ ହୁଅନ୍ତା ନାହିଁ ।

ବର୍ତ୍ତମାନ ଏ ସମ୍ମିଳନୀର କାର୍ଯ୍ୟ ଯେ ଚଳାଇବେ, ତାଙ୍କର ଏ ସମ୍ମିଳନୀକୁ ନିଜର ସନ୍ତାନତୁଲ୍ୟ ଜ୍ଞାନ କରିବା ଉଚିତ । ମୁଁ ବଢ଼ାଇବି, ମୁଁ ଲାଳନପାଳନ କରିବି, ଯୋଗ୍ୟ ହେଲେ ଜାତି ମୋ କୋଳରୁ କାଢ଼ି ନେବ । ଯେପରି ଚୈତନ୍ୟଙ୍କୁ ତାଙ୍କର ପିତା ମାତା ନିଜର ସନ୍ତାନ ପରି ପାଳିଥିଲେ । କିନ୍ତୁ ବର୍ତ୍ତମାନ ତାଙ୍କ ପିତା ମାତାଙ୍କୁ କେହି ଜାଣନ୍ତି ନାହିଁ, ମାତ୍ର ଚୈତନ୍ୟ ବର୍ତ୍ତମାନ ଲକ୍ଷ ଲକ୍ଷଙ୍କର । ଇତିହାସ ପାଠ କର, ସବୁ ଦେଶର ଏହି ନିୟମ ।

ମିଲଟନ ଶେଷ କାଳକୁ ଅନାହାରରେ ପ୍ରାଣତ୍ୟାଗ କଲେ । ସେକ୍‌ସପୀୟର ଥିଏଟରଯାତ୍ରିଙ୍କ ଘୋଡ଼ା ଧରି ପେଟ ପାଳୁଥିଲେ – ବର୍ତ୍ତମାନ ବିଲାତର ଲୋକେ କହନ୍ତି ଆମ୍ଭର ମିଲଟନ ଏବଂ ଆମ୍ଭର ସେକ୍‌ସପୀୟର । କାଳିଦାସ ପାଲିଙ୍କି ବୋହୁଥିଲେ, ତେତେବେଳେ କେହି କହୁ ନଥିଲେ, ମାତ୍ର ବର୍ତ୍ତମାନ କହୁଅଛନ୍ତି, ଆମ୍ଭର କାଳିଦାସ । ଏହା ଜାତିର ରୀତି ଅଟେ । ଏ ପ୍ରସଙ୍ଗ କହିବା ପୂର୍ବରୁ ମୁଁ କହେଁ, ଯେ ସ୍ୱାର୍ଥତ୍ୟାଗ କରିବାକୁ ପ୍ରସ୍ତୁତ ନୁହେ, ସେ ବ୍ୟକ୍ତି ସମ୍ମିଳନୀରୁ ନାମ କଟାଇ ଚାଲିଯିବା ଉଚିତ । ଭାର ନେଇ ଏ କଥା କହିଲେ ଚଳିବ ନାହିଁ । ଯେତିକି ପାରିବ ସେତିକି ଭାର ନିଅ ।

ମୁଁ ଆହ୍ଲାଦର ସହିତ ଜଣାଉଅଛି ଯେ, ଉତ୍କଳ-ସୁପୁତ୍ର ଚିକିଟି ରାଜାଙ୍କୁ ଆମ୍ଭେମାନେ ପାଇଅଛୁଁ । ସେ ଆଗାମୀ ବର୍ଷର ସମସ୍ତ ଖରଚ ଦେବାକୁ ପ୍ରସ୍ତୁତ । ଯେ ପୁଅକୁ ଖୁଆଇ ପିଆଇ ଉତ୍କଳମାତାଙ୍କ କୋଳରେ ଦେବ, ସେ ସୁପୁତ୍ର ।

ସମ୍ମିଳନୀର ଅର୍ଥ ମୁଁ ବୁଝିପାରି ନାହିଁ ଏବଂ ଅନେକେ ମଧ୍ୟ ବୁଝି ନାହାନ୍ତି । Insurance Co, କରଣସଭା,ବ୍ରାହ୍ମଣସଭା ଭଳି ଏହା ଗୋଟିଏ ସଭା ନୁହେଁ । କେତେକ ମହାଜନ ତାଙ୍କର ସ୍ୱାର୍ଥରକ୍ଷା ପାଇଁ ଗୋଟିଏ ସଭା ଗଠନ କଲେ । କରଣମାନେ, ବ୍ରାହ୍ମଣମାନେ କଲେ । ସମ୍ମିଳନୀର ସଂଖ୍ୟା ବା ସୀମା ନାହିଁ । ଅନ୍ୟ ସଭାର ସଭ୍ୟ ତାଲିକା ଅଛି, ମାତ୍ର ଉତ୍କଳ ସମ୍ମିଳନୀର ସଭ୍ୟମାନଙ୍କର ସଂଖ୍ୟା ନାହିଁ କି ତାଲିକା ନାହିଁ । ସମସ୍ତ ଓଡ଼ିଆ ଜାତି ଏହାର ସଭ୍ୟ । ଶିଶୁଠାରୁ ଭବିଷ୍ୟତ୍ ବଂଶଧର ଓଡ଼ିଆମାନେ ସମସ୍ତେ ଏଥିରେ ସଭ୍ୟ । ପ୍ରଥମେ ଏ ଭୁଲ୍ ଯିବା ଉଚିତ ଯେ, ଏ ସଭା ନୁହେ କିମ୍ବା କମ୍ପାନୀ ନୁହେ । ଏ ଜାତିର ଅଟେ । ଯାହା ହୋଇଅଛି, ସେଥିରେ ଜାତିର ଦାବି ଅଛି । ପୁଣି ଯାହା ହେବ, ସେଥିରେ ସୁଦ୍ଧା ଦାବି ହେବ । ଏହି ପ୍ରଭେଦ ମନେ ରଖିଲେ ଅନେକ ଗୋଳମାଳ ତୁଟିଯିବ ।

ମାଳତୀ ଲତା ଆମ୍ବ ଗଛରେ ଉଠେ, ମୋଟ ହୁଏ । ଶେଷରେ ଆମ୍ବ ଗଛକୁ ମାରି ପକାଏ । ଆମ୍ବ ଗଛର ଫଳ ଅନେକ ଲୋକ ଖାଉଥିଲେ । ଆମ୍ବ କେବଳ କମ ଲୋକ ଖାଉଥିଲେ । ମାଳତୀର ସୁଗନ୍ଧ ପୁଷ୍ପ ସହସ୍ର ଲୋକଙ୍କୁ ମୋହିତ କରୁଅଛି । ଜାତୀୟ ଜୀବନ ଯେତେବେଳେ ବ୍ୟକ୍ତିକୁ ମାଳତୀଲତା ପରି ବେଢ଼ି ଧରିବ, ସେତେବେଳେ ସେ ମରିବ, କିନ୍ତୁ ମାଳତୀର ସୁଗନ୍ଧ ଚାରିଆଡ଼େ ମହକିବ ।

ନିଜ ସକାଶେ ଜୀବନ ଧାରଣ କରିବା ମନୁଷ୍ୟ ଜୀବନର କଦାପି ଉଦ୍ଦେଶ୍ୟ ନୁହେଁ । ଈଶ୍ୱର ଏ ଉଦ୍ଦେଶ୍ୟରେ କାହାକୁ ସୃଷ୍ଟି କରି ନାହାନ୍ତି । ପଶୁ ଓ ମନୁଷ୍ୟର ପ୍ରଭେଦ କ'ଣ ? ପଶୁ ତାହାର ନିଜ ପାଇଁ ସବୁ କରେ । ବ୍ୟକ୍ତିଗତ ଜୀବନ ନ ମଲେ ଜାତୀୟଜୀବନ ହେବ ନାହିଁ । ମଞ୍ଜି ବା ଟାକୁଆ ପୋତିଲେ ଆଗେ ଟାକୁଆ ପଚିଲେ ପଛେ ଗଛ ଉଠିବ, ନ ପଚିବା ପର୍ଯ୍ୟନ୍ତ ଗଛ ଉଠିବ ନାହିଁ । ସେହିପରି ଯହିଁରୁ ଜାତୀୟଜୀବନ ଉଠିବ, ସେ ମରିବ, ସେ ପଚିବ । ଗୋଟିଏ ଟାକୁଆ ମଲେ ଲକ୍ଷେ ଆମ୍ବ ଫଳିବ । ଆମ୍ବର ଜାତି ରକ୍ଷା ହେଲା, କିନ୍ତୁ ପ୍ରଥମ ଟାକୁଆ ମଲା ।

ମୁଁ ବିଶ୍ୱାସ କରେ ନାହିଁ ଯେ, ଈଶ୍ୱରଙ୍କ ଜଗତରେ କେହି ମନୁଷ୍ୟ ସ୍ୱାର୍ଥପର ହୋଇପାରେ । ଯେ ସ୍ୱାର୍ଥପର, ସେ ଈଶ୍ୱରଙ୍କ ଆଜ୍ଞା ଲଙ୍ଘନ କରିଅଛି । ଈଶ୍ୱର କାହାରିକୁ ସ୍ୱାର୍ଥପର ହେବାକୁ ଦିଅନ୍ତି ନାହିଁ । ଅତି କୃପଣକୁ ଲୋକେ ସ୍ୱାର୍ଥପର କହନ୍ତି, ମାତ୍ର ମୁଁ କହେ ସେ ସ୍ୱାର୍ଥହୀନ । ସେ ନିଜ ପାଇଁ ରଖୁନାହିଁ, ରଖୁଅଛି କେବଳ ପର ପାଇଁ । ଈଶ୍ୱର କହନ୍ତି, ତୁ ଖରଚ କଲୁ ନାହିଁ, ତୋ ପୁଅ ନାତି ଖରଚ କରିବେ । ଘଣାରେ ବଳଦ ବୁଲୁଛି, ମାତ୍ର ତେଲ ଲଗାଏ ଆଉ ଜଣେ । ଅତଏବ ମୁଁ ଏ ପ୍ରସ୍ତାବ ଉପସ୍ଥାପିତ କରୁଅଛି ।

***

## ୧୬

## ନବମ ଅଧିବେଶନର ସଭାପତି ଅଭିଭାଷଣ (ମୌଖିକ)

ପ୍ରେମଭାଜନ, ଶ୍ରଦ୍ଧାଭାଜନ, ଉତ୍କଳର ସନ୍ତାନସନ୍ତତିବର୍ଗ !

ସଭାପତିଙ୍କର ପୂର୍ବ ପ୍ରଥା ଅନୁସାରେ ବକ୍ତୃତାକରିବା ଆବଶ୍ୟକ ଏବଂ ପୂର୍ବ ପ୍ରଥାନୁସାରେ ସେ ବକ୍ତୃତା ପଶ୍ଚାତ୍ ଛାପା ହୁଏ । ମୋହର ବକ୍ତୃତା ଲେଖିବାର କ୍ଷମତା ବା ଅଭ୍ୟାସ ନାହିଁ । କିନ୍ତୁ ବର୍ତ୍ତମାନ ଲେଖିବାକୁ ହେବ ବୋଲି କେହି କେହି ଭାଇ ବାଧ କରିବାରୁ ଲେଖୁଅଛି । ଏହା ମୋର ପ୍ରିୟବନ୍ଧୁ ଶ୍ରୀମାନ୍ ପାରେଶ୍ୱର ମହାନ୍ତି ଲେଖିଅଛନ୍ତି । ଗ୍ରାମୋଫୋନ୍ ଯନ୍ତ୍ର ପରି ମୁଁ ପୁଣି ଏହା ବାହାରକରି ପାରିବି ନାହିଁ । ଅତଏବ ଯଦି

ଖବର କାଗଜମାନଙ୍କର ଛାପା ଏବଂ ମୁଁ କହିବା କଥାରେ କିଛି ପ୍ରଭେଦ ଘଟେ ତାହାହେଲେ ମତେ କ୍ଷମା କରିବେ । କାରଣ, ମୁଁ ତ ଜୀବିତ ମନୁଷ୍ୟ, ଗ୍ରାମୋଫୋନ୍ ଯନ୍ତ୍ର ନୁହେଁ । କେଉଁ କାରଣରୁ ଏବଂ କି ଅବସ୍ଥାରେ ମୁଁ ଆପଣମାନଙ୍କ ନିକଟରେ ଉପସ୍ଥିତ ସେ ସମ୍ବନ୍ଧେ ଗୋଟିଏ ଦୁଇଗୋଟି କଥା କହିବି । ଦିନେ ମୟୂରଭଞ୍ଜ ମହାରାଜା ଏ ଆସନ ଅଧିକାର କରିଥିଲେ । ବିଦ୍ୟା, ଗୁଣ, ଚରିତ୍ର ଓ କ୍ଷମତାରେ ସେ ସୁଖ୍ୟାତି ଲାଭ କରିଥିଲେ ଏବଂ ଓଡ଼ିଶାରେ ଅଦ୍ୱିତୀୟ ଥିଲେ । ଜଣେ ଲେଫ୍‌ଟନେଣ୍ଟ ଗଭର୍ଣ୍ଣରଙ୍କ ସଙ୍ଗେ ସେ କଥାଭାଷା ହେଲାବେଳେ ସାହେବ ଏତେଦୂର ଖୁସି ହୋଇଥିଲେ ଯେ ସେ ମତେ କହିଥିଲେ 'ରାଜାମାନଙ୍କ ମଧ୍ୟରେ ଏପରି ସୁଶିକ୍ଷିତ ଲୋକ ଅଛନ୍ତି, ପୂର୍ବେ ମୋହର ଏ ଧାରଣା ନ ଥିଲା ।' ସଭାପତି ଅଭାବରୁ ଗତବର୍ଷ ସମ୍ମିଳନୀ ହୋଇ ପାରିନାହିଁ । ଏଥିରୁ ଜଣାଯାଏ ସଭାପତିର ସ୍ଥାନ ଆଗେ ମାନ୍ୟର ସ୍ଥାନ ଥିଲା, ବର୍ତ୍ତମାନ ଅପମାନର ସ୍ଥାନ ହୋଇଅଛି, ତେଣୁ କେହି ସଭାପତି ହେବାକୁ ଇଚ୍ଛୁକ ନୁହନ୍ତି । ଏହି ଅଭାବ ଯୋଗେ କେବଳ କର୍ତ୍ତବ୍ୟ ଅନୁରୋଧରେ ଏ ଭାର ଗ୍ରହଣ କରି ଆପଣମାନଙ୍କ ସମକ୍ଷରେ ଠିଆ ହୋଇଅଛି ।

ସମ୍ମିଳନୀର ପୂର୍ବ ଅଧିବେଶନମାନଙ୍କରେ ଅନେକ ପ୍ରସ୍ତାବ ହୋଇଥିଲା । ସେ ସବୁ ଆଦୌ କାର୍ଯ୍ୟରେ ପରିଣତ ହୋଇନାହିଁ ବୋଲି ମୁଁ ଶୁଣିଅଛି । ଏହା ସତ୍ୟ କି ମିଥ୍ୟା ମୁଁ ଜାଣେନାହିଁ । ଯଦି କାର୍ଯ୍ୟରେ ପରିଣତ ହୋଇଥାଏ ତେବେ ଉତ୍କଳର ଉନ୍ନତି ହୋଇଅଛି, ସନ୍ଦେହ ନାହିଁ । ଯଦି ହୋଇ ନ ଥାଏ ତେବେ ମୁଁ ଆଉ ବିଶେଷ କିଛି ଆଶା ଦେଖୁନାହିଁ । ରାଜା, ମହାରାଜା, ଧନୀ ଓ ଜ୍ଞାନୀମାନଙ୍କ ଦ୍ୱାରା ପରିପୋଷିତ ଓ ସମର୍ଥିତ ବିଷୟମାନ ଯଦି କାର୍ଯ୍ୟରେ ପରିଣତ ହୋଇ ନ ଥାଏ ତେବେ ମୋଦ୍ୱାରା ବା କି କାର୍ଯ୍ୟ ହୋଇପାରେ ? ଉତ୍କଳ ସମ୍ମିଳନୀର ଅର୍ଥ କଣ ? ପୃଥିବୀରେ ନାନା ପ୍ରକାର ମିଳନ ହୁଏ – ଜଡ଼ ପଦାର୍ଥର ମିଳନ, ପଶୁପକ୍ଷୀମାନଙ୍କର ମିଳନ, ବୃକ୍ଷମାନଙ୍କର ମିଳନ ଓ ମନୁଷ୍ୟମାନଙ୍କର ମିଳନ ହୁଏ । ବଢ଼ାଇ ଦୁଇଖଣ୍ଡ କାଷ୍ଠ ଏକତ୍ରିତ କରି ଦୁଇଟି ଜଡ଼ ପଦାର୍ଥର ମିଳନ କରାଏ । ଏକ ଗୋଷ୍ଠରେ ପଶୁମାନେ ଏକତ୍ରିତ ହେଲେ ସେମାନଙ୍କର ମିଳନ ହୁଏ । ବରଗଛ ତା ପାଖ ଗଛକୁ କ୍ରୋଡ଼ସ୍ଥ କରିନିଏ ଏବଂ ଗୋଲାପ ଗଛର ମିଳନରେ ନାନାବର୍ଣ୍ଣର ଫୁଲ ଫୁଟିଥାଏ । କିନ୍ତୁ ମିଳନ ଓ ସମ୍ମିଳନ ଏକଥା ଏକନୁହେଁ । ରାସାୟନିକ Compundର ଗୁଣ element ଠାରୁ ସମ୍ପୂର୍ଣ୍ଣ ରୂପେ ପୃଥକ; ବ୍ୟକ୍ତିଗତ ଜୀବନ ଜାତୀୟ ଜୀବନରେ ନ ମିଳିବା ଯାଏ ସମ୍ମିଳନ ହୁଏନାହିଁ । ଯେଉଁମାନେ ଜାତିର ଉନ୍ନତି ଇଚ୍ଛା କରନ୍ତି ସେମାନେ ପ୍ରଥମେ ଆପଣାକୁ ପରୀକ୍ଷା କରି ଦେଖିବା ଉଚିତ ଯେ ହୃଦୟରେ ସେମାନଙ୍କର ଜାତୀୟ ଭାବ ପୂର୍ଣ୍ଣ ଭାବରେ ଅଛି କି ନାହିଁ । ଏହି ପରୀକ୍ଷା ବଡ଼ କଠିନ କାର୍ଯ୍ୟ । ଜାତୀୟ ଜୀବନର ସମ୍ପର୍କ ଆତ୍ମା ସଙ୍ଗରେ ଏବଂ ବ୍ୟକ୍ତିଗତ

ଜଣଙ୍କର ନାମ ଜଗଦବିଖ୍ୟାତ । ସେ ନାମ 'ରାମ' ନାମ । ମହାରାଜାଧିରାଜ ଆଦି ଶବ୍ଦ ସେ ନାମ ସହିତ କେହି ସଂଯୋଗ କରେନାହିଁ । ସୀତା କିମ୍ବା ସାବିତ୍ରୀ ରାଣୀକି ମହାରାଣୀ ବୋଲି ବିଖ୍ୟାତ ନୁହନ୍ତି । ପୃଥିବୀରେ ଅନେକ ମୁସଲମାନ ବାଦ୍‌ଶା ନାନା ଖେତାବ୍ ଓ ପଦ ଧାରଣକରି ରାଜତ୍ୱ କରିଅଛନ୍ତି । ଇଉରୋପରେ ମଧ୍ୟ ଅନେକ ଖ୍ରୀଷ୍ଟଧର୍ମାବଲମ୍ବୀ ରାଜାମାନେ ଲମ୍ବା ଲମ୍ବା ଖେତାବ୍ ଘେନି ବର୍ତ୍ତମାନ ରାଜତ୍ୱ କରିଅଛନ୍ତି । କିନ୍ତୁ ମହମ୍ମଦ ଓ ଯୀଶୁଖ୍ରୀଷ୍ଟଙ୍କର କୌଣସି ଖେତାବ୍ ନାହିଁ । ପୁରାତନ କଥା ଛାଡ଼ିଦେଲେ ଅଧୁନାତନ ଇତିହାସରେ ମଧ୍ୟ ଏପ୍ରକାର ଦେଖାଯାଏ । ରାମମୋହନ ରାୟ ଜୀବିତଥିବା ସମୟରେ ''ରାଜା'' ବୋଲି ପରିଚିତ ଥିଲେ । ବର୍ତ୍ତମାନ ରାମମୋହନ ରାୟବୋଲି ପରିଚିତ । ସମାଜ ଓ ସଂସାର ବ୍ୟକ୍ତିଗତ ଜୀବନର ଯେପ୍ରକାର ପୁରସ୍କାର ଦିଅନ୍ତି ଜାତୀୟ ଜୀବନର ପୁରସ୍କାର ତଦ୍‌ବିପରୀତ । ଯଦି ଜାତୀୟ ଉନ୍ନତି କାର୍ଯ୍ୟରେ ପ୍ରବୃତ୍ତ ହେବାକୁ ଇଚ୍ଛାକର [ତେବେ]ସାଂସାରିକ ପୁରସ୍କାର ଆଶା ପରିତ୍ୟାଗ କର – ''ନାମ ରଖିବି'' ଏପ୍ରକାର ଅଭିଳାଷକୁ ମନରେ ସ୍ଥାନ ଦିଅନାହିଁ । ଯେଉଁମାନେ ନାମରଖିଯିବାର ଆଶା କରନ୍ତି ମୋ କ୍ଷୁଦ୍ର ବିବେଚନାରେ ସେମାନେ ଅବୋଧ । ଯେଉଁ ବ୍ୟକ୍ତି ନାମ ରଖିଯିବାର ଆଶା କରେ ସେ ଧୀରଭାବରେ ବିବେଚନା କଲେ ଦେଖିବ ସେ ଯେଉଁ ନାମ ଧାରଣ କରିଅଛି ତାହାର ଜନ୍ମପୂର୍ବରୁ ସହସ୍ର ସହସ୍ର ଲୋକ ସେହି ନାମ ଧାରଣ କରିଥିଲେ ଏବଂ ତାହାର ମୃତ୍ୟୁର ପର ସହସ୍ର ସହସ୍ର ଲୋକ ସେହି ନାମ ଧାରଣ କରିବେ । କିନ୍ତୁ ସେ ତାହାର ନାମ ନୁହେଁ । ଅନ୍ୟ ବ୍ୟକ୍ତିଙ୍କର ନାମ । ଆତ୍ମାର ନାମ ନାହିଁ । ତାକୁ ନାମଧରି ଡାକିବା ଅସମ୍ଭବ । ଯଦି ଏ ଜଗତରେ ମୁଁ ଜନ୍ମଗ୍ରହଣ କରିଥିଲି, ଏବଂ  ମୋହର ଅନ୍ତେ ଯଦି ମୋହର ଅସ୍ତିତ୍ୱର କୌଣସି ଚିହ୍ନ ରହେ, ସେହି ଚିହ୍ନ ଅଟ୍ଟାଳିକାରେ କିମ୍ବା କୀର୍ତ୍ତିସ୍ତମ୍ଭରେ ରହିବା ଅସମ୍ଭବ । ଆତ୍ମାର କାର୍ଯ୍ୟ ଚିହ୍ନ ଆତ୍ମାରେ ଦର୍ଶିତ ହେବ ।  ''ମୋହ ଆତ୍ମାର କର୍ତ୍ତବ୍ୟଜ୍ଞାନ ଓ ଜାତୀୟ ଉନ୍ନତିର ଆଶାକୁ ଅନ୍ୟ ଲୋକଙ୍କର ଆତ୍ମା ଗ୍ରହଣ କଲେ ସେହି ପ୍ରକୃତରେ ମୋ ଆତ୍ମାର କୀର୍ତ୍ତିସ୍ତମ୍ଭ ହେବ ।'' ମୁଁ ଏଠାରେ ମୁଁ ଶବ୍ଦ ବ୍ୟବହାର କରିବାର ଉଦ୍ଦେଶ୍ୟ ଏହି । ମୁଁ ଆପଣମାନଙ୍କୁ ଅନୁରୋଧ କରୁଅଛିକି ପ୍ରତ୍ୟେକ ଭାଇ ନିଜ ନିଜ ମନରେ ଆପଣାକୁ ଆପେ ଏହି ଭାବରେ ସମ୍ବୋଧନ କରି ଏ ଗୁରୁତର ବିଷୟ ଚିନ୍ତା କରନ୍ତୁ । ଭାଇମାନେ, ଆପଣମାନଙ୍କ ଅନୁଗ୍ରହରୁ ମୁଁ ଏଠାରେ ବର୍ତ୍ତମାନ ସଭାପତି ସ୍ୱରୂପ ଆପଣମାନଙ୍କ ସମ୍ମୁଖରେ ଦଣ୍ଡାୟମାନ । କିନ୍ତୁ ବର୍ତ୍ତମାନ ମୋହର ବୃଦ୍ଧାବସ୍ଥା । ଗୋଟିଏ ଗୋଡ଼ ଶ୍ମଶାନରେ ଏବଂ ଅନ୍ୟ ଗୋଡ଼ ଜନ ସମାଜରେ । ଏ ବୟସରେ ମୃତ୍ୟୁଶଯ୍ୟା ମାନସିକ ଚିତ୍ରପଟରେ, ଆତ୍ମାର ଚକ୍ଷୁର ସମ୍ମୁଖରେ ସର୍ବଦା ଦୃଶ୍ୟମାନ । ମୁଁ ଓଡ଼ିଶାରେ ଜନ୍ମଗ୍ରହଣ କରିଅଛି ଏବଂ ଜାତିପ୍ରତି ମୋହର କର୍ତ୍ତବ୍ୟ କର୍ମ ଈଶ୍ୱରଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ

ହୋଇଅଛି । ଯେତେବେଳେ ମୃତ୍ୟୁଶଯ୍ୟାରେ ସଂସାର ସହିତ ମୋହର ସମ୍ପର୍କ ଛିନ୍ନ ହେବ ଏବଂ ମୋହର ଆତ୍ମାକୁ ଈଶ୍ୱର ପଚାରିବେ ''ତୁ ତୋହର ଜାତିପ୍ରତି କର୍ତ୍ତବ୍ୟକର୍ମ କି ପ୍ରକାର କରିଅଛୁ'' ତେତେବେଳେ ମୋହର ଆତ୍ମା ଯଦି କହିପାରେ, ଯଥାସାଧ ମୁଁ ମୋହର ଜାତିର ସେବା କରିବାକୁ ଚେଷ୍ଟା କରିଅଛି, ତାହାହେଲେ ଦୀନଦରିଦ୍ର ଅବସ୍ଥାରେ ଏବଂ ଜନଶୂନ୍ୟ ସ୍ଥାନରେ ମୋହର ଶଯ୍ୟା ଥିଲେ ମଧ ମୁଁ ଆପଣାକୁ ସୁଖୀଜ୍ଞାନ କରିବି । ଜଣେ ପାରସ୍ୟ କବି କହିଅଛନ୍ତି କି ଯେତେବେଳେ କର୍ତ୍ତବ୍ୟପରାୟଣ ଆତ୍ମା ଏ ସଂସାର ତ୍ୟାଗ କରିବାକୁ ପ୍ରସ୍ତୁତ ହୁଏ ତେତେବେଳେ ତାହାପକ୍ଷରେ ମୃତ୍ୟୁଶଯ୍ୟା ରାଜସିଂହାସନ ହେଉ ଅବା ପାଉଁଶଗଦା ହେଉ ଏ ଦୁଇରେ କିଛି ପ୍ରଭେଦ ନାହିଁ ।

***

## ୧୮

## ନବମ ଅଧିବେଶନରେ ପ୍ରଥମ ପ୍ରସ୍ତାବ ସମ୍ପର୍କରେ ସଭାପତି ଭାବରେ ମନ୍ତବ୍ୟ

ଯଦି ଏ ପ୍ରସ୍ତାବଟି ସମସ୍ତଙ୍କ ଦ୍ୱାରା ଅନୁମୋଦିତ ହୁଏ, ତେବେ କରତାଳି ଦ୍ୱାରା ଜଣାଇବେ ।

***

## ୧୯

## ନବମ ଅଧିବେଶନରେ ଦ୍ୱିତୀୟ ଦିବସର ପ୍ରାରମ୍ଭରେ ସଭାପତି ଭାବରେ ଅଭିମତ

ଭାଇମାନେ,

କାର୍ଯ୍ୟାରମ୍ଭ ପୂର୍ବରୁ ମୋର କିଛି ବକ୍ତବ୍ୟ ଅଛି । ମୋତେ ଇତିମଧରେ କେହି କେହି ପଚାରିଥିଲେ ସମ୍ମିଳନୀରେ ରାଜନୈତିକ ବିଷୟ ଆଲୋଚିତ ହେବ କି ନାହିଁ ? ତାଙ୍କର ପଚାରିବାର କାରଣ ଏହିଯେ ଯଦି ଏସବୁ ଆଲୋଚିତ ହୁଏ ତେବେ ସେମାନେ ଏଥିରେ ଯୋଗ ଦେଇପାରିବେ ନାହିଁ । ସରକାରୀ କର୍ମଚାରୀମାନଙ୍କ ଛଡ଼ା ଅନ୍ୟାନ୍ୟ ଶିକ୍ଷିତ ଲୋକଙ୍କ ସଂଖ୍ୟା ଅତି ଅଳ୍ପ । ଏଣୁ ଏ ସମ୍ମିଳନୀରେ ରାଜନୈତିକ ବିଷୟର ଆଲୋଚନା ହେଉ ନ ଥିଲା । କିନ୍ତୁ ସମ୍ମିଳନୀ ଇଚ୍ଛାକଲେ ରାଜନୈତିକ ବିଷୟର ଆଲୋଚନା କରିପାରିବେ ବୋଲି ଗତବର୍ଷ ରିପୋର୍ଟରେ ଲେଖାଅଛି । ମାତ୍ର ଗତ ଅଧିବେଶନରେ ସମ୍ମିଳନୀର ପୂର୍ବ ନିର୍ଦ୍ଧାରିତ ନିୟମମାନ ରହିତ କରାଯାଇଅଛି । ସୁତରାଂ ସମ୍ମିଳନୀ

ବର୍ତ୍ତମାନ ତାହାର ପ୍ରାଥମିକ ସ୍ୱଚ୍ଛନ୍ଦ ଅବସ୍ଥାକୁ ଆସିଅଛି । ସମ୍ମିଳନୀର ଆଲୋଚ୍ୟ ବିଷୟ କୌଣସି ନିୟମାଧୀନ ନ ଥିବାରୁ ରାଜନୈତିକ ବିଷୟ ସମ୍ମିଳନୀର ଅନ୍ତର୍ଭୁକ୍ତ କରାଗଲା ବୋଲି ଗତ ବାର୍ଷିକ ରିପୋର୍ଟରେ ଉଲ୍ଲେଖ ଅଛି । ଅର୍ଥାତ୍ ଇଚ୍ଛାକଲେ ସମ୍ମିଳନୀ ରାଜନୈତିକ ବିଷୟ ଆଲୋଚନା କରିପାରନ୍ତି ବା ନ ପାରନ୍ତି; କିନ୍ତୁ ଏ ଅଧିବେଶନରେ ଆଲୋଚ୍ୟ ବିଷୟ ମଧ୍ୟରେ କିଛି [କୌଣସିଟି] ରାଜନୈତିକ ବିଷୟ ନୁହେଁ । ରାଜନୈତିକ ବିଷୟ ରହିବ ନାହିଁ ବୋଲି ଯେ ଗଭର୍ଣ୍ଣମେଣ୍ଟଙ୍କ ନାମ ପର୍ଯ୍ୟନ୍ତ ଧରିବାକୁ ହେବ ନାହିଁ ଏହା ନୁହେଁ । ରାଜନୀତିର ଅର୍ଥ ଏପରି ନୁହେଁ । ଅତଏବ ଏ ସମ୍ମିଳନୀର ଆଲୋଚ୍ୟ ବିଷୟ ରାଜନୈତିକ ବୋଲି ଆଶଙ୍କା କରିବାର କାରଣ ନାହିଁ ।

***

## ୨୦

## ନବମ ଅଧିବେଶନର ତୃତୀୟ ପ୍ରସ୍ତାବ ସମ୍ପର୍କରେ ବକ୍ତବ୍ୟ

ବର୍ତ୍ତମାନ ଯେଉଁ ପ୍ରସ୍ତାବ ଉପସ୍ଥିତ ହୋଇଅଛି, ସେ ସମ୍ବନ୍ଧରେ ମୁଁ କିଛି କହିବାକୁ ଇଚ୍ଛୁକ ଓ ଅନୁରୁଦ୍ଧ । ମୁଁ ନୀଳକଣ୍ଠକୁ ଅନେକ ଦିନରୁ ଚିହ୍ନେ । ପୂର୍ବେ ମୋହର ତା ପ୍ରତି ଅନେକ ପ୍ରକାର ସନ୍ଦେହାତ୍ମକ ଧାରଣା ଥିଲା ଏବଂ ତା ବିଷୟରେ ମୋର ନାନାପ୍ରକାର ଆଶଙ୍କା ହୋଇଥିଲା । କିନ୍ତୁ ସୁଖର କଥା ସେ ସବୁ ବର୍ତ୍ତମାନ ସମ୍ପୂର୍ଣ୍ଣରୂପେ ମୋ ମନରୁ ଘୁଞ୍ଚିଅଛି । ଦୁଇ ରାତି ତା ସହିତ ୬ଟାଠାରୁ ୮ଟା ପର୍ଯ୍ୟନ୍ତ କଥୋପକଥନ କରି ମୋର ଭ୍ରାନ୍ତି ଚାଲିଯାଇଅଛି । ତା ସହିତ ମୋର ସେହି କଥୋପକଥନରୁ ମୁଁ ତା ବିଷୟରେ ବହୁ ଉଚ୍ଚଭାବ ମନରେ ପୋଷିଅଛି । ଏମାନଙ୍କ ଦ୍ୱାରା ବାସ୍ତବିକ ଜାତୀୟ ଉନ୍ନତି ସାଧିତ ହେବ, ଏଥିରେ ସନ୍ଦେହ ନାହିଁ । ଏମାନଙ୍କୁ ଦେଖି କୀଟ, ପତଙ୍ଗ ଦୀପରେ ପଡ଼ିଲା ପରି ଶତ ଶତ ରାଜା ମହାରାଜାମାନେ ମଧ୍ୟ ଆଜି ସେମାନଙ୍କର ଧର୍ମଗ୍ରହଣ ଓ ସମର୍ଥନ କଲେ । ମୁଁ ସେମାନଙ୍କ କାର୍ଯ୍ୟରେ ସାହାଯ୍ୟ କରିଥାଏଁ ଏବଂ ବରାବର କରିବି । ସେମାନେ ମନୁଷ୍ୟ ଗଢ଼ିବା ପାଇଁ କୃତସଂକଳ୍ପ । ଜଗନ୍ନାଥ ମୂର୍ତ୍ତି ସମସ୍ତେ ଗଢ଼ିପାରିବେ, କିନ୍ତୁ ତା ଭିତରେ ଯେଉଁ ବ୍ରହ୍ମ ଅଛି, ତାହା କେହି ଗଢ଼ି ପାରନ୍ତି ନାହିଁ । ଯେତେବେଳେ ଆମ୍ଭମାନଙ୍କ ଦେଶର ଯୁବକମାନଙ୍କ ହୃଦୟରେ ପ୍ରାଣବ୍ରହ୍ମ ପ୍ରତିଷ୍ଠିତ ହୋଇ ସେମାନଙ୍କୁ ପବିତ୍ର ମନୁଷ୍ୟତାରେ ଜାଜ୍ଜ୍ୱଲ୍ୟମାନ କରିବେ ସେତେବେଳେ ଗଭର୍ଣ୍ଣମେଣ୍ଟ ବା ଅନ୍ୟ ଯେ କେହି ସେମାନଙ୍କୁ ଅବଶ୍ୟ ସମ୍ମାନ କରିବେ । ଆତ୍ମସାହାଯ୍ୟ ଇଚ୍ଛା ଫଳ ଅତି ଉଚ୍ଚ । ନାଉଡ଼ିକୁ ଭଡ଼ା ନ ଦେଇ ପାଣିରେ ଡେଇଁ ପଡ଼ିଲେ ସେହି ନାଉଡ଼ି ଲୁଗା ପକାଇ ତାହାକୁ ପାଣିରୁ ଓଟାରି ଆଣି, ପିନ୍ଧିବାକୁ ଲୁଗା ଦେଇ ତାତ୍ପର୍ଯ୍ୟ କରି ମନକୁ ପାରି

କରିଦିଏ । ଗୋପବନ୍ଧୁ, ନୀଳକଣ୍ଠ ନିଜ ଗୋଡ଼ରେ ଠିଆ ହୋଇଅଛନ୍ତି । ସେମାନଙ୍କ କାର୍ଯ୍ୟ ଦେଖି ଦେଶବାସୀ ତଥା ଗଭର୍ଣ୍ଣମେଣ୍ଟ ଯଥାସମୟରେ ସେମାନଙ୍କୁ ସାହାଯ୍ୟ କରିବାକୁ ଅଗ୍ରସର ହେବେ, ସନ୍ଦେହ ନାହିଁ । ସେମାନେ ଯେ ଭାବରେ କାର୍ଯ୍ୟ ଆରମ୍ଭ କରିଅଛନ୍ତି ଏବଂ ନାନାବିଧ ବିଘ୍ନସତ୍ତ୍ୱେ ଅବିଚଳିତ ଚିତ୍ତରେ ଉକ୍ତ କାର୍ଯ୍ୟରେ ଲାଗି ରହିଅଛନ୍ତି, ସେଥିରେ ସେମାନେ ଯେ ସମସ୍ତଙ୍କର ପ୍ରଶଂସାଭାଜନ, ଏହା ବୋଲିବା ବାହୁଲ୍ୟ । ମୁଁ ସେମାନଙ୍କୁ ଧନ୍ୟବାଦ ଦେଉଅଛି ଏବଂ ଆପଣମାନେ ଯେ ସେମାନଙ୍କ କାର୍ଯ୍ୟକୁ ଅନ୍ତର ସହିତ ଗ୍ରହଣ କରିଅଛନ୍ତି ସେଥିଲାଗି ଆପଣମାନଙ୍କୁ ମଧ୍ୟ ଧନ୍ୟବାଦ ଦେଉଅଛି ।

***

## ୨୧

## ନବମ ଅଧିବେଶନର ପଞ୍ଚମ ପ୍ରସ୍ତାବ ଆଲୋଚନା ଚାଲିଥିବାବେଳେ ସଭାପତି-ମନ୍ତବ୍ୟ

କ୍ରମେ କ୍ରମେ ବେଳ ଅବସାନ ହେବାକୁ ବସିଲାଣି, ଆମ୍ଭମାନଙ୍କୁ ପୁଣି ଏହି ଅଳ୍ପ ସମୟ ଭିତରେ ଆଉ କେତେଗୁଡ଼ିଏ ପ୍ରସ୍ତାବର ଆଲୋଚନା କରିବାକୁ ହେବ । ଏଥିପାଇଁ ପ୍ରତ୍ୟେକ ବକ୍ତାଙ୍କୁ କେବଳ ପାଞ୍ଚ ମିନିଟ୍ ଲେଖାଏଁ ସମୟ ଦିଆଯିବ ।

***

## ୨୨

## ନବମ ଅଧିବେଶନର ପଞ୍ଚମ ପ୍ରସ୍ତାବ ସମ୍ପର୍କରେ ମନ୍ତବ୍ୟ

ଭାଇମାନେ !

ଏ ବିଷୟ ଯେ ବାଞ୍ଛନୀୟ ଏଥିରେ ବକ୍ତୃତା କରିବା ଅନାବଶ୍ୟକ । ମୁଣ୍ଡ ଏକ ସ୍ଥାନରେ, ହାତ ଏକ ସ୍ଥାନରେ, ପାଦ ଏକ ସ୍ଥାନରେ ପଡ଼ି ରହିଅଛି । ଏହି ଅବସ୍ଥାକୁ କେହି ମନୁଷ୍ୟର ସୁସ୍ଥ ଅବସ୍ଥା ବୋଲି କହି ନ ପାରେ । ଉପେନ୍ଦ୍ର ଭଞ୍ଜ ପରି ମସ୍ତକ ଗଞ୍ଜାମରେ ଉତ୍କଳମାତାଙ୍କ ଗଣ୍ଡିରୁ ବିଚ୍ଛିନ୍ନ ହୋଇ ପଡ଼ି ରହିଅଛି । ଯଦି ଏ ଦେଶର ମିଳନ ହୁଏ  ତେବେ ମନେ କର ଏ ଅନ୍ତଃକରଣ କଅଣ ହେବ ? ନଦୀର ଯେପରି ଜୁଆର ହୋଇଥାଏ, ପୁଣି ଭଟ୍ଟା ହୋଇଗଲେ ପାଣିସବୁ ସ୍ଥାନେ ସ୍ଥାନେ ରହିଯାଏ, ସେହିପରି ଓଡ଼ିଶାର ଦିନେ ଜୁଆର ଅବସ୍ଥା ଥିଲା । କିନ୍ତୁ ବର୍ତ୍ତମାନ ଭଟ୍ଟା ଅବସ୍ଥାରେ ସ୍ଥାନେ ସ୍ଥାନେ ମନ୍ଦାଏ ମନ୍ଦାଏ ପାଣି ରହିଲାପରି ଦେଶଟା ଏଠାରେ ଖଣ୍ଡେ ସେଠାରେ

ଖଣ୍ଡେ ହୋଇ ପଡ଼ିରହିଅଛି । ଯେପରି ସେହି ସମସ୍ତ ଜଳାଶୟକୁ ପୁଣି ଏକତ୍ର କରିବାକୁ ହେଲେ ଜୁଆର ଆବଶ୍ୟକ, ସେହିପରି ଏହି ଦେଶକୁ ଏକତ୍ର କରିବାକୁ ହେଲେ ସର୍ବତ୍ର ଜାତୀୟ ଭାବର ଜୁଆର ଉଠାଇବାକୁ ହେବ । ଭିଜାଗାପଟଣାର ବନ୍ଧୁଙ୍କୁ ମୁଁ ପ୍ରଥମେ ତେଲୁଗୁ ବୋଲି ଜାଣିଥିଲି । କିନ୍ତୁ ତାଙ୍କର ବକ୍ତୃତା ଶୁଣି ମୋର ଏ ଭ୍ରମ ଭାଙ୍ଗିଗଲା । ସମସ୍ତେ ମରି ପଡ଼ିଥିଲାବେଳେ କେହି କାହାକୁ ଚିହ୍ନନ୍ତି ନାହିଁ । କିନ୍ତୁ ମୃତସଞ୍ଜୀବନୀ ଔଷଧ ଖାଇ ସମସ୍ତେ ଜୀବିତ ହେବାରୁ ପରସ୍ପରକୁ ଚିହ୍ନିଲେ । ଗୋପବନ୍ଧୁ ବାବୁ ଯାହା କହିଥିଲେ, କେବଳ ବିଶ୍ୱାସହିଁ ସର୍ବତ୍ର ଜୟ କରିବ । ମୁଁ ମଧ ତାହାହିଁ କହୁଅଛି, କେବଳ ବିଶ୍ୱାସକର । ବିଶ୍ୱାସରେ ବଳୀୟାନ ହୁଅ, ଜାତୀୟ ଉନ୍ନତିର ଜୁଆର ଦେଶର ଚାରିଆଡ଼େ ଉଠାଅ । ତୁମ୍ଭର ଅଭୀଷ୍ଟ ଫଳ ଆପେ ଆପେ ଆସିବ ।

***

## ୨୩

## ନବମ ଅଧିବେଶନର ଦଶମ ପ୍ରସ୍ତାବ ଆଲୋଚନାବେଳେ ପ୍ରଦତ୍ତ ସଭାପତି-ମନ୍ତବ୍ୟ

ମୁଁ କନିକା ରାଜାସାହେବଙ୍କ କଥାକୁ ସମ୍ପୂର୍ଣ୍ଣ ସମର୍ଥନ କରୁଅଛି । ଆପଣମାନଙ୍କୁ ମତ ମାଗିବାପୂର୍ବରୁ ମୋର ଏତିକି ବକ୍ତବ୍ୟ ଯେ କଟକରେ ଏମ୍.ଏ.ବି.ଏଲ୍.କ୍ଲାସ୍ ହେଲେ ତାହା ସେପରି ପୂର୍ଣ୍ଣାଙ୍ଗ ହୋଇ ପାରିବନାହିଁ । ଯେଉଁମାନେ ଏମ୍.ଏ., ବି.ଏଲ୍ ପ୍ରଭୃତି ବିଶ୍ୱବିଦ୍ୟାଳୟର ଉଚ୍ଚ ଉଚ୍ଚ ଉପାଧି ପାଇବାକୁ ଇଚ୍ଛା କରନ୍ତି, ବଡ଼ ବଡ଼ ଅଧ୍ୟାପକମାନଙ୍କ ନିକଟରେ ସର୍ବାଙ୍ଗ ସୁନ୍ଦର ପୁସ୍ତକାଳୟ ଏବଂ ଯନ୍ତ୍ରାଗାର ମଧ୍ୟରେ ସେମାନଙ୍କର ଶିକ୍ଷାହେବା ଆବଶ୍ୟକ । ମୁଁ ଚାହେଁ ମୋ ଦେଶବାସୀ ଶିକ୍ଷିତ ଯୁବକମାନେ ବିଶ୍ୱବିଦ୍ୟାଳୟର ଉଚ୍ଚ ଉପାଧିମାନ ଲାଭ କରି ଯୋଗ୍ୟତା ଏବଂ ପାଣ୍ଡିତ୍ୟରେ ଯେପରି ଅନ୍ୟ କୌଣସି ଜାତୀୟ ବିଶ୍ୱବିଦ୍ୟାଳୟର ଉପାଧିପ୍ରାପ୍ତ ଯୁବକମାନଙ୍କଠାରୁ ଊଣା ନ ହୁଅନ୍ତି । ପାଟନା ବିଶ୍ୱବିଦ୍ୟାଳୟ କମିଟି ରିପୋର୍ଟ ପ୍ରକାଶିତ ହେଲେ ଆମ୍ଭେମାନେ ଅବସ୍ଥା ଓ ଅବସର ଦେଖି ଆପତ୍ତି କରିପାରିବା । ଏହି ସମ୍ମିଳନୀରେ ଏ ନିର୍ଦ୍ଧାରଣ ଯେ ଧାର୍ଯ୍ୟ ନ ହେଲେ ଚିରଦିନ ନିମନ୍ତେ ଆମ୍ଭମାନଙ୍କ ପଥ ରୁଦ୍ଧ ହେଲା ତାହା ନୁହେଁ । ତେଣୁ ମୋର ଆପଣମାନଙ୍କୁ ଅନୁରୋଧ ଯେ ମତାମତ ଦେବା ପୂର୍ବରୁ ଉତ୍ତମରୂପେ ଭାବି ଚିନ୍ତି ମତ ଦିଅନ୍ତୁ ।

***

# ୨୪

## ଦଶମ ଅଧିବେଶନର ପ୍ରଥମ ପ୍ରସ୍ତାବର ପ୍ରସ୍ତାବକ ଭାବରେ ପ୍ରଦତ୍ତ ଭାଷଣ

ଜଗତରେ ଏକାନ୍ତ ଆଧିପତ୍ୟ ସ୍ଥାପନ କରିବା ଉଦ୍ଦେଶ୍ୟରେ ଜର୍ମାନମାନେ ଅନେକ ବର୍ଷ ପୂର୍ବରୁ ଗୋପନୀୟ ଭାବେ ବହୁଳ ସମରସଜ୍ଜା କରି ଆସୁଥିଲେ । ଏହି ଦୁରାକାଂକ୍ଷା ଅଦ୍ୟ ପରିପକ୍ୱ ହେବାରୁ ଏହି ପୃଥିବୀବ୍ୟାପୀ ମହାସମର ଭିଆଣ କରିଅଛନ୍ତି ।

ଜର୍ମାନ ଚକ୍ରବର୍ତ୍ତୀ ଜଣେ କଳିଯୁଗ ରାବଣ, ତାହାଙ୍କର ବଂଶ, ପ୍ରଜା, ଧନ, ବିଜ୍ଞାନ ସମୃଦ୍ଧି ପାଇଅଛି ଏବଂ ତାହାଙ୍କ ଦୌର୍ଜନ୍ୟ ମଧ୍ଯ ବଢ଼ିଅଛି । ନିକଟବର୍ତ୍ତୀ ସାମାନ୍ୟ କିନ୍ତୁ ସଭ୍ୟ ଓ ନ୍ୟାୟପରାୟଣ ଦେଶମାନଙ୍କୁ ଆପଣା ପଦତଳେ ରଖିବାକୁ ଯାଇ ଏହି ମହାସଙ୍କଟର କାରଣ ହୋଇଅଛନ୍ତି । ଅଦୂରେ ସେ ରାବଣଙ୍କ ଦଶା ଅନୁଭବ କରିବେ । ପ୍ରାଚୀନକାଳରୁ ଆଜିଯାଏ ସମୟେ ସମୟେ ଏପରି ଜଣେ ଜଣେ ରାବଣ ଜନ୍ମଗ୍ରହଣ କରି ପୃଥିବୀର ଧର୍ମ, ନୀତି, ଧନ ଓ ପ୍ରାଣର ସ୍ୱାତନ୍ତ୍ର୍ୟ ଲୋପ କରିବାରେ ଚେଷ୍ଟା କରିଥାନ୍ତି । କିନ୍ତୁ ଅକୃତକାର୍ଯ୍ୟ ହେଇ ଅବଶେଷରେ ସେମାନେ ଜଗଦ୍‌ବୈରୀ ହୋଇ ନିଜ ଦୋଷରେ ନିଜେ ଜଳିଯାନ୍ତି ।

ଏହି ଇଉରୋପୀୟ ମହାସମର ଜର୍ମାନ ଓ ବ୍ରିଟିଶ୍ ଜାତି ମଧ୍ୟରେ ନୁହେ । ଏହା ବାହୁବଳ ଓ ଧର୍ମବଳ ମଧ୍ୟରେ ତୁମୂଳ ସଂଗ୍ରାମ । ଜର୍ମାନ ବାହୁବଳରେ ବଳୀୟାନ୍ । ବିଜ୍ଞାନର କଲ୍ପଣାରେ ଜର୍ମାନ ଅଲୌକିକ ସାମରିକ ସଜ୍ଜା କରି ଯାଇଅଛି । ଜଗତକୁ ନିଜ ବାହୁବଳ ପ୍ରଭାବରେ କରଗତ କରିବାକୁ ବସିଅଛି । ଅନ୍ୟ ପକ୍ଷେ ବ୍ରିଟନ ଧର୍ମବଳରେ ବଳୀୟାନ, ଧର୍ମରକ୍ଷା ସକାଶେ ପ୍ରତ୍ୟେକ ଜାତିର ସ୍ୱାଧୀନତା ଓ ସ୍ୱାତନ୍ତ୍ର୍ୟ ରକ୍ଷା ସକାଶେ ବ୍ରିଟନ ଖଡ଼୍‌ଗହସ୍ତ । ସଂସାର ପ୍ରାରମ୍ଭରୁ ବାହୁବଳ ଓ ଧର୍ମ ମଧ୍ୟରେ ସମର ଲାଗି ଆସୁଅଛି । ବାହୁବଳ ଧର୍ମବଳର ପଥ ଅବରୋଧ କରି ନାନା ବାଧାବିଘ୍ନ ଘଟାଇଥାଏ । କିନ୍ତୁ ଅବଶେଷରେ ଧର୍ମ ଜୟଲାଭ କରେ ଏବଂ ବାହୁବଳ ପରାଜିତ ହୁଏ । ଅଦ୍ୟ ଆମ୍ଭେମାନେ ଦେଖୁଁ ଜର୍ମାନର ପ୍ରଭାବ ସ୍ଥାନେ ସ୍ଥାନେ ବଢ଼ିଅଛି । ଜର୍ମାନ ସ୍ଥାନେ ସ୍ଥାନେ ଜୟଲାଭ କରିଅଛି । ଏହା ବାହୁବଳର ପ୍ରାଥମିକ ପ୍ରଭାବ, ଧର୍ମର ଅବରୋଧ । କିନ୍ତୁ ଦେଖାଯିବ, ଅବଶେଷରେ ଜର୍ମାନର ବଳ ନିସ୍ତେଜ ଓ ପରାଜିତ ହୋଇ ବ୍ରିଟନ ଜୟଲାଭ କରିବ ଏବଂ ସଂସାରରେ ଧର୍ମ ସଂସ୍ଥାପିତ ହେବ । ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

ଏହି ବିଷମ ସଙ୍କଟରେ ଆମ୍ଭମାନଙ୍କର କର୍ତ୍ତବ୍ୟ କି ? ଏହି ମଣ୍ଡପ ପଛ ଭାଗରେ ଦେଖ ଖଣ୍ଡା, ନଳୀ, ଢାଲ ସଜା ହୋଇଅଛି । ମାତ୍ର ଅସ୍ତ୍ର ଧାରଣ କରିବାକୁ ଆମ୍ଭର ଅଧିକାର ନାହିଁ । ଆମ୍ଭେ ଶୂନ୍ୟହସ୍ତ, ଅତଏବ ଆମ୍ଭେମାନେ କେବଳ ସହାନୁଭୂତି ପ୍ରକାଶ

କରିବା, ଆମ୍ଭମାନଙ୍କର ଗଭୀର ରାଜଭକ୍ତି ପ୍ରକାଶ କରିବା ଏବଂ ଯଥାସାଧ୍ୟ ସାହାଯ୍ୟ ପ୍ରଦାନ କରିବା । ଏହି ସମ୍ମିଳନୀ ପକ୍ଷରୁ ଯୁଦ୍ଧାହତ ସେନାଙ୍କ ଚିକିତ୍ସା ଲାଗି ସମ୍ମିଳନୀ ପକ୍ଷରୁ ମାସିକ ଟ୩୦୦ଙ୍କା (ତିନିଶତ ଟଙ୍କା) ଦେବାର ସ୍ଥିର କରାଯାଉ ।

***

## ୨୫

## ତ୍ରୟୋଦଶ ଅଧିବେଶନ ଆରମ୍ଭ ହେବା ପୂର୍ବରୁ ଉତ୍କଳମାତାଙ୍କୁ ଆବାହନ କରି ପ୍ରଦତ୍ତ ଭାଷଣ

ସଭାପତି ମହାଶୟ, ଭାଇ ଓ ଭଉଣୀମାନେ !

ମୋତେ ସଭାପତି ମହାଶୟ ମା'ଙ୍କ ଆବାହନର କାର୍ଯ୍ୟ ଦେଇଅଛନ୍ତି । ଏ ମଣ୍ଡପ ମାତୃପୂଜାର ମଣ୍ଡପ । ଅନ୍ୟାନ୍ୟ ସ୍ଥାନମାନଙ୍କରେ ଯେପରି Conference (ସମ୍ମିଳନୀ)ହୁଏ – ସେଠାରେ ମାତୃପୂଜା ହୁଏ ନାହିଁ – ସେ ସବୁ, ଭାଇମାନେ, ଏକତ୍ର ମିଳିତ ହୋଇ ପରସ୍ପର ମନର ଭାବ ପ୍ରକାଶ କରିବାକୁ । ଏ ଉତ୍କଳବାସୀଙ୍କ Conference(ସମ୍ମିଳନୀ) – ଜନନୀ ଜନ୍ମଭୂମିଙ୍କ ପୂଜାମଣ୍ଡପ । ପୂଜାକାର୍ଯ୍ୟ ଆରମ୍ଭ ପୂର୍ବରୁ ମାତାଙ୍କର ଆବାହନ ଆବଶ୍ୟକ । ଆବାହନ ବ୍ୟତିରେକେ ପୂଜା ଆରମ୍ଭ ହୋଇ ନ ପାରେ । ବର୍ତ୍ତମାନ ଏଠାରେ ଯେତେ ଭାଇଭଉଣୀ ଉପସ୍ଥିତ, ସମସ୍ତଙ୍କ ହୃଦୟରେ ଜନନୀ ଜନ୍ମଭୂମିଙ୍କ ପ୍ରତିମୂର୍ତ୍ତି ବା ପିତୁଳା ସ୍ଥାପନ କରିବା ଉଚିତ । ଭାଇମାନେ, ସମସ୍ତେ ଥରେ ତାଙ୍କ ପୁଣ୍ୟ ପିତୁଳା ହୃଦୟରେ ସ୍ଥାପନ କର । ଏହି କାର୍ଯ୍ୟ ପାଇଁ ମୁଁ ଆପଣମାନଙ୍କୁ ଅନୁନୟ ବିନୟ କରୁଅଛି, ମାତାଙ୍କ ନାମରେ ଆଜ୍ଞା ଦେଉଅଛି । ଆମ୍ଭେମାନେ ସମସ୍ତେ ବର୍ତ୍ତମାନ ମାତାଙ୍କ କ୍ରୋଡ଼ରେ ବସିଅଛୁଁ । ଯଦି କେହି ପଚାରନ୍ତି ଯେ ମାତାଙ୍କ କ୍ରୋଡ଼ରେ ବସିଥିବାର କିପରି ଅନୁଭବ କରାଯାଇପାରେ, ତାଙ୍କର ପିତୁଳା ହୃଦୟରେ କିପରି ସ୍ଥାପନ କରାଯାଇ ପାରେ, ତେବେ କେବଳ ଏହି ଉପରେ ଲେଖା ହୋଇଥିବା 'ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପୀ ଗରୀୟସୀ' ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିବି । ଏ ବାକ୍ୟଟି ବହୁକାଳରୁ ଶୁଣା ଅଛି, କିନ୍ତୁ ତାହାର ଅର୍ଥ ବୁଝିବାକୁ ବୋଧହୁଏ କେହି ଚେଷ୍ଟା କରନ୍ତି ନାହିଁ । ଦେଖନ୍ତୁ, ପ୍ରଥମେ 'ଜନନୀ' ଦ୍ୱିତୀୟରେ 'ଜନ୍ମଭୂମି, ତୃତୀୟରେ 'ସ୍ୱର୍ଗ' । ମନୁଷ୍ୟଜନ୍ମରେ ପ୍ରତ୍ୟେକ ମନୁଷ୍ୟର ଜୀବନକୁ ଗୋଟିଏ ସ୍ରୋତ ମନେ କଲେ ଦେଖିବେ, ଏହି ସ୍ରୋତର ଆଦ୍ୟରେ ଜନନୀ, ମଧ୍ୟରେ ଜନ୍ମଭୂମି, ଶେଷରେ ସ୍ୱର୍ଗ, ପ୍ରତ୍ୟେକ ଆତ୍ମାର ଏହି ଗତି । ମନୁଷ୍ୟ ଜୀବନରେ ଆଦ୍ୟ ଜନନୀ, କାର୍ଯ୍ୟ ଜନ୍ମଭୂମି, ପୁରସ୍କାର

ମୁକ୍ତି ବା ସ୍ୱର୍ଗ । ଏଥିପାଇଁ ଜନନୀ, ଜନ୍ମଭୂମି ସ୍ୱର୍ଗଠାରୁ ଗରୀୟସୀ ।

ପ୍ରତ୍ୟେକ ମନୁଷ୍ୟର ଗୋଟିଏ ଆତ୍ମା ଅଛି, ତାହା ଈଶ୍ୱରଙ୍କ ଅଂଶ । ଏହି ଆତ୍ମା ପୃଥିବୀରେ କାର୍ଯ୍ୟ କରି ଈଶ୍ୱରଙ୍କଠାରେ ମିଶିଯିବ । ଏ ଆତ୍ମା କେଉଁଠାରେ କାର୍ଯ୍ୟ କରୁଛି ? କିପରି ସ୍ୱର୍ଗଲାଭ କରୁଛି ? ଏ ଆତ୍ମା ଜନ୍ମଭୂମିରେ କାର୍ଯ୍ୟ କରେ । ଏ ପୃଥିବୀରେ ହିଁ ମନୁଷ୍ୟ ଦୟା, ଧର୍ମ, ପରୋପକାର କରି ସ୍ୱର୍ଗପ୍ରାପ୍ତ ହୁଏ । ମନେ କରନ୍ତୁ, ଆଜି ପୃଥିବୀ ସମୁଦ୍ରରେ ମିଶିଯିବ, ତେବେ କେଉଁଠାରେ ଠିଆ ହୋଇ ମୁକ୍ତିମାର୍ଗ – ସ୍ୱର୍ଗଲାଭର ଉପାୟ ଖୋଜିବା । ଅତଏବ କହେଁ, ''ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ ।''

ଆମ୍ଭେମାନେ ସମସ୍ତେ ଦିନେ ମାତୃଗର୍ଭରେ ଥିଲୁଁ,ସେତେବେଳେ ଆମ୍ଭମାନଙ୍କର ଜ୍ଞାନ ନ ଥିଲା, ଜ୍ଞାନଚକ୍ଷୁ ନ ଥିଲା; ସେତେବେଳେ ଆମ୍ଭମାନଙ୍କର ଏପରି ଏକ ଅବସ୍ଥା ଥିଲା ଯେ ସଂସାର ସଙ୍ଗେ ଆମ୍ଭମାନଙ୍କର ସମ୍ପର୍କ କିଛି ଜାଣୁ ନ ଥିଲୁଁ । ଯେଉଁ ବାୟୁ ଆମ୍ଭମାନଙ୍କର ଜୀବନ ରକ୍ଷା କରୁଅଛି, ତାହାର ପରିଚୟ ପାଇ ନ ଥିଲୁଁ, ଯେଉଁ ଚକ୍ଷୁରେ ସମସ୍ତ ବସ୍ତୁ ଦେଖୁଥାଉଁ, ଯେଉଁ କର୍ଣ୍ଣରେ ସମସ୍ତ ଶୁଣୁଥାଉଁ, ଏସବୁ ସେତେବେଳେ ଉପକାର କରି ନ ଥିଲେ । ସେ ଜୀବନ ମାତୃଗର୍ଭରେ ଥିଲା । ଥରେ ପୁଣି ମନୁଷ୍ୟର ଅନ୍ତିମ ଅବସ୍ଥା ଭାବନା କର । କେହି ପ୍ରିୟଜନର ମୃତ୍ୟୁକାଳରେ ଉପସ୍ଥିତ ଥିଲେ ଦେଖିଥିବ, କ'ଣ ହେଲା – ସେତେବେଳେ ଆଦି ଅବସ୍ଥାରେ ଯେପରି ସେପରି – କାନକୁ ଶୁଭିଲା ନାହିଁ, ଚକ୍ଷୁକୁ ଦିଶିଲା ନାହିଁ, ଭିତରେ ଯେଉଁ ଈଶ୍ୱର ଅଂଶ ଅଛି, ସେହି ଅବସ୍ଥା ଉପସ୍ଥିତ ହେଲା; ସେହି ଅବସ୍ଥା ମାତୃଗର୍ଭର ଅବସ୍ଥା ସହ ସମାନ । ଯେଉଁ ଅବସ୍ଥାରେ ପ୍ରତ୍ୟେକେ ଅନ୍ୟର ମୃତ୍ୟୁ ଦେଖିଅଛନ୍ତି, ସେହି ଅବସ୍ଥା ଦିନେ ସମସ୍ତଙ୍କର ହେବ । ଭାବ ଦେଖି, ଯେତେବେଳେ କାନ ଶୁଣୁନାହିଁ, ଆଖି ଦେଖୁ ନାହିଁ – କେବଳ ମାତ୍ର ଆତ୍ମା ଜାଗ୍ରତ ରହିଅଛି – ସେ ଅବସ୍ଥା କିପରି ? ମୃତ୍ୟୁ ଉତ୍ତାରୁ ଏ ମାଟିର ଦେହ ମାଟିରେ ମିଶିଯିବ । ପ୍ରାଣବାୟୁ ବାହାରିଯିବା ପୂର୍ବରୁ ତାହା ମଧ ମାଟିତୁଲ୍ୟ । ପ୍ରିୟଜନମାନେ ଏ ମୃତ୍ୟୁପିଣ୍ଡକୁ ମାଟିରେ ପକାଇ ଦେବେ । ଯେତେବେଳେ ଯାଏ ମୃତ ବ୍ୟକ୍ତିର ମଧରେ ଜୀବନ ଥାଏ, ସେତେବେଳ ଯାଏ ମଧ ତାହାର ଦେହ ମୃତ୍ତିକା ସହିତ ସମାନ । ମୃତ୍ତିକାଠାରୁ ତାହାର ତଫାତ୍ କଣ ? ସେତେବେଳର ଦେହ, ଏତେ ଯତ୍ନରେ ଲାଳନ ପାଳନର ଏ ଶରୀର ଆଉ ମାଟିର ପ୍ରଭେଦ କଣ ? ସେତେବେଳେ କେବଳ ଈଶ୍ୱରଙ୍କ ଅଂଶ ସେହି ଆତ୍ମା ଶରୀର ମଧରେ ଥାଏ । ବାହାରେ ତାହାର କୌଣସି ଚିହ୍ନ ନାହିଁ । ଆଉ ଚାରିପାଞ୍ଚ ଘଣ୍ଟା ପରେ ଏ ଦେହ ମାଟିରେ ମିଶିଯିବ । ସେ ସମୟର ଦେହ, ମାଟି ସମାନ । ଅର୍ଥାତ୍ ଆତ୍ମା ସେ ଶରୀର ମଧରେ ବା ମାଟିରେ ବସିଛି । ଅର୍ଥାତ୍ ସେହି ମାତୃଭୂମିର କୋଳରେ ପିଣ୍ଡ ଥାଉ ଥାଉ ଆତ୍ମା ବାହାରି ଯିବ । ଦିନେ ଆମ୍ଭମାନଙ୍କ ସମସ୍ତଙ୍କର ଏହି ଅବସ୍ଥା ହେବ । ସେତେବେଳେ ବୁଝିପାରିବ ତୁମ୍ଭେ

ମାତୃକୋଳରେ ବସିଅଛ ।

ପ୍ରଥମେ ମାତା ରକ୍ତ ଦେଇଥିଲେ । ସେହି ରକ୍ତ ବୃଦ୍ଧି କରିବା ପାଇଁ ମୋ ଜନ୍ମଭୂମି ମୋତେ ଶସ୍ୟାଦି ଦେଉଅଛି । ଅତଏବ ଶରୀରର ଆଦ୍ୟ ପଦାର୍ଥ ଦିଏ ମାତା, ତାହାର ରକ୍ଷକ ଓ ବର୍ଦ୍ଧକ ଜନ୍ମଭୂମି । ଆମ୍ଭେମାନେ ପ୍ରଥମେ ପ୍ରସବ ହେଲା ବେଳେ ଭୂମିଷ୍ଠ ହେଲୁ ବୋଲି କହନ୍ତି ଅର୍ଥାତ୍ ଆମ୍ଭମାନଙ୍କୁ ମାତା ଜନ୍ମଭୂମି କ୍ରୋଡ଼ରେ ଅର୍ପଣ କରି ସେହି ଜନ୍ମଭୂମିର ପୂଜା କରିବାକୁ ଆଦେଶ ଦିଅନ୍ତି । ଏହି କଥା ଥରେ ଅନ୍ତଃକରଣରେ ଭାବ, ଶେଷ ଅବସ୍ଥା ସ୍ମରଣ କର । ମାତା ଯେଉଁ ରକ୍ତ ଦେଇଥିଲେ, ତାହା ନିଃଶେଷେ ହେଲାଣି । କେବଳ ସେ ଶରୀର ଅଛି, ତାହା ମାତୃଭୂମିର ମାଟି ସମାନ । ମାତୃଭୂମି ଉତ୍କଳ ଦେହରେ ଆତ୍ମା ରହିଛି, ମା ଉତ୍କଳ କ୍ରୋଡ଼ରେ ଚକ୍ଷୁବୁଜି ଥରେ ପ୍ରାର୍ଥନା କର । ହୃଦୟରେ ଜନ୍ମଭୂମିର ପିତୁଳା ଆପେ ଜାଗ୍ରତ ହେବ । 'ଚକ୍ଷୁ ବନ୍ଦ କର', ଦେଖିବ, ତୁମ୍ଭ ଭିତରେ ମା ଅଛନ୍ତି । ଏହି ତ ମାତୃଭୂମିର ପୂଜା । ଭାଇମାନେ, ପୂଜା ନିମନ୍ତେ ଜନନୀ ଜନ୍ମଭୂମି ଉତ୍କଳ ମାତାଙ୍କର ଆହ୍ୱାନ କର । ସମସ୍ତେ କହ, 'ବନ୍ଦଇ ଜନ୍ମଭୂମି' ।

***

## ୨୬

## ତ୍ରୟୋଦଶ ଅଧିବେଶନର ଦ୍ୱିତୀୟ ପ୍ରସ୍ତାବର ପ୍ରସ୍ତାବକ ଭାବରେ ପ୍ରଦତ୍ତ ଭାଷଣ

ସଭାପତି ମହୋଦୟ, ଭାଇ ଓ ଭଉଣୀମାନେ ! ବୋଧହୁଏ ଆପଣମାନେ ସମସ୍ତେ ଗୌରୀଶଙ୍କରଙ୍କ ନାମ ଶୁଣିଅଛନ୍ତି । ଯେଉଁଠାରେ ଲୋକେ ଓଡ଼ିଆ ଭାଷା କହନ୍ତି କିମ୍ବା ଓଡ଼ିଆ ପୁସ୍ତକ ପାଠ କରନ୍ତି, ସେଠାରେ ଗୌରୀଶଙ୍କରଙ୍କ ନାମ ଜଣାଅଛି । ରାୟବାହାଦୁର ଉପାଧି ସେ ପାଇଥିଲେ । ମୁଁ କିନ୍ତୁ ରାୟବାହାଦୁର ଗୌରୀଶଙ୍କର, ବାବୁ ଗୌରୀଶଙ୍କର ଇତ୍ୟାଦି କଥା କହିବାକୁ ଇଚ୍ଛା କରେ ନାହିଁ । ମନୁଷ୍ୟର ଆତ୍ମା ଯେତେବେଳେ ତାହାର ମୃଣ୍ମୟ ପିଣ୍ଡରେ ପ୍ରବେଶ କରେ, ସେତେବେଳେ କିଏ କରେ ? ସେହି ସର୍ବଶକ୍ତିମାନ୍ ଈଶ୍ୱରଙ୍କ ଅନ୍ତରାତ୍ମାର ଅଂଶ ପ୍ରବେଶ କରେ । ସେହି ମୃଣ୍ମୟ ପିଣ୍ଡର ନାମ ରାୟବାହାଦୁର, ବାବୁ, ମିଷ୍ଟର ଇତ୍ୟାଦି ହୁଏ । କିନ୍ତୁ ଆତ୍ମା ଯେତେବେଳେ ପ୍ରବେଶ କରେ କିମ୍ବା ମୃଣ୍ମୟପିଣ୍ଡ ଛାଡ଼ି ପଳାଏ, ସେତେବେଳେ ରାୟ ବାହାଦୂର, ବାବୁ ଇତ୍ୟାଦି ଉପାଧି ସବୁ ତୁଚ୍ଛ କରି ପିଣ୍ଡ ସହିତ ପକାଇ ଦେଇ ପଳାଏ । ଗୌରୀଶଙ୍କରଙ୍କ ଆତ୍ମା ସ୍ୱର୍ଗରେ ଅଛି । ବର୍ତ୍ତମାନ ତାଙ୍କ ଆତ୍ମାଙ୍କୁ ମୁଁ ଆହ୍ୱାନ କରୁଅଛି । ତାଙ୍କୁ ରାୟବାହାଦୁର ଇତ୍ୟାଦି ସମ୍ବୋଧନରେ ଆହ୍ୱାନ କଲେ ସେହି ଆତ୍ମା ସେ ସବୁ ତୁଚ୍ଛ ଜ୍ଞାନ କରିବ ମାତ୍ର ।

ମନୁଷ୍ୟ ଉଭୟ ଚକ୍ଷୁଦ୍ୱାରା ଆଗକୁ ଅନାଏ । ପଶ୍ଚାଦ୍ ଭାଗରେ ତାର ଚକ୍ଷୁ ନାହିଁ । ଏହି ହେତୁ ପଶ୍ଚାତରେ ଯାହା ହୋଇଗଲା ସେ ତାହା ଦେଖେନାହିଁ । ଗୋଟିଏ ଜାତି ପକ୍ଷରେ ମଧ୍ୟ ତଦ୍ରୂପ । ଯେତେବେଳେ ଗୋଟିଏ ଜାତି ଅଗ୍ରସର ତାହାର ସାଧାରଣତଃ ଆଗକୁ ବା ଭବିଷ୍ୟଦ୍ ପ୍ରତି ଦୃଷ୍ଟି ପଡ଼େ । ପଶ୍ଚାଦ୍‌ଭାଗରେ ଗତ ଜୀବନରେ ବା ଅତୀତ ଇତିହାସରେ ତାହାର ଅବସ୍ଥା କିପରି ଥିଲା, ସେ ଦେଖିବାକୁ ଇଚ୍ଛା କରେ ନାହିଁ । ଶିଶୁ ସମ୍ମୁଖରେ ଅନେକ ଆଶା ଦେଖେ । ପଶ୍ଚାଦ୍‌ରେ ଅର୍ଥାତ୍ ପୂର୍ବରେ ତାହାର ପିତା ମାତା କିପରି ଅବସ୍ଥାରେ ଥିଲେ, କେତେ ଦୁଃଖ କଷ୍ଟରେ ତାହାର ଲାଳନ ପାଳନ କରିଥିଲେ, ଏବେ ସବୁ ସେ ଭାବେ ନାହିଁ । କିନ୍ତୁ ଯେତେବେଳ ଯାଏ ଆମ୍ଭେମାନେ ଆମ୍ଭ ପିତା ମାତା ପୂର୍ବରେ କିପରି ଭାବରେ ଜୀବନ ଯାପନ କରିଥିଲେ ଏ ସମ୍ବନ୍ଧେ ନ ଭାବୁଁ, ସେମାନଙ୍କ କାର୍ଯ୍ୟ ଦ୍ୱାରା ସମାଜର, ଜାତିର କି ଉପକାର ହୋଇପାରେ ଜାଣି ପାରୁନାହୁଁ । ଗୌରୀଶଙ୍କର ଉତ୍କଳରେ ପ୍ରଥମେ ସମ୍ବାଦପତ୍ର ପ୍ରକାଶ କଲେ । 'ଉତ୍କଳ ଦୀପିକା' ଉତ୍କଳର ଦୀପଟିଏ । ଏକ ସମୟରେ ମନୁଷ୍ୟ ଜାତି ଅସଭ୍ୟାବସ୍ଥାରେ ଥିଲା । ସୃଷ୍ଟିର ପ୍ରଥମ ଦିନ ଯେତେବେଳେ ଯେତେବେଳେ ସୂର୍ଯ୍ୟ ଅସ୍ତ ହେଲେ, ଅନ୍ଧକାର ପୃଥିବୀରେ ଘୋଟିଗଲା, ମନୁଷ୍ୟ ସେତେବେଳେ ଆତ୍ମରକ୍ଷା ପାଇଁ ବ୍ୟାକୁଳ ହେଲା । ସୂର୍ଯ୍ୟ ପୁନରପି ଉଦୟ ନ ହେଲେ ସେ କଣ କରିବ ବୋଲି ବ୍ୟାକୁଳ ହେଲା, ତେତେବେଳେ ମନୁଷ୍ୟ ନୈଶ କାର୍ଯ୍ୟରେ ଜାତିକୁ ସହାୟ ହେବାକୁ ଦୀପର ସୃଷ୍ଟି କଲା । ସେତେବେଳେ ସୋରିଷରୁ ତେଲ ବାହାର କରି, କପାରେ ଦୁଇଖଣ୍ଡ ସଳିତା, କାଷ୍ଠ ସଂଘର୍ଷଣରେ ଅଗ୍ନି ଉତ୍ପାଦନ କରିବାକୁ ତାକୁ କେତେ କଷ୍ଟ ସହ୍ୟ କରିବାକୁ ପଡ଼ିଥିଲା । ବର୍ତ୍ତମାନ ଦୀପ ଜାଳିବା ଅତି ସହଜ । କିନ୍ତୁ ପ୍ରଥମରେ ଯାହାର ମସ୍ତିଷ୍କ ଦୀପ ଆବିଷ୍କାରରେ ନିୟୋଜିତ ହେଲା, ତାହାର କେତେ ଚେଷ୍ଟାର ଫଳ ଏହା ! ତେଣୁ ମାନବଜାତି ତାହାଠାରେ କୃତଜ୍ଞ ରହିବାକୁ ବାଧ୍ୟ ।

ଯେତେବେଳେ ମନୁଷ୍ୟ ଶିଶୁ ଅବସ୍ଥାରେ ଥିଲା, ଆତ୍ମରକ୍ଷା କରିବାର ଶକ୍ତି ତା'ର ନ ଥିଲା, ମାତା ତାହାକୁ ରକ୍ଷା କରିଥିଲେ । ଆମ୍ଭମାନଙ୍କର ଆତ୍ମରକ୍ଷାର ଶକ୍ତି ନ ଥିବା ସମୟରେ, ମାତା ଆମ୍ଭମାନଙ୍କୁ ରକ୍ଷା କରିଥିଲେ । ଏହା ସମସ୍ତେ ଯଦି ଭାବିଥାନ୍ତେ, ଆଜି ଆଉ ଏଠାରେ ମାତୃପୂଜା ନିମନ୍ତେ ପ୍ରଚାର କରିବାକୁ ହୁଅନ୍ତା ନାହିଁ । ଗୌରୀଶଙ୍କର ପ୍ରଥମେ ଉତ୍କଳରେ କଣ କରିଥିଲେ କେହି ଭାବନ୍ତି ନାହିଁ ।

ମୁଁ ଓଡ଼ିଆମାନଙ୍କୁ ମଧ୍ୟରେ ଅଗ୍ରଗଣ୍ୟ ପାପୀ – ଉତ୍କଳମାତାଙ୍କର ନିକୃଷ୍ଟ ସନ୍ତାନ । ତାହାର କାରଣ ବୋଧହୁଏ ଯେ ମୁଁ ଓଡ଼ିଶାରେ ପ୍ରଥମେ ଏମ୍.ଏ. । ମୁଁ ପ୍ରଥମେ ଇଂରାଜି ଶିଖି ଯେତେ ନିକୃଷ୍ଟ ବୁଦ୍ଧି ହୋଇଛି, ସେଥିରୁ ମୁଁ ଉତ୍ତମ ରୂପେ ତାହା ବୁଝିପାରୁଛି । ପ୍ରଥମେ ବାଲ୍ୟାବସ୍ଥାରେ ମନୁଷ୍ୟ ଯେପରି ଅବସ୍ଥା ଭୋଗ କରେ, ତାହା ମୁଁ ବର୍ତ୍ତମାନ

ଅନୁଭବ କରୁଛି । ଆଉ କିଏ କରୁଥିବ କି ନାହିଁ ସନ୍ଦେହ ।

ବର୍ତ୍ତମାନର ସ୍ୱାଧୀନତା ପ୍ରଚାର ସତ୍ତ୍ୱେ ଏ ବିଂଶ ଶତାବ୍ଦୀର ସଭ୍ୟତା ଯୁଗରେ କୌଣସି ସାଧାରଣ କାର୍ଯ୍ୟ କଲେ ସରକାର, ପୋଲିସ ଯେପରି ବାଘ ପରି ଗିଳି ଦେବାକୁ ବସୁଅଛନ୍ତି, ୫୦ବର୍ଷ ତଳେ ସେମାନେ କିପରି ହୋଇ ନ ଥିବେ, ଭାବନ୍ତୁ । ସେତେବେଳେ ଗୌରୀଶଙ୍କର କାର୍ଯ୍ୟକ୍ଷେତ୍ରରେ ବାଘ ପରି ଛିଡ଼ା ହୋଇଥିଲେ ।

ତାଙ୍କଠାରେ ମୁଁ ଚାରି ପାଞ୍ଚଦିନ ଶିକ୍ଷା କରିଅଛି । ସମୟ ସମୟରେ କୌଣସି କାର୍ଯ୍ୟରେ ତାଙ୍କ ସହିତ ପରାମର୍ଶ କରେ । ମୁଁ ଯାହା ଠାରୁ ଗୋଟିଏ କଥା ଶିଖିଅଛି, ତାକୁ ଗୁରୁଜ୍ଞାନ କରୁଛି । ପିଲାକାଳେ ଅବଧାନଙ୍କଠାରେ ୧୦ ।୧୨ ଦିନ ପଢ଼ିଥିଲି । ସେଥିପାଇଁ ତାଙ୍କୁ ମୁଁ ୩୫ ବର୍ଷ ନିମନ୍ତେ ପେନ୍‌ସନ ଦେଇଥିଲି । ମୁଁ ଗୌରୀଶଙ୍କରଙ୍କ ଠାରେ ଛାତ୍ର ଋଣରେ ଋଣୀ । ତାଙ୍କର ଯେଉଁ କର୍ତ୍ତବ୍ୟ ଜ୍ଞାନ ଥିଲା, ତାହା ବଳରେ ସେ ସର୍ବତ୍ର ନିର୍ଭୀକଭାବରେ କାର୍ଯ୍ୟ କରିଥିଲେ । ସେ ଯେତେବେଳେ ୩୦ଟଙ୍କା ବେତନରେ ଥିଲେ, ସେତେବେଳେ କଲେକ୍‌ଟରଙ୍କୁ ମାନି ନ ଥିଲେ ।

କଂଗ୍ରେସକୁ ଓଡ଼ିଶାରୁ ପ୍ରତିନିଧି ରୂପେ ଯେତେବେଳେ ମୁଁ ଓ ଗୌରୀଶଙ୍କର ଯିବାକୁ ସ୍ଥିର କଲୁ, ସେତେବେଳେ ସରକାରୀ ଆଦେଶ ପ୍ରଚାର ହେଲା ଯେ ସରକାରୀ କର୍ମଚାରୀମାନେ କଂଗ୍ରେସକୁ ଯିବେ ନାହିଁ । ମୁଁ ସେତେବେଳେ ପଚାରିଥିଲି ''ମାଷ୍ଟର ମହାଶୟ । ଆପଣ କ'ଣ କରିବାକୁ ସ୍ଥିର କରିଛନ୍ତି ?'' ସେ କହିଥିଲେ – ''କଣ କରିବି ? ଚାକିରିଟା ପଛେ ଯାଉ ଦେଶ ସକାଶେ ମୁଁ ଅବଶ୍ୟ କଂଗ୍ରେସକୁ ଯିବି ।'' ଆଜି କେତେଜଣ ଓଡ଼ିଆ କର୍ମଚାରୀ ଦେଶ ସକାଶେ ସରକାରୀ ଚାକିରୀ ପରିତ୍ୟାଗ କରିବାକୁ ଅଗ୍ରସର ହେବେ ? ଚାରିଦିନ ସକାଶେ ହେଉ ମୁଁ ଗୌରୀଶଙ୍କରଙ୍କର ଚରଣତଳେ ଶିକ୍ଷା କରିଛି । ମୁଁ ଈଶ୍ୱରଙ୍କୁ ପ୍ରାର୍ଥନା କରେ, ସେ ମୋତେ ଆଶୀର୍ବାଦ କରନ୍ତୁ, ଯେପରି ମୁଁ ତାଙ୍କପରି ନିର୍ଭୀକଭାବରେ କର୍ତ୍ତବ୍ୟ ସମ୍ପାଦନ କରିବି ।

ତାଙ୍କ ତିରୋଧାନରେ ଯେଉଁ କ୍ଷତି ହୋଇଅଛି ତାହା ସ୍ମରଣ ରଖିବା ନିମନ୍ତେ ତାଙ୍କର ପ୍ରତିମା ସ୍ଥାପନ ବା ଅନ୍ୟ କିଛି ବନ୍ଦୋବସ୍ତ କରିବା ନିମନ୍ତେ ଅନେକେ କହନ୍ତି । କିନ୍ତୁ ଏହା ନିତାନ୍ତ ଭ୍ରମ । ଏହିସବୁ ଦ୍ୱାରା କଣ ସ୍ମୃତିରକ୍ଷା ହୋଇପାରେ ? ଫଟୋଟାଏ ରଖି ସ୍ମୃତିରକ୍ଷା କରିବାକୁ କେହି କେହି କହନ୍ତି । ତାଙ୍କର ୧୪ ବର୍ଷ ବୟସର ଗୋଟିଏ ଫଟୋ ଅଛି । ଆଉ ଗୋଟିଏ ୭୦ବର୍ଷ ବୟସର । କେଉଁଟି ରଖିବ ? ଏସବୁ କେବଳ ମୂର୍ଖତା । କେହି କେହି କହନ୍ତି ତାଙ୍କର ଗୋଟିଏ ସ୍ମୃତିସ୍ତମ୍ଭ ନିର୍ମାଣ କରିଦିଅ – ନାମ ରହିଯିବ । କଲିକତାରେ Harrington street ନାମରେ ଗୋଟିଏ ସାହି ଅଛି । କିନ୍ତୁ ଯାଇ ପଚାର କେଉଁ ହେରିଙ୍ଗଟନ୍‌ଙ୍କ ନାମରେ ଏହାର ନାମ ଦିଆଯାଇଅଛି, କେହି କହି ପାରିବେ ନାହିଁ । ସ୍ମୃତି ରହିଲା ଆଉ କିପରି ? ସେତ ଦୂରର କଥା । ଆମର ଏ ଯେଉଁ

ଜଗନ୍ନାଥ ଦେଉଳ ଅଛି ତାର ନିର୍ମାତା ସମ୍ବନ୍ଧରେ କିଏ କହୁଛି ଅମୁକ ଲୋକ, ଅନ୍ୟ ଜଣେ କହୁଛି ଅମୁକ ଲୋକ । ଏସବୁ ପ୍ରକୃତ ସ୍ମୃତିରକ୍ଷା କରିପାରିବ ନାହିଁ ।

ମୋର ଶିକ୍ଷାଦ୍ୱାରା ଯଦି ଅନ୍ୟ ଜଣକର ଉପକାର ହେଲା, ଯଦି ଗୌରୀଶଙ୍କରଙ୍କର ଆତ୍ମା ଆମ୍ଭମାନଙ୍କ ଆତ୍ମା ଉପରେ କିଛି ଚିହ୍ନ ରଖି ପାରେ, ତେବେ ତାଙ୍କର ସ୍ମୃତି ଅକ୍ଷଣ୍ଡ ରହିଲା ବୋଲି ଜ୍ଞାନ କରିବାକୁ ହେବ । ତାହା କ ଚିହ୍ନ ରଖିପାରେ ? ଓଡ଼ିଶାର କାର୍ଯ୍ୟକ୍ଷେତ୍ରରେ ତାଙ୍କର ଆତ୍ମା ଯେପରି ବିକଶିତ ହୋଇଥିଲା, ସେହି ଆତ୍ମାର କାର୍ଯ୍ୟମାନ ଯଦି କୌଣସି ପ୍ରକାର କରାଯାଇ ପାରେ, ତେବେ ତାଙ୍କର ସ୍ମୃତି ରହିବ । ଏହିପରି ଆତ୍ମା ଉପରେ ଉପକାରର ଉପାୟ କରାଯିବା ଉଚିତ ।

***

## ୨୭

## ତ୍ରୟୋଦଶ ଅଧିବେଶନର ଦ୍ୱିତୀୟ ଦିବସର ପ୍ରାରମ୍ଭରେ ପ୍ରଦତ୍ତ ବକ୍ତୃତା

ସଭାପତି ମହୋଦୟ, ଭ୍ରାତା ଓ ଭଗ୍ନିଗଣ !

କାଲି ସଭା ଶେଷରେ ଶୁଣିଲି ଯେ, କେତେଜଣ ଭ୍ରାତା ଏ ସଭାମଣ୍ଡପରୁ ଧୂଳି ନେଇ ମୁଣ୍ଡରେ ବୋଳିଛନ୍ତି ଓ ଲୁଗାରେ ବାନ୍ଧି ଘରକୁ ନେଇଛନ୍ତି । ସେ ପ୍ରକାର ଭ୍ରାତା କିଏ, ତାଙ୍କର ପରିଚୟ ପାଇବା ନିମନ୍ତେ ବହୁତ ଚେଷ୍ଟା କଲି । କିନ୍ତୁ ନ ପାଇବାରୁ ମୁଁ ମଧ ଏଥିରୁ ଧୂଳି ବାନ୍ଧି ନେଇ ରଖିଅଛି । କାରଣ, ସେ ପ୍ରକୃତରେ ମାତାର ପରିଚୟ ପାଇଛନ୍ତି । ଏ ସଭାମଣ୍ଡପରେ ଉତ୍କଳ ଜନନୀ ତାଙ୍କୁ ହିଁ ଦେଖା ଦେଇଛନ୍ତି । ଯେଉଁ ଭ୍ରାତାମାନେ ତାଙ୍କର ପରିଚୟ ପାଇଛନ୍ତି, ସେ ପାଣ କି କଣ୍ଡରା ହେଲେ ମଧ ସେ ମୋର ଅଗ୍ରଜ ଓ ପୂଜ୍ୟ । ତେଣୁ ତାଙ୍କ ପଦଧୂଳି ଏ ଧୂଳିରେ ନିଶ୍ଚୟ ଥିବ ଭାବି ମୁଁ ଧୂଳି ନେଇ ରଖିଛି । ମାତୃପୂଜାରେ ବାଉରି, କଣ୍ଡରାର ଯେ ଅଧିକାର, ବ୍ରାହ୍ମଣ, କରଣର ସେହି ଅଧିକାର, ରାଜାର ଯେ ଅଧିକାର, ପ୍ରଜାର ସେହି ଅଧିକାର ।

ଉତ୍କଳ ସମ୍ମିଳନୀର ଉଦ୍ଦେଶ୍ୟ, ଓଡ଼ିଆ ଜାତିକୁ ଉଠାଇବା । ଓଡ଼ିଆ ଜାତିରେ କୃଷକମାନଙ୍କ ସଂଖ୍ୟା ବେଶୀ । ତେଣୁ ସେମାନଙ୍କର ଉନ୍ନତି ନ ହେଲେ ଦେଶର ଆଉ କି ଉନ୍ନତି ? ସେମାନେ ଭୂମିକର୍ଷଣ କରି ଆମ୍ଭମାନଙ୍କୁ ଧାନ ଚାଉଳ ଦେଉଅଛନ୍ତି । ସେମାନେ ହିଁ ଉତ୍କଳମାତାଙ୍କର ପ୍ରଧାନ ସେବକ । ସେମାନଙ୍କୁ ଉତ୍କଳଜନନୀ ସ୍ତନ୍ୟପାନ କରାନ୍ତି । ଆମ୍ଭମାନଙ୍କ ଦେଶର ରାଜା, ଜମିଦାରଗଣ ଶରୀରର ବକ୍ଷ ପରି । ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗର ଶିରା ପ୍ରଶିରାକୁ ବକ୍ଷକୁ ରକ୍ତ ଯାଏ । ବକ୍ଷ ତାହା ପରିଷ୍କାର କରି ଶରୀରର ନାନାସ୍ଥାନକୁ ପ୍ରେରଣ କଲେ ଅଙ୍ଗ ପ୍ରତ୍ୟଙ୍ଗ ସବଳ ସତେଜ ହୁଅନ୍ତି । ପ୍ରଜାଗଣ ଅଙ୍ଗ ପ୍ରତ୍ୟଙ୍ଗ ପରି, ସେମାନଙ୍କ ଉପାର୍ଜିତ ଶକ୍ତି ରକ୍ତସ୍ୱରୂପ ଜମିଦାର ଖମାରରେ

ପ୍ରବେଶ କରୁଅଛି । ଜମିଦାର ଯଦି ସେ ସବୁ ନିର୍ମଳ କରି ପ୍ରଜାମାନଙ୍କ ମଧ୍ୟରେ ସେମାନଙ୍କ ଉନ୍ନତି ସାଧନରେ ବ୍ୟୟ କରନ୍ତି, ସମାଜର ଶରୀର ସୁସ୍ଥ ଅବସ୍ଥାରେ ରହିବ ।

କାଲି ଗୀତ ଗାଇଲା ସମୟରେ ଶୁଣିଥିଲେ –

''ଭୂମିକମ୍ପ ହେବ ଧରଣୀ ଫାଟିବ
ଉଠିବେ ସହସ୍ରଭୁଜା
ସେହି ତୋର ମାତା, ସେହି ତୋର ତ୍ରାତା
କର ସେହି ପାଦ ପୂଜା ।''

ଯଦି କେହି ମାତାଙ୍କର ପରିଚୟ କାଲି ପାଇଥିବେ, ବା ଆଜି ପାଇବ, ତେବେ ଭୂମିକମ୍ପ ହେବ ନାହିଁ – ତୁମ୍ଭର ହୃତ୍‌କମ୍ପ ହେବ ।

(ଏଠାରେ ମଧୁବାବୁ ଗୋଟାଏ ଚିତ୍ର ଦେଖାଇଥିଲେ । ପଟର ଉପରି ଭାଗରେ ସରକାର, ପରେ ଜମିଦାର, କିଛି ନିମ୍ନରେ ମହାଜନ ଓ ତାହା ନିମ୍ନରେ କୃଷକ ଭୂମି ଖୋଳୁଥିବାର ଚିତ୍ରିତ ଥିଲା ।)

ସର୍ବତଳେ ଦେଖନ୍ତୁ ଗରିବ ମାଟି ଖୋଳୁଅଛି । ଭଗୀରଥ ତପସ୍ୟା କରି ଯେପରି ଗଙ୍ଗାକୁ ଆଣିଥିଲେ ଏ ସେହିପରି ପରିଶ୍ରମ କରି ନିର୍ଝର ବୁହାଉଛି । ସେ ନିର୍ଝରରେ ଧାନ ବହୁଛି । ସେହି ସ୍ରୋତ ମହାଜନ ବାକ୍ସରେ ପ୍ରବେଶ କରୁଛି । ସେଠାରୁ ସ୍ରୋତ ନୋଟ୍ ରୂପେ ବାହାରି ରାଜକୋଷର ପହଞ୍ଚେ । କିନ୍ତୁ ସେଥିରୁ ତାହା ଆଉ ଫେରେ ନାହିଁ । ଭଗୀରଥ ଗଙ୍ଗା ଆଣିଲା ବେଳେ ନାନା ହଇରାଣରେ ପଡ଼ିଥିଲେ । ଶିବଙ୍କ ଜଟାରେ, ବ୍ରହ୍ମାଙ୍କ କମଣ୍ଡଳୁରେ ଗଙ୍ଗା ଲୁଚିଥିଲେ । ସେ କଷ୍ଟ ସହ୍ୟ କରି ପରିଶ୍ରମ କରିଥିଲେ । ତାଙ୍କ ବଂଶ ଉଦ୍ଧାରରେ। ଗଙ୍ଗା ଲାଗିଥିଲେ ବୋଲି ସିନା ତାଙ୍କ ପରିଶ୍ରମ ସାର୍ଥକ ହୋଇଥିଲା । କିନ୍ତୁ ଏ ସ୍ରୋତ ମାଟିଖୋଳାର ବଂଶ ଉଦ୍ଧାରରେ ତ ବିନିଯୋଗ ହେଲା ନାହିଁ । ଏହାର ବଂଶ ନାଶ ହେଲା ।

(ବର୍ତ୍ତମାନ ସେ ଆଉ ଗୋଟିଏ ଚିତ୍ରପଟ ଦେଖାଇଥିଲେ । ତାହାର ଉର୍ଦ୍ଧ୍ୱ ଭାଗରେ ଜଣେ ଚାରିଗୋଟି ମସ୍ତକ ବିଶିଷ୍ଟ, ତଳେ ଛଅଗୋଟି ମସ୍ତକ ବିଶିଷ୍ଟ, ଆଉ ଜଣେ ରୋଷ-କଷାୟିତ ନୟନରେ ମୁଦ୍‌ଗରହସ୍ତ ହୋଇ ଦଣ୍ଡାୟମାନ । ସର୍ବତଳେ ୨୫ ମୁଣ୍ଡ ବିଶିଷ୍ଟ ଛବି )

ଭାଇମାନେ,

ଏହି ଚିତ୍ରରେ ପ୍ରଥମ ଛବି ଚାରିମୁଣ୍ଡ ବିଶିଷ୍ଟ, ସେହିଟି ସରକାର । ସେ ଚାରି ଟଙ୍କା ସୁଧରେ 'ଋଣ ଗ୍ରହଣ କରନ୍ତି । ପରେ ଜମିଦାର ଛଅ ମୁଣ୍ଡ, ଛ ଟଙ୍କା ସୁଧରେ ଟଙ୍କା

ପାଏ । ସର୍ବତଳେ କୃଷକ ୨୫ ମୁଣ୍ଡ, ୨୫ ଟଙ୍କା ସୁଧ ଦିଏ । ସରକାର ଦେବେ ୪ ଟଙ୍କା, ଜମିଦାର ଦେବେ ୬ ଟଙ୍କା, ଆଉ ଯେ ଧନ ଧାନ୍ୟ ଉତ୍ପନ୍ନ କଲା, ସେ ଦେବ ଟ୨୫ଙ୍କା । ଜାତିରେ କୃଷକର ସଂଖ୍ୟା ବେଶି । ଜାତି ଉଠାଇବାକୁ ହେଲେ ଏହାକୁ ଏହି ୨୫ଟଙ୍କା ସୁଧଭାରରୁ ରକ୍ଷା କରିବାକୁ ହେବ ।

ଆମ୍ଭମାନଙ୍କର ପୂର୍ବପୁରୁଷମାନେ ଆମ୍ଭମାନଙ୍କର ପରିତ୍ରାଣ ନିମନ୍ତେ ଶିବ ମନ୍ଦିର, ବିଷ୍ଣୁ ମନ୍ଦିର ଇତ୍ୟାଦି ଅନେକ ମନ୍ଦିର ନିର୍ମାଣ କରିଅଛନ୍ତି । କିନ୍ତୁ କେଉଁଠାରେ ହେଲେ ଲକ୍ଷ୍ମୀପୂଜା ମନ୍ଦିର ଆପଣମାନେ ଦେଖିଛନ୍ତି କି ? ଲକ୍ଷ୍ମୀମନ୍ଦିର ନାହିଁ । ଅବଶ୍ୟ ପ୍ରତ୍ୟେକଙ୍କ ଘରେ ଗୁରୁବାର ପୂଜା ଖଟୁଲି, ମାଣ ଅଛି । ସେଇଟି ପ୍ରତ୍ୟେକଙ୍କ ସ୍ୱତନ୍ତ୍ର ପୂଜାର ବିଷୟ । କିନ୍ତୁ ଜାତିର ମାଣ, ଗୁରୁବାର ଖଟୁଲି କାହିଁ ? ଲକ୍ଷ୍ମୀପୂଜା ନ କଲେ ଉନ୍ନତି ହେବ ନାହିଁ । ଜାତିର ଲକ୍ଷ୍ମୀମନ୍ଦିର ନ ହେଲେ ଜାତି ଉଠିବ ନାହିଁ । ତେଣୁ ଗୋଟିଏ ଜାତୀୟ ଲକ୍ଷ୍ମୀମନ୍ଦିର ଦରକାର ।'

ଆଠଗଡ଼ର ରାଜା ସାହେବ ଗୋଟିଏ ପତ୍ର ଲେଖିଅଛନ୍ତି ତାହା ପଢ଼ିବା ଉଚିତ । ଆପଣମାନେ ଅଳ୍ପ ଶୁଣନ୍ତୁ । (ଏଠାରେ ସେ ଆଠଗଡ଼ ରାଜାଙ୍କ ପତ୍ରଟି ପାଠ କରିଥିଲେ ।) ଦେଶର ବର୍ତ୍ତମାନ ଅବସ୍ଥା ଓ ବସ୍ତ୍ରର ଦୁର୍ମୂଲ୍ୟତା ଦୃଷ୍ଟିରେ ଗୋଟିଏ ବସ୍ତ୍ରବୟନ କାରଖାନା ପ୍ରତିଷ୍ଠିତ ହେବା ଦରକାର ଏବଂ ତାହା ପ୍ରତିଷ୍ଠିତ ହେଲେ ସେ ନିଜେ ଏକଶତ ଅଂଶ (ଦଶ ସହସ୍ର ଟଙ୍କା) କିଣିବେ ବୋଲି ଲେଖିଥିଲେ । ଅନ୍ୟ ଜଣେ ମଧ୍ୟ ଏ କାରଖାନା କରିବା ନିମନ୍ତେ ପତ୍ର ଦେଇଛନ୍ତି । ...

ଭାଇମାନେ, ଇଂରେଜ ଖୁବ୍ ଅଗ୍ରସର ଜାତି । ଆମ୍ଭେମାନେ ଇତିହାସରୁ ପଢ଼ିଛୁ ଆର୍ଯ୍ୟଜାତି, ଗ୍ରୀକ୍ ଓ ରୋମ ଜାତି ଖୁବ୍ ଅଗ୍ରସର ଥିଲେ । ବର୍ତ୍ତମାନ ସେମାନେ କାହାନ୍ତି ? ଏହାର କାରଣ, ତାଙ୍କର ଭୁଲ ଥିବାରୁ ଅଧିକ ଦିନ ତିଷ୍ଠି ପାରିଲେ ନାହିଁ । ମୁଁ ପିଲାଦିନେ ସ୍କୁଲ୍‌ରେ ପଢ଼ିଲାବେଳେ ବୁଝିଛି, ଅବଶ୍ୟ ଅନ୍ଧାର ରାତିରେ ଯେ ଆଗରେ ଚାଲେ ସେ କାଦୁଅରେ ଖସଡ଼ା ଖାଇ ପଡ଼େ, ଅନ୍ୟମାନେ ସେ ଭୁଲ୍ ଦେଖି ସତର୍କ ହୋଇଯାନ୍ତି । ଆମ ଓଡ଼ିଆ ଜାତି ସର୍ବ ପଶ୍ଚାଦ୍‌ପଦ । ଏହାର ଗୋଟିଏ ଭଲ ଫଳ ଦେଖୁଛି – ପଛରେ ଥିବାରୁ ଆମେ ଅନ୍ୟ ଜାତିମାନଙ୍କର ଭୁଲ୍ ଦେଖିପାରୁଅଛୁଁ, ଆମେ ସେ ଆଉ ଭୁଲ୍ କରିବା ନାହିଁ । ଇଂରେଜମାନେ ଏଠାରୁ ପ୍ରତିବର୍ଷ ଲକ୍ଷ ଲକ୍ଷ ଟଙ୍କାର ଝୋଟ କିଣି ନେଇ କଳ ବସାଇ ଅଛନ୍ତି । ଯୁଦ୍ଧଯୋଗୁଁ ବସ୍ତ୍ରର ଦୁର୍ମୂଲ୍ୟତା ହେବାର ଗୋଟିଏ ପ୍ରଧାନ କାରଣ ଯେ ଇଂରେଜମାନଙ୍କର କପା ନାହିଁ; ତେଣୁ ବସ୍ତ୍ର କାରଖାନା ଖୋଲିବାକୁ ହେଲେ ଆଗେ କପା ଚାଷ କର ।

ଆମ ଦେଶରେ ଧନ କମ ଅଛି । ଲୋକେ କହନ୍ତି ଓଡ଼ିଶା ଗରିବ । ମୁଁ କହେ, କଦାଚ ନୁହେଁ । ବର୍ତ୍ତମାନ କଲିକତା, ନାଗପୁର ଇତ୍ୟାଦି ସ୍ଥାନର କଳ

କାରଖାନାମାନଙ୍କରେ  ଲକ୍ଷ ଲକ୍ଷ ଓଡ଼ିଆ କାମ କରୁଅଛନ୍ତି । ଏହାର ଅର୍ଥ – ଓଡ଼ିଆ ହାତର ମୂଲ୍ୟ ଅଛି । ସେଠାରେ ଯେ ଦୈନିକ ଟଙ୍କାଏ ଆଦାୟ କରିବ, ଏଠାକୁ ଆସିଲେ ଦଶ ପଇସା ମାତ୍ର ପାଇବ । ଆମେ କ'ଣ ତାଙ୍କୁ କାର୍ଯ୍ୟ ଦେଇପାରିବା ? ସୂତା କାରଖାନା କଲେ ସେମାନେ ଆସିବେ । ଯେଉଁ ହାତରେ କୋଣାର୍କ, ଭୁବନେଶ୍ୱର ମନ୍ଦିରମାନ ତୟାର ହୋଇଅଛି, ସେହି ହାତର ଲାଭ ବିଦେଶୀମାନେ ଖାଇ ଯାଉଅଛନ୍ତି । ଧିକ୍ ଆମ୍ଭମାନଙ୍କୁ ।

'ଓଡ଼ିଆ'ର ସମ୍ପାଦକ ଯେ ସେ ହେଉ, ଥରେ ଉତ୍କଳୀୟଙ୍କ ସ୍ୱାର୍ଥ ତ୍ୟାଗ ନିମନ୍ତେ ଧନ ଦାନ ଓ ସ୍ୱେଚ୍ଛା ସେବା କରିବା ପାଇଁ ଲେଖିଥିଲେ । ନିମ୍ନଲିଖିତ ବ୍ୟକ୍ତିଗଣ ସେଥିପ୍ରତି ଇଚ୍ଛୁକ ହୋଇ ଅଛନ୍ତି । ସେମାନଙ୍କ ନାମ ମୁଁ ପଢୁଅଛି ।

୧ । ରାଜକିଶୋର ମହାନ୍ତି (ଏଣ୍ଟ୍ରାନ୍ସ ଛାତ୍ର, ଗ୍ରୀଷ୍ମାବକାଶରେ ବିନା ବେତନରେ ଯେକୌଣସି କାର୍ଯ୍ୟ କରିବେ ।)

୨ । ବିଚିତ୍ରାନନ୍ଦ ପଟ୍ଟନାୟକ (ଏଣ୍ଟ୍ରାନ୍ସ ଛାତ୍ର, ଗ୍ରୀଷ୍ମାବକାଶରେ ବିନା ବେତନରେ ଯେକୌଣସି କାର୍ଯ୍ୟ କରିବେ ।)

୩ । ଲକ୍ଷ୍ମଣ ସାହୁ, ବିନା ବେତନରେ ସେବା ।

୪ । ଶ୍ରୀବତ୍ସ ପଣ୍ଡା, ଆସିକା । ୫ ଟଙ୍କା ଦାନ ।

୫ । ଶ୍ରୀମତୀ ରେବା ଦେବୀ, ବିନା ବେତନରେ କାର୍ଯ୍ୟ ଓ ୧୦ ଟଙ୍କା ଦାନ ।

୬ । ବାରିଷ୍ଟର ମିଶ୍ର, ଆଦାୟର କୋଡ଼ିଏ ଭାଗରୁ ଭାଗେ ଦାନ  ।

୭ । ବ୍ରଜବନ୍ଧୁ ଷଡ଼ଙ୍ଗୀ, ମାଟ୍ରିକ୍ୟୁଲେସନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି । ଗ୍ରୀଷ୍ମାବକାଶରେ ଦୁଇ ତିନିଦିନ କାର୍ଯ୍ୟ କରିବେ ଏବଂ ଏକ ଟଙ୍କା ଦେବେ ।

୮ । କୃଷ୍ଣପ୍ରସାଦ ମହାପାତ୍ର, ବାରିପଦା, ଜଣେ ମାଟ୍ରିକ ପରୀକ୍ଷାର୍ଥୀ, ଏବେ ଠାରୁ କଲେଜ ସେସନ ଆରମ୍ଭ ପର୍ଯ୍ୟନ୍ତ କାର୍ଯ୍ୟ କରିପାରନ୍ତି ।

୯ । ଗୋପାଳ ପ୍ରସାଦ ସିଂହ, ରାମବାଗ, ୧୪।୩।୧୯୧୮ରୁ ଡିସମ୍ବର ଶେଷ ପର୍ଯ୍ୟନ୍ତ ଦୈନିକ ଦୁଇ ଘଣ୍ଟା ହିସାବରେ ନିକଟବର୍ତ୍ତୀ ୫ ମାଇଲ ମଧ୍ୟରେ ଓ ଯାଜପୁର ସହରରେ କାର୍ଯ୍ୟ କରିପାରନ୍ତି ଏବଂ ୫ ଟଙ୍କା ଦେବେ ।

୧୦ । ଚନ୍ଦ୍ରଶେଖର ପଟ୍ଟନାୟକ ବି.ଏ., ବର୍ଷରେ ଏକ ସପ୍ତାହ କାର୍ଯ୍ୟ କରିବେ । ପ୍ରତିଦିନ ସନ୍ଧ୍ୟା ସମୟରେ ଉତ୍କଳମାତାଙ୍କ ନିମନ୍ତେ ପ୍ରାର୍ଥନା କରିବେ ଏବଂ ଦୁଇ ଟଙ୍କା ଦେବେ ।

୧୧ । ହରିପ୍ରସାଦ ସିଂହ, କଟକ, ଚଳିତ ବର୍ଷ ନିମନ୍ତେ ୧୫ ଦିନ କାର୍ଯ୍ୟ କରିବେ । ନିଜ ଗ୍ରାମ ରାମବାଗରୁ ୧୦ ଟଙ୍କା ଆଦାୟ କରି ଦେବାର ଭାର ନେବେ ଏବଂ ନିଜେ ଦୁଇ ଟଙ୍କା ଦେବେ ।

୧୨ । ହରିକୃଷ୍ଣ ଦାସ, ଭବାନିପାଟଣା, କଳାହାଣ୍ଡି । ନିଜ ଆୟର ପ୍ରତି ଟଙ୍କାରେ ଏକ ପଇସା [ସେତେବେଳେ ଏକ ଟଙ୍କା ୬୪ ପଇସା] କୌଣସି ଜାତୀୟ କାର୍ଯ୍ୟରେ ବ୍ୟୟ କରିବା ପାଇଁ ଅଲଗା ରଖିବେ ଏବଂ ଜାତୀୟ ପାଣ୍ଠି ନିମନ୍ତେ ୧୦୦ ଟଙ୍କା ଦେବେ ।

୧୩ । କୃଷ୍ଣଚନ୍ଦ୍ର ପଟ୍ଟନାୟକ, ବହଳଦା, ମୟୂରଭଞ୍ଜ । ଜଣେ ବି.ଏ. ପରୀକ୍ଷାର୍ଥୀ, ମେ ମାସ ଆରମ୍ଭରୁ ଯୁନ ୧୫ ତାରିଖ ପର୍ଯ୍ୟନ୍ତ free service ଦେଇପାରନ୍ତି ।

୧୪ । ବନମାଳୀ ମିଶ୍ର, ବେଗୁନିଆ, ପୁରୀ । ଦେଶଲୋକେ ପିଲାମାନଙ୍କୁ ଶିକ୍ଷା ଦେବା ନିମନ୍ତେ ଗ୍ରାମର ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ଦେଇପାରନ୍ତି, ଏ ବିଷୟରେ ଶିକ୍ଷା ଦେବେ ଏବଂ ୫ ଟଙ୍କା ଜାତୀୟ ପାଣ୍ଠିକୁ ଦେବେ । ଏ ଜଣେ ବି.ଏ. ପରୀକ୍ଷାର୍ଥୀ ।

୧୫ । ଅର୍ଜୁନ ଭୂଇଁୟା, ଆସିଷ୍ଟାଣ୍ଟ ଇଞ୍ଜିନୀୟର, ବାରିପଦା । ଜାତୀୟ ପାଣ୍ଠି ନିମନ୍ତେ ୫୦ ଟଙ୍କା ଦେବେ ।

୧୬ । ରାଘବାନନ୍ଦ ଦାସ ନିମ୍ନଲିଖିତ form ପୂରଣ କରି ଅଛନ୍ତି –

Name in full : Raghabananda Das

Postal address: Puri, B.N.R.

Nature of Sacrifice : Intending to retire from present post at the earliest possible opportunity to attend to my hobbies viz.

(a) Leading a retired life in rural area to instruct people on improved and economical agriculture and trade suiting to their circumstances; to impress on their mind that their habit of indiscriminate and thoughtless borrowing (indebtedness) is what lead them into ultimate *ruin*, to try to prevent, as much as lies in my power, early and imprudent marriage and to point out to the people that the ideas of the marriage (gruhasthasram) according to the old Hindu ashramic system is conducive to check undesirable increase of population – the root of all events and to keep the

population in a healthy normal state of growth and to generally make the rural population hope for better economical advancement by following an honest and truthful course of conduct in their everyday life to enhance their credit;

(b) Improving my agricultural Bank at home for further benefit of the local agricultural and commericial people; and

(c) Establishing some small business concerns in my native village vig; a small oil mill for providing work and teaching business habits, including gardening and diary keeping. Donation for national fund: Twenty five Rupees only, if it will go to form a nucleus to a national fund to be solely employed to improve the Industrial Condition of Mother-Utkal.

୧୭ । ଭୁବନାନନ୍ଦ ଦାସ; ୧୬, ଓକ ଲେନ୍, ବମ୍ବେ –

Nature of Sacrifice: too self-conscious to decide on the nature of sacrifice.

ପ୍ରତିବର୍ଷ ଦିନକର ଆୟ ଜାତୀୟ ପାଣ୍ଠିକୁ ଦେବା ପାଇଁ ପ୍ରସ୍ତୁତ ଏବଂ ୧୫ ଦିନ ନିମନ୍ତେ ବିଜ୍ଞାନ ଓ ଅଧବସାୟର ଛାତ୍ରମାନଙ୍କୁ ଶିକ୍ଷା ଦେଇପାରିବେ କିମ୍ବା ସାଧାରଣରେ ଆଧୁନିକ ଅଧବସାୟ ଓ କାରବାର ସମ୍ବନ୍ଧେ ଜନସାଧାରଣରେ ପ୍ରଚାର କରିପାରିବେ ।

୧୮ । ରାଧାକୃଷ୍ଣ ବସୁ, ଏମ୍.ଏ., ଜାତୀୟ ପାଣ୍ଠି ନିମନ୍ତେ ପାଞ୍ଚ ଟଙ୍କା ଦେବେ ।

୧୯ । ଭାଗୀରଥି ମହାନ୍ତି, ଏମ୍.ଏ., ଜଗତସିଂହପୁର । ସମ୍ମିଳନୀର କାର୍ଯ୍ୟ କରିବେ । ଏ ବର୍ଷ ନିମନ୍ତେ ଜାତୀୟ ପାଣ୍ଠିକୁ ୫ ଟଙ୍କା ଦେବେ । ଚଳିତ ବର୍ଷ ଏକ ମାସ ନିମନ୍ତେ ନିଜ ଗ୍ରାମର ନିକଟବର୍ତ୍ତୀ ସ୍ଥାନମାନଙ୍କରେ ସମ୍ମିଳନୀର ଉଦ୍ଦେଶ୍ୟ ଲୋକମାନଙ୍କୁ ବୁଝାଇବେ ।

୨୦ । ଶ୍ୟାମାନନ୍ଦ ପଟ୍ଟନାୟକ, କଟକ । ତ୍ୟାଗର ମାତ୍ରା ଅନ୍ୟକୁ ଜଣାଇବେ ନାହିଁ ଏବଂ ଜାତୀୟ ପାଣ୍ଠି ନିମନ୍ତେ ୫ ଟଙ୍କା ଦେବେ ।

୨୧ । କୁବେର ପଟ୍ଟନାୟକ, ଖୋର୍ଦ୍ଧା । କେବଳ ଆପଣାର ଉଦର ପ୍ରତିପାଳନ ଓ

ଆଚ୍ଛାଦନ ନିମନ୍ତେ ଯତ୍‌କିଞ୍ଚିତ୍ ଅର୍ଥ ନେଇ ଜୀବନବ୍ୟାପୀ ସମ୍ମିଳନୀର କାର୍ଯ୍ୟ କରିବେ । ଜାତୀୟ ପାଣ୍ଠିକୁ ୨ ଟଙ୍କା ଦେବେ । କଲେଜର ୧ମ ବାର୍ଷିକ ଶ୍ରେଣୀରେ ପଢ଼ନ୍ତି ।

୨୨। ବିଚିତ୍ରାନନ୍ଦ ଦାସ, ଉକିଲ । ଆୟର ଏକଦଶମାଂଶ ଦେଶ ପାଇଁ ଦେବେ ଏବଂ ସେଥିରୁ ଅର୍ଦ୍ଧେକ ଦେଶ ପାଇଁ ଯେଉଁମାନେ କାମ କରିବାକୁ ପ୍ରସ୍ତୁତ ହେବେ ସେମାନଙ୍କ ଶିକ୍ଷାର ବ୍ୟୟରେ ଓ ଅପର ଅର୍ଦ୍ଧେକ ଆପଣାର ସମ୍ପର୍କୀୟ ଦରିଦ୍ର ଛାତ୍ରମାନଙ୍କ ଶିକ୍ଷାର ବ୍ୟୟରେ ନ୍ୟସ୍ତ ହେବ । ନିଜେ ପୂଜା ଛୁଟିରେ ୨୦ ଦିନ ଏବଂ ବଡ଼ ଦିନ ଛୁଟିରେ ୧୦ ଦିନ ସମ୍ମିଳନୀ ପାଇଁ କାର୍ଯ୍ୟ କରିବେ ।

୨୩। ଇନ୍ଦ୍ରମଣି ମହାନ୍ତି, ରାଜକନିକା । ଜାତୀୟ ପାଣ୍ଠି ନିମନ୍ତେ ୫ ଟଙ୍କା ଦେବେ ଏବଂ କନିକା ଷ୍ଟେଟ୍‌ରେ ଜାତୀୟ ପାଣ୍ଠି ନିମନ୍ତେ ଟଙ୍କା ଉଠାଇବାକୁ ଯତ୍ନ କରିବେ ।

୨୪। ଯାଦବେନ୍ଦ୍ର ଦାସ, ଅନନ୍ତପୁର, ବାଲେଶ୍ୱର । ଗ୍ରୀଷ୍ମାବକାଶରେ ୧୫ ଦିନ ନିଜ ଗ୍ରାମର ନିକଟବର୍ତ୍ତୀ ଅଞ୍ଚଳରେ କାର୍ଯ୍ୟ କରିବେ ଏବଂ ଜାତୀୟ ପାଣ୍ଠି ନିମନ୍ତେ ୧ ଟଙ୍କା ଦେବେ ।

୨୫। ତାରାପ୍ରସାଦ ପଟ୍ଟନାୟକ, ଭୁଷଣ୍ଡପୁର । ଦଶ ଟଙ୍କା ଜାତୀୟ ପାଣ୍ଠିକୁ ଦେବେ ।

୨୬। ଲୋକନାଥ ପଟ୍ଟନାୟକ, ୧ମ ବାର୍ଷିକ ଛାତ୍ର, ରେଭେନ୍ସା କଲେଜ । ଗ୍ରୀଷ୍ମାବକାଶରେ ବିନା ବେତନରେ କାର୍ଯ୍ୟ କରିବେ ।

(ଏ ସମ୍ବନ୍ଧେ କିଛି କହି, ଅନୁପସ୍ଥିତ ବ୍ୟକ୍ତିର [ବ୍ୟକ୍ତିମାନଙ୍କର] ପତ୍ରାଦି ପାଠ ପରେ ସେ ଆସନ ଗ୍ରହଣ କରିଥିଲେ ।)

***

## ୨୮

## ଉତ୍କଳଜନନୀଙ୍କ ମାଗୁଣି
## ଓଡ଼ିଆପୁଅଙ୍କ କର୍ତ୍ତବ୍ୟ

ପୁଅମାନେ !

ତୁମ୍ଭମାନଙ୍କୁ ଦେଖିଲେ ମୋ ମନ କୁଣ୍ଢେ ମୋଟ ହୋଇଯାଏ । ଆନନ୍ଦରେ ମୁଁ ନିଜକୁ ଭୁଲିଯାଏ । ତୁମରି ଆନନ୍ଦରେ ମୋର ଆନନ୍ଦ, ତୁମରି ଦୁଃଖରେ ମୋର ଦୁଃଖ । ମୋ ଆଖିରେ ଧନୀ ଦୁଃଖୀ ସମାନ । ସାନପୁଅ ଚାଲିପାରେ ନାହିଁ ବୋଲି ମା ତାକୁ କାଖାଏ,

ସେ ହାତରେ ଖାଇପାରେ ନାହିଁ ବୋଲି ମା ତାକୁ ସ୍ତନପାନ କରାଏ । ଯେଉଁ ପୁଅର କିଛି ନାହିଁ ତାହା ପାଇଁ ମା'ର ବେଶି ଭାବନା । ତେମେମାନେ ସିନା ଦୁଃଖୀପୁଅଙ୍କ କଥା ବୁଝିଲ ନାହିଁ; ମୁଁ ତୁନିହୋଇ କେମିତି ରହିବି । ଯେଉଁମାନେ ଜଗନ୍ନାଥ ମହାପ୍ରଭୁଙ୍କ ଦେଉଳ ତୋଳିବା ପାଇଁ ପିଠିରେ ପଥର ବୋହି ବୋହି କୁରୁମ ପାଲଟିଯାଇ ପୁରୁଷୋତ୍ତମରେ ଇନ୍ଦ୍ରଦ୍ୟୁମ୍ନ ପୋଖରୀରେ ରହିଛନ୍ତି ସେମାନେ ତ ମୋର ପୁଅ, ନାନାଦେଶର ଲୋକ ଅସି ମୋର କୁରୁମ ପୁଅଙ୍କୁ ଦେଖୁଅଛନ୍ତି, ସେମାନଙ୍କୁ ପ୍ରଶଂସା କରୁଅଛନ୍ତି । ପୁଣି ଦେଉଳ ତୋଳିବା ପାଇଁ ଯେଉଁମାନେ ଗୌଣି ଗୌଣି କରି ଟଙ୍କା ଅଜାଡ଼ି ଦେଇଅଛନ୍ତି ସେମାନେ ବି ମୋର ପୁଅ । ଦୁହିଁଙ୍କୁ ମୁଁ ଏକାଠି କୋଳରେ ବସାଏ; ଦୁହିଁଙ୍କଠାରେ ମୋର ଏକ ସ୍ନେହ ଏବଂ ଶରଧା । କିନ୍ତୁ ଗୋଟିଏ କଥାରେ ମୋର ମନ ଊଣା, ମୋର କେତେଗୁଡ଼ିଏ ପୁଅ ଅଛନ୍ତି ସେମାନେ ଭାରି ଦୁଃଖୀ, ତାଙ୍କ ପାଇଁ ମୁଁ ସବୁବେଳେ କାନ୍ଦୁଛି – ସବୁବେଳେ ମୋର ଆଖିରୁ ଲୁହ ଗଡୁଛି । ସବୁବେଳେ ମୋର ତାଙ୍କରି ଚିନ୍ତା – ମୋର ଧନୀ ପୁଅମାନେ ତାଙ୍କ ଦୁଃଖ ମେଣ୍ଟାଇଲେ ନାହିଁ – ଟିକିଏ ହେଲେ ତାଙ୍କୁ ପଚାରିଲେ ନାହିଁ କି ଅନାଇଲେ ନାହିଁ – କାହିଁକି ଯେ ଅନାଉନାହାନ୍ତି ମୁଁ କିଛି ଜାଣିପାରୁନାହିଁ – ଗରିବ ପୁଅମାନେ ତ ମୋର କେତେ କାମ କରୁଛନ୍ତି – ଚାଷ କରୁଛନ୍ତି,ବାସ କରୁଛନ୍ତି, ମୂଲ ଲାଗୁଛନ୍ତି, କୋଡ଼ି ହାଣୁଛନ୍ତି, ଏମିତି କେତେ କାମ କରୁଛନ୍ତି ତାହା କହିଲେ ସରିବ ନାହିଁ – କେହି କେହି ପୁଣି ମେହେନ୍ତର କାମ କରୁଛନ୍ତି । ତୁମ୍ଭମାନଙ୍କ ମଧ୍ୟରୁ ଯେଉଁମାନେ ମେହେନ୍ତର କାମ କରି ନ ପାରିବେ ସେମାନଙ୍କୁ ନରକ କଷ୍ଟରୁ ରକ୍ଷା କରୁଛନ୍ତି । ପୁଣି ଗରିବ ପୁଅ ନ ଥିଲେ ଯେଉଁ ଧନୀ ପୁଅମାନେ ସୁଖରେ ଅଛନ୍ତି ସେମାନେ ଏତେ ସୁଖରେ ନ ଥାନ୍ତେ । ଚାଷ କିଏ କରନ୍ତା, କୋଡ଼ି କିଏ ହାଣନ୍ତା ? ମୋର ଦୁଃଖୀପୁଅମାନେ ସେମାନଙ୍କ ପାଇଁ ଯଦି ମୁଣ୍ଡଝାଳ ତୁଣ୍ଡରେ ମାରି ନ ଥାନ୍ତେ, ତାହାହେଲେ ଯେଉଁ ପୁଅମାନେ ଧନୀ ହୋଇଅଛନ୍ତି ସେମାନେ କ'ଣ ଧନୀ ହୋଇଥାନ୍ତେ ? ସେମାନେ ଏତେ କରି ସୁଦ୍ଧା ଟିକିଏ ହେଲେ ତାଙ୍କ କଥା କେହି ବୁଝିଲେ ନାହିଁ – ତାଙ୍କ ଆଡ଼କୁ ଅନେଇଲେ ନାହିଁ । ମୁଁ ତ କହୁନାହିଁ ଯେ ସେମାନଙ୍କୁ ଘରେ ବସାଇ ଖାଇବାକୁ ଦିଅ; ତାଙ୍କୁ କାମ ପାଇଟି ଦେଇଥିଲେ ସେମାନେ ମୋ ପାଖରେ ଥାନ୍ତେ । ମୁଁ ତାଙ୍କ କଥା ବୁଝୁଥାନ୍ତି, ସେ ମୋ କଥା ବୁଝୁଥାନ୍ତେ । କାହିଁକି ଦେଶବିଦେଶକୁ ଦଉଡ଼ନ୍ତେ, ପେଟ ପାଇଁ ସିନା ଦଉଡୁଛନ୍ତି; ପେଟ ପୋଷିବା ପାଇଁ ଘରେ ବାଟଥିଲେ ବିଦେଶକୁ ଦଉଡ଼ନ୍ତେ କାହିଁକି ? ସେମାନେ ଗୁଣର ବୋଲି ସିନା ବଙ୍ଗଭଉଣୀ ତାଙ୍କୁ କୋଳରେ ଧରି ଦୁଧ ଭାତ ଖୁଆଉଛି ? ମୋ ପୁଏ ଯାହା ପରଘରେ ପୋଷା ହେଲେ ? ମୁଁ ଯାହା ଗୁଣ୍ଡିଏ ହାତ ଦେଇପାରିଲି ନାହିଁ ! ପୁଣି ସେମାନେ ଏଡ଼େ ଗୁଣର ଯେ ଏହିକ୍ଷଣି ଯେବେ ସେମାନେ କଲିକତା ଛାଡ଼ି ଚାଲି ଆସନ୍ତି, ତେବେ ସବୁ

କଳ କାରଖାନା ଏକାବେଳକେ ବନ୍ଦ ହୋଇଯିବ । ତାଙ୍କୁ ଛାଡ଼ିଦେଲେ ବଙ୍ଗ ଭଉଣୀ ଦିନେହେଁଇ ଚଳିପାରିବ ନାହିଁ – ବଙ୍ଗ ଏଡ଼େ ଉଚ୍ଚ ସିଂହାସନରେ ବସି ସୁଦ୍ଧା ଯାହାଙ୍କୁ ମୁହୂର୍ତ୍ତେ ଛାଡ଼ିଦେଲେ କଣା ହୋଇଯାଏ, ତାଙ୍କୁ ପୁଣି ଘରେ କାମ ପାଇଟି ମିଳୁନାହିଁ – ସେ ଯାଇ ପର ଦୁଆରେ ମୂଲ ଲାଗିଲେ । ବିଦେଶକୁ ତ ପେଟଲାଗି ଚାଲି ଯାଉଛନ୍ତି କିନ୍ତୁ ପାଉଛନ୍ତି କଣ ? ଯେଉଁସବୁ ଜିନିସ ସେମାନେ କଳକାରଖାନାରେ ତିଆରି କରୁଛନ୍ତି, ସେ ଜିନିସରୁ ଯେତେ ଲାଭ ହେଉଛି ତାକୁ ଅନାଇଲେ ପୁଣି ସେଠାରେ ମୋର ପୁଅଙ୍କ ମୂଲକୁ ଅନାଇଲେ ଜଣାଯିବ ଯେ ଲାଭଠାରୁ ମୂଲ ଭାରି ଊଣା । ଆକାଶରୁ ପାତାଳ ଯେତିକି ତଫାତ ଲାଭରୁ ମୂଲ ସେତିକି ତଫାତ । ଲାଭ ଯାକ ଯାଉଚି ପର ହାତକୁ କିନ୍ତୁ ମୋ ପୁଏ ମୁଖ ଝାଳ ତଳିପାରେ ମାରି ପାଉଛନ୍ତି କଣ ? ପୁଣି ଯେଉଁ ମାଲ ମସଲା ଘେନି କଳକାରଖାନାରେ ଜିନିସଗୁଡ଼ିକ ତିଆରି ହେଉଛି, ତହିଁରେ ମୋର ଭାଗ ବେଶି । ସବୁ ଜିନିସ ମୁଁ ତୁମ୍ଭରିମାନଙ୍କ ପାଇଁ ଠାବେ ଠାବେ ଖଞ୍ଜି ରଖିଅଛି । ଦୋସରା ଲୋକେ ତହିଁରୁ ଲାଭ ନେଉଛନ୍ତି । ତୁମ୍ଭେମାନେ ଜଳକା ପରି ଚାହିଁ ରହିଅଛ । ପୁଣି ପର ଦୁଆରକୁ ଦଉଡୁଛ ପେଟ ପୋଷିବାପାଇଁ । ଘର ମାଲ ମସଲା ଘରେ ରଖି ଜିନିସପତ୍ର ଏହିଠାରେ ତିଆରି କରୁଥିଲେ ଲାଭ ଘରେ ରହୁଥାନ୍ତା; ମୂଲକୁ ମୂଲ ପାଉଥାନ୍ତେ । ସେ ବୁଦ୍ଧି ଆଜିଯାଏ ତୁମ୍ଭମାନଙ୍କୁ ଦିଶିଲା ନାହିଁ । ଅନ୍ନ କଷ୍ଟ ହେବାରୁ ପର ଦୁଆରକୁ ଯାଉଛ – ଘରକୁ ଆଣୁଚ ପେଲେଗ ରୋଗ, କଲିକତିଆ ଜର ଓ ଝାଡ଼ାକୋଇ । କେତେ କେତେ ପୁଅ ମୋର ବିଦେଶକୁ ଯାଇ ଏହି ସବୁ ରୋଗରେ ମରିଯାଇ ମୁହଁ ଲୁଚାଇ ରହୁଛନ୍ତି – ଏଥିରୁ ଅଧିକ ଦୁଃଖ ମୋର କଣ ହୋଇପାରେ ? ମୋର ଧନୀ ପୁଏ ଏ ଦୁଃଖକୁ ଟିକିଏ ଦେଖିଲେ ନାହିଁ । ଧନୀ ପୁଅମାନଙ୍କୁ ମୁଁ ପଚାରେ ତାଙ୍କ ଗରିବ ଭାଇମାନଙ୍କ ପାଇଁ ସେମାନେ କଣ କରିଛନ୍ତି ? ଏପର୍ଯ୍ୟନ୍ତ କିଛି କରିନାହାନ୍ତି । କିଛି କରିଥିଲେ ମୋ ଆଖିରୁ ସବୁବେଳେ ଲୁହ ଗଡୁ ନ ଥାନ୍ତା ।

ମୁଁ ଆଜି ମୋର ସବୁପୁଅଙ୍କ ପାଖରେ ଗୋଟିଏ ମାଗୁଣି କରୁଚି – ଏ ସେ ମାଗୁଣିର ଆଜ୍ଞା ପତ୍ରିକା । ମୋର ଗରିବ ପୁଅଙ୍କ ପାଇଁ ମୁଁ ଯାହା ଏହିକ୍ଷଣି କରିବାକୁ ଯାଉଚି ସେଥିରେ ସମସ୍ତେ ଆସି ଯୋଗଦିଅ । ତୁମ୍ଭେମାନେ ଯେବେ ମତେ ଏଥିରେ ସାହାଯ୍ୟ କରିବ, ମୋ ଗରିବ ପୁଅମାନଙ୍କ ଦୁଃଖ ନିଶ୍ଚେ ମେଣ୍ଟିବ । ମୋର ପୁଏ ଜଗନ୍ନାଥ ଦେଉଳ ତୋଳିଥିଲେ, ଆଜି ଜଗତ ଲୋକେ ସେହିଠାରେ ମୁଣ୍ଡିଆ ମାରୁଛନ୍ତି । ମୋର ଲକ୍ଷ ଲକ୍ଷ ପୁଅ ମହାପ୍ରଭୁଙ୍କ ଦେଉଳଲାଗି ପୋଷି ହେଉଚନ୍ତି । ସେହିପରି ଆହୁରି ଗୋଟିଏ ଦେଉଳ ମୁଁ ତୋଳିବି । ସେହିଠାରେ ମୋର ଗରିବ ପୁଅମାନେ ପୋଷା ହେବେ, ମୁଁ ନିଜେ ସେହିଠାରେ ରହିବି, ଲକ୍ଷ୍ମୀସାନ୍ତାଣିଙ୍କୁ ଆଣି ରଖିବି । ସବୁଦିନେ ଗୁରୁବାର ଓଷା କରିବି । ମାଣ ବସାଇବି ଓ ଠାକୁରାଣୀଙ୍କୁ ପୂଜା ନିତିନିତି କରୁଥିବି ।

ଲକ୍ଷ୍ମୀଙ୍କର କୋଠଭଣ୍ଡାର ତହିଁରେ ଆଣିଦେବି ଓ ଗୋଟିଏ ଧାନମେଣ୍ଟା ଟାଙ୍ଗିଦେବି । ସେହିଠାରେ ମୋର ସବୁ ଦୁଃଖିପୁଅଙ୍କୁ ଖାଇବାକୁ ଦେବି । ସେହି ଦେଉଳ ତୋଳିବା ପାଇଁ ତୁମ୍ଭମାନଙ୍କୁ ସମସ୍ତଙ୍କୁ ଗୋଟିଏ ଲେଖାଏଁ ଟଙ୍କା ମାଗୁଚି । ବର୍ଷକୁ ବର୍ଷ ପୁନିଅ ପର୍ବରେ ଧର୍ମ ଅରଜିବାପାଇଁ କେତେ କେତେ ଟଙ୍କା ଖରଚ କରୁଚ, କିନ୍ତୁ ଏ ଧରମ ଅରଜିବାପାଇଁ ତମ ଜୀବନଯାକରେ ଥରେ ମାତ୍ର ଗୋଟିଏ ଟଙ୍କା ଦେବାକୁ ହେବ । ଏ ଦାନରେ ଯେତେ ଧରମ ହେବ ତାହା ଓଷା ପୂଜା ଧରମଠାରୁ ଅଧିକ । ଏ ଟଙ୍କାରେ ଯେ କେବଳ ଦୁଃଖିମାନେ ପୋଷା ହେବେ ତାହା ନୁହେଁ । ଯେଉଁମାନେ ଟଙ୍କାଏ ଲେଖାଏଁ ଦେଇଥିବେ ସେମାନେ ମଧ ସେଥିର ଭାଗ କିଛି ପାଇବେ । ଏଥିରେ କେହି କଳପଣା କରିବ ନାହିଁ । କଳପଣା କଲେ ମୋ ଆଖିରୁ ଚିରଦିନ ଲୁହ ଗଡୁଥିବ । ମା'ର ଅସନ୍ତୋଷ ହେଲେ ଭଗବାନ ନିଜେ ଅସନ୍ତୁଷ୍ଟ ହୁଅନ୍ତି । ଭଗବାନଙ୍କ ଅସନ୍ତୋଷରେ ତୁମ୍ଭମାନଙ୍କର ଅନିଷ୍ଟ ହୋଇପାରେ । ସେ ଅନିଷ୍ଟ ଆଉ ଏଣେ ଦୁଃଖିପୁଅଙ୍କ ଦୁଃଖ – ଏ ଦୁହିଁଙ୍କି ଦେଖି ମୋର ଦେହ ସହିବ ନାହିଁ । ଏଣୁକରି ମୁଁ ତୁମ୍ଭମାନଙ୍କର ନିକଟରେ ଏ ମାଗୁଣିଟି କରୁଅଛି ।

ଯେଉଁମାନେ ଟଙ୍କାଟିଏ କରି ଦେବାକୁ ଇଛା କରନ୍ତି ସେମାନେ ଓଡ଼ିଆ ପୁଅଙ୍କର ଯେଉଁ ମେଳା କଟକରେ ହେବ, ସେହିଠାକୁ ଜଣାଇଲେ ମୁଁ କେଡ଼େ ବଡ଼ ଦେଉଳ କରିବାକୁ ହେବ ତାହା ଠିକ୍ କରି କାମ ଆରମ୍ଭ କରିବି ଏବଂ ସେମାନଙ୍କର ନାମ ଛପାଇ ଚାରିଆଡ଼େ ବାଣ୍ଟିବି । ଉତ୍କଳ ସମ୍ମିଳନୀର ସମ୍ପାଦକ ଶ୍ରୀ ମଧୁସୂଦନ ଦାସ,(ଡାକନାମ ମଧୁବାବୁ) କଟକଙ୍କ ନିକଟକୁ ଚିଠିପତ୍ର ପଠାଇବାକୁ ହେବ ।

***

## ୨୯

## ଧରାକୋଟରୁ ପ୍ରକାଶିତ 'ସମାଜମିତ୍ର'ର ସହକାରୀ ସମ୍ପାଦକ ଜୟମଙ୍ଗଳ ରଥଙ୍କ ପତ୍ରର ଉତ୍ତର

ଆପଣଙ୍କର ପତ୍ର ମୁଁ ପାଇଅଛି, ତଦ୍ ସମ୍ବନ୍ଧେ ମୋର ଯାହା ବକ୍ତବ୍ୟ ତାହା ମୁଁ ଏଠି ଲେଖୁଅଛି । ଉତ୍କଳସମ୍ମିଳନୀର କି ପ୍ରକାର ଗଠନ ହେଲା, ତାହା ମନେ ରଖିବା ଉଚିତ । ପ୍ରଥମେ ମୁଁ ଉତ୍କଳରେ କେତେକ ଲୋକଙ୍କୁ ନିମନ୍ତ୍ରଣ କରି ଏକ ସଭା କରାଇଥିଲି । ଉକ୍ତ ସଭାରେ ସମସ୍ତ ଓଡ଼ିଆମାନେ ଉତ୍କଳମାତାର ସନ୍ତାନ ବୋଲି ପରସ୍ପରକୁ ଭାଇ ମନେ କରିବାର ଉଚିତ, ଏହି ଶିକ୍ଷା ଦେବାକୁ ଆମ୍ଭେମାନେ ଚେଷ୍ଟା କରିଥିଲୁ । ପ୍ରାୟ ଚଉଦ ବର୍ଷ ହେଲା ପ୍ରତ୍ୟେକ ସମ୍ମିଳନୀରେ ଏହି ବିଷୟ ଶିକ୍ଷା ଦିଆ ହୋଇଅଛି । ବର୍ତ୍ତମାନ ଅନେକ ଲୋକ କହନ୍ତି ଏବଂ ଆପଣଙ୍କ ପତ୍ରରୁ ମଧ ପ୍ରମାଣ

ହେଉଅଛି ଯେ ଓଡ଼ିଆମାନେ ଆପଣକୁ ଏକ ସ୍ୱତନ୍ତ୍ର ଜାତି ବୋଲି ଜ୍ଞାନ କରନ୍ତି । ଏ ଜ୍ଞାନ, ଅର୍ଥାତ୍ ଆମ୍ଭେମାନେ ଗୋଟିଏ ସ୍ୱତନ୍ତ୍ର ଜାତି ଏହି ଜ୍ଞାନ, ବର୍ତ୍ତମାନ ଅବସ୍ଥାରେ ଜାତିର ଏକମାତ୍ର ପାଣ୍ଠି, ଏକମାତ୍ର ସମ୍ବଳ । ଅନ୍ୟ କଥାରେ ମୁଁ ଏହାକୁ ସମ୍ବଳ ନ କହି ଜାତିର ବଳ କହେଁ । ଜାତିର ଉନ୍ନତି କରିବାକୁ ଗଲେ ଜାତିର ସମ୍ବଳଦ୍ୱାରା କାର୍ଯ୍ୟ ଆରମ୍ଭ କରିବାକୁ ହେବ । ଅନ୍ୟତ୍ର ଯେ ସବୁ କଳ କାରଖାନା ହୋଇଅଛି ସେ ସବୁ ଧନୀ ଲୋକମାନେ ଧନ ଦେଇ କମ୍ପାନୀ କରି ଶିଳ୍ପ ଇତ୍ୟାଦିର ଉନ୍ନତି କରୁଅଛନ୍ତି । ତାହାଙ୍କ ଯାହା ଲାଭ ହୁଏ ତାହା ଯେଉଁମାନେ ଧନ ଦେଇଅଛନ୍ତି ସେମାନଙ୍କର ପ୍ରାପ୍ୟ ଏବଂ ସେହିମାନେ ତାହା ନେଇଥାନ୍ତି । ଏ ପ୍ରଥା ଇୟୁରୋପରେ ଚଳି ଆସୁଅଛି ଏବଂ ଏଠାରେ ଅନୁକରଣ କରା ହୋଇଅଛି; ଏବଂ ଓଡ଼ିଶାରେ ଅନୁକରଣ କରା ଉଚିତ, ଏହା ଅନେକ ଲୋକ ମନେ କରନ୍ତି । କିନ୍ତୁ ଇୟୁରୋପରେ ବର୍ତ୍ତମାନ ଏ ପ୍ରଥାର ଅନିଷ୍ଟ ଦେଖାଯାଉଅଛି । ବର୍ତ୍ତମାନ ଇୟୁରୋପରେ ଦେଖାଯାଏ ଅନେକ ଧନୀ ଅଛନ୍ତି ଏବଂ ସେମାନଙ୍କର ଅତୁଳ ଧନ ଅଛି, ସେ ଧନ ଶିଳ୍ପ ଉପାର୍ଜିତ । କିନ୍ତୁ ଯେଉଁମାନେ ସେ ସବୁ କାରଖାନାରେ କାର୍ଯ୍ୟ କରୁଅଛନ୍ତି ସେମାନେ ବର୍ତ୍ତମାନ ବୁଝିଲେଣି ଯେ ତାଙ୍କର ପରିଶ୍ରମର ଫଳ ଅଧିକାଂଶ ଧନୀ ପାଉଅଛି । ସେମାନଙ୍କର ଦାରିଦ୍ର୍ୟ ଯାଉନାହିଁ । ଆମ୍ଭମାନଙ୍କର ବୁଝିବା ଉଚିତ ଯେ ଧନ, ଜନ, ମନ ଏହି ତିନୋଟି ମନୁଷ୍ୟ ସମାଜର ବଳସ୍ୱରୂପ । ଦେଶର କୌଣସି ଉନ୍ନତି କରିବାକୁ ଚେଷ୍ଟା କଲେ ଏହି ତିନିବନ୍ଧୁକୁ ଏକତ୍ର କରିବାକୁ ହେବ । ଏ ତିନିଗୋଟି ବଳ ତିନି ଶ୍ରେଣୀର ଲୋକଙ୍କ ହାତରେ ଅଛି । ଧନ – ଜମିଦାର, ରାଜା, ମହାଜନ ଏମାନଙ୍କ ହାତରେ ଅଛି । ମନ ଅର୍ଥାତ୍ ଯାହାର ଅର୍ଥ ବୁଦ୍ଧି – ଏ ଶକ୍ତି ସୁଶିକ୍ଷିତ ଲୋକମାନଙ୍କ ହାତରେ ଅଛି । ଜନ – ଏ ସାଧାରଣ ଲୋକଙ୍କ ହାତରେ ଅଛି । ପ୍ରତ୍ୟେକ କାରଖାନାରେ ଅର୍ଥ ଆବଶ୍ୟକ, ଚଳାଇବା ପାଇଁ ବୁଦ୍ଧି ଆବଶ୍ୟକ, କାର୍ଯ୍ୟ କରିବା ନିମନ୍ତେ ଅନେକଗୁଡ଼ିଏ ଲୋକ ଆବଶ୍ୟକ । ଏହା ମଧ୍ୟରୁ କୌଣସି ଶକ୍ତିର ଅଭାବ ହେଲେ କାର୍ଯ୍ୟ ସଫଳ ହେବ ନାହିଁ । ଏ ତିନି ଶକ୍ତି ମଧ୍ୟରେ ଶେଷୋକ୍ତ ଶକ୍ତି ଅର୍ଥାତ ଜନ ଶକ୍ତି ଅନେକ ଲୋକଙ୍କ ହାତରେ ଗଚ୍ଛିତ । ଅର୍ଥାତ୍ ଗୋଟାଏ କାରଖାନାକୁ ଗଲେ ଦେଖିବ କାମ କରିବାବାଲା ଦଶହଜାର । ଏ ପ୍ରକାର କାରଖାନା ଅଛି ଯେଉଁଠି ଧନ ଏକ ବ୍ୟକ୍ତିର କିମ୍ବା କମ୍ପାନୀ ଗଠିତ ହୋଇଥିଲେ ଶଏ ଦୁଇଶ ଲୋକଙ୍କର, ଚଳାଇବାବାଲା ଜଣେ କି ଦୁଇଜଣ । କିନ୍ତୁ କାର୍ଯ୍ୟ ସୁଚାରୁରୂପେ ଚଳାଇବା ଦଶ ହଜାର ଲୋକଙ୍କ ଉପରେ ନିର୍ଭର କରେ । ମ୍ୟାନେଜର କାରିଗରମାନଙ୍କୁ ଶାସ୍ତି ଦେଇପାରେ, କିନ୍ତୁ ସେମାନଙ୍କର ନିଜର ସ୍ୱାର୍ଥ ନ ଥିଲେ (କାରିଗରମାନେ) ମନ ଦେଇ କାର୍ଯ୍ୟ କରିବେ ନାହିଁ । ଏହି ହେତୁରୁ ଇୟୁରୋପରେ ବର୍ତ୍ତମାନ ଭୟାନକ ବିପଦ ଉପସ୍ଥିତ ହୋଇଅଛି । ଏହାର ଉଦାହରଣ ବର୍ତ୍ତମାନ ଆପଣ ଋଷ ଦେଶର ଅବସ୍ଥାରେ

ପାଇବେ । ଅତଏବ ମୋର ମତ ଜାତିର ଉପକାର କରିବାକୁ ହେଲେ ଜାତିର ସମ୍ବଳ ନେଇ କାର୍ଯ୍ୟ ଆରମ୍ଭ କରିବା ଉଚିତ । ଜାତିର ଉନ୍ନତି ଲୋଡ଼ିବା ଉଚିତ । ମୁଁ ଉପରେ କହିଅଛି ଜାତିର ସମ୍ବଳ କେବଳ ଜାତୀୟ ଜ୍ଞାନ, ବର୍ତ୍ତମାନ ଅଛି । ଧନ ଓ ବୁଦ୍ଧି ଜାତିର ସମସ୍ତଙ୍କର ନାହିଁ, ତାହା କେବଳ କେତେକ ଲୋକଙ୍କର ହସ୍ତଗତ । ଅତଏବ ମୁଁ ଜାଣିବାକୁ ଇଚ୍ଛାକରେ ଯେ ଏ ଜାତୀୟ ଜ୍ଞାନ ଯେଉଁମାନଙ୍କର ହୋଇଅଛି ସେମାନେ ଜାତିର ଉନ୍ନତି ନିମନ୍ତେ କି ପରିମାଣରେ ଅର୍ଥ ଦେବାକୁ ପ୍ରସ୍ତୁତ । ସେହି ଅର୍ଥର ମୂଳ ପାଣ୍ଠି କରାଯିବ ଏବଂ ସେହି ପାଣ୍ଠିଦ୍ୱାରା ଯେଉଁ କାର୍ଯ୍ୟ କରା ହୋଇପାରେ ତାହା କରାଯିବ । କିନ୍ତୁ ସେହି କାର୍ଯ୍ୟଟି ସ୍ଥିର କରିବା ପୂର୍ବରୁ ଏହା ବିବେଚନା କରିବାକୁ ହେବ ଯେ ଜାତିର ଅଧିକାଂଶ ଲୋକଙ୍କର ଯାହାଦ୍ୱାରା ଉପକାର ହେବ ସେହିରୂପ ପଦାର୍ଥ ପ୍ରସ୍ତୁତ କରିବାକୁ ହେବ । ଆପଣ ଲେଖିଅଛନ୍ତି କାଗଜ କିମ୍ବା ଲୁଗାର କାରଖାନା କରା ଉଚିତ । ମୋର ବକ୍ତବ୍ୟ ଆଗେ କେତେ ଧନ ମିଳିବ ତାହା ସ୍ଥିର କରା ଉଚିତ, ତତ୍ପରେ ତଦୁପଯୋଗୀ କାରଖାନା କରା ଉଚିତ । ଯଦି ଏକ ଟଙ୍କା ହିସାବରେ ଅଂଶ ସ୍ଥିର କରାହୁଏ ମୁଁ ଜାଣିବାକୁ ଇଚ୍ଛା କରେଁ କେତେ ଗରିବ ଲୋକ ଏ ପ୍ରକାର ଅଂଶ କ୍ରୟ କରିପାରିବେ ଏବଂ ଆପଣଙ୍କର 'ସମାଜମିତ୍ର' ଅଫିସ କେତେ ଗ୍ରାହକ ଦେଇପାରନ୍ତି । ଏ ବିଷୟର ଉତ୍ତର ଅନୁଗ୍ରହ କରି ମତେ ଲେଖିବା ହେବେ ଏବଂ ଏ ବିଷୟରେ ଆପଣଙ୍କର ଯାହା କିଛି ବକ୍ତବ୍ୟ ତାହା ମଧ୍ୟ ଲେଖିବା ହେବେ । ଇତି ।

***

## ୩୦

## ଚତୁର୍ଦ୍ଦଶ ଅଧିବେଶନରେ ଉପସ୍ଥାପିତ
## ବିଶେଷ ବକ୍ତବ୍ୟ

ଭାଇମାନେ !

ଉତ୍କଳ ସମ୍ମିଳନୀ ସଙ୍ଗେ ମୋର କି ସମ୍ପର୍କ ତାହା କହିବା ଅନାବଶ୍ୟକ । ମୁଁ ବର୍ତ୍ତମାନ ସମ୍ମିଳନୀର ଅଧିବେଶନରେ କୌଣସି କାର୍ଯ୍ୟରେ ଯୋଗ ଦେଇନାହିଁ, ତାହା ସମ୍ମିଳନୀର ମଙ୍ଗଳ ଉଦ୍ଦେଶ୍ୟରେ । ମନୁଷ୍ୟ ମାତ୍ରର ଜୀବନ ଏ ସଂସାରରେ ଈଶ୍ୱର ଆଦେଶ ପାଳନ ସକାଶେ । କାହାକୁ ଈଶ୍ୱର କି ଉଦ୍ଦେଶ୍ୟରେ ପୃଥିବୀକୁ ପଠାଇ ଅଛନ୍ତି ତାହା ସେହି ଲୋକ ଠିକ୍ କରିବା ଉଚିତ । ମୋର ଓଡ଼ିଆ ଜାତିରେ ଜନ୍ମର କାରଣ ସେହି ଈଶ୍ୱରଙ୍କୁ ଜଣା । ମୋର ଜୀବନର କାର୍ଯ୍ୟ ମୋର ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ କରିବି । ଯେଉଁଠାରେ କାର୍ଯ୍ୟ କଲେ ଲୋକେ ଚାହାନ୍ତି ନାହିଁ, ସେଠାରେ କାର୍ଯ୍ୟ କରିବା

ଉଚିତ ନୁହେଁ । ସମ୍ମିଳନୀ ଗଠନ କାଳରେ ଓଡ଼ିଶାରେ ଏପରି କୌଣସି ଲୋକ ନ ଥିଲେ ଯାହାଙ୍କ ପରାମର୍ଶ ଗ୍ରହଣ କରି ମୁଁ ସେତେବେଳେ କାର୍ଯ୍ୟ କରିଥାନ୍ତି । ଓଡ଼ିଶାରେ ସେତେବେଳେ ଏପରି କୌଣସି ଲୋକ ନ ଥିଲେ ଯେ କି ଆପଣାକୁ ଓଡ଼ିଆ ବୋଲି ପରିଚୟ ଦେଇଥିଲେ । ଓଡ଼ିଶାର ଜଣେ ରାଜା ଆପଣାକୁ କଲିକତାରେ ବଙ୍ଗାଳୀ ବୋଲି ପରିଚୟ ଦେଇଥିଲେ । ଏ ସମସ୍ତ ବିଚାର କଲେ ମୋର ସେତେବେଳେ କଣ କରିବାର ଉଚିତ ଥିଲା ? ମୁଁ ସେହି ରାଜାଙ୍କୁ ଚାରିଘଣ୍ଟା ମଧ୍ୟରେ ଓଡ଼ିଆ କରିଥିଲି । ଆଲେକଜାଣ୍ଡର ଶେଲ୍‌କାର୍କଙ୍କ ଯେତେବେଳେ ଜାହାଜ ବୁଡ଼ିଗଲା ସେତେବେଳେ ଅନ୍ୟର ପରାମର୍ଶ ଲୋଡ଼ିବାର ସୁଯୋଗ ଓ ସମୟ ତାହାଙ୍କର ନ ଥିଲା ।

ତେଣୁ ଇଂରାଜୀରେ ଯାହାକୁ କହନ୍ତି immoderate and autocratic whims ତାହା ମୋ ସଙ୍ଗେ ଯୁକ୍ତ ହୋଇ ଯାଇଅଛି । ବର୍ତ୍ତମାନ ମୋର ପରାମର୍ଶ କେହି ଚାହାନ୍ତି ନାହିଁ, ଏହିଠାରର ଲୋକେ ବାଙ୍କିପୁରରେ ପ୍ରଚାର କରିଅଛନ୍ତି । ମୁଁ ଆଜିକାଲି ଇଂରାଜମାନଙ୍କ ସଙ୍ଗେ ମିଶୁ ନ ଥିବାରୁ ଜଣେ ସାହେବ ମୋତେ ପଚାରିଥିଲେ – ''ତୁମେ ଆଜିକାଲି ପୂର୍ବପରି ସାହେବମାନେ ସଙ୍ଗେ କାହିଁକି ମିଶୁନାହିଁ ?'' ମୁଁ କହିଲି, ''ଯେଉଁଠାରେ ମୋର ଆବଶ୍ୟକତା ନାହିଁ, ସେଠାରେ ମୋର ମିଶିବା ପ୍ରୟୋଜନ ନାହିଁ ।'' କଥାରେ କହନ୍ତି, ''ଆଲୋ ସଖି, ଆପଣା ମହତ ଆପେ ରଖି ।'' ଯେଉଁଠାରେ ମୋର ଲୋଡ଼ାନାହିଁ, ସେଠାକୁ ଯିବାର ନୁହେଁ । ଓଡ଼ିଶା ବିଶାଳ, କାର୍ଯ୍ୟକ୍ଷେତ୍ର ଅନେକ । ଏହିଠାରେ ଗତକାଲି ଜଣେ ବନ୍ଧୁ ମୋତେ ଗୋଟିଏ କଥା ଦେଖାଇଦେଲେ । ସେଥି ସକାଶେ ଗତବର୍ଷ ନାନା ପ୍ରକାର ସମାଲୋଚନା ହୋଇଥିଲେ ମଧ୍ୟ ପୁନର୍ବାର ସେହି ଭ୍ରମ ଘଟିଅଛି । ବର୍ତ୍ତମାନ ଯେଉଁମାନେ କାର୍ଯ୍ୟ କରୁଅଛନ୍ତି, ମୋର autocratic immoderate whim ହେଲେ ମଧ୍ୟ ସେମାନଙ୍କୁ କାର୍ଯ୍ୟ କରିବାକୁ ମୁଁ ଶିଖାଇଅଛି । ମୁଁ ଦେଖିବାକୁ ଚାହେଁ immoderate whimକୁ ବାଦ ଦେଲେ ଯଦି କାର୍ଯ୍ୟ ଚଳିଯାଏ, ତେବେ ହୁଏତ ମୋର ଶିକ୍ଷା ହେବ; ନଚେତ୍ criticମାନଙ୍କର ଶିକ୍ଷା ହେବ । ଯେତେବେଳ ଯାଏଁ ଲୋକେ କାର୍ଯ୍ୟ ନ କରିବେ, ସେତେବେଳ ଯାଏ କାର୍ଯ୍ୟ କରିବାରେ କ୍ଷତି । ସ୍ୱାର୍ଥତ୍ୟାଗ ବୁଝିବା କଠିନ, ବାହାରୁ ଲୋକର ଦୋଷ ଦେଖିବା ସହଜ । ସମ୍ମିଳନୀ ସଙ୍ଗେ ସମ୍ପର୍କ ନ ରଖିବା ମୋର ଇଚ୍ଛା ନୁହେଁ ।

***

## ପ୍ରାକ୍-କଥନ

୧୮୮୧ ମସିହା ସେପ୍ଟେମ୍ବର ମାସର ମଧ୍ୟ ଭାଗରେ ଦୀର୍ଘଦିନର ବିରତି ପରେ ମଧୁସୂଦନ ଦାସ ଓଡ଼ିଶା ଫେରି ଆସି କଟକରେ ଏକ ନୂତନ ଜୀବନ ଆରମ୍ଭ କରିଛନ୍ତି । ସେପ୍ଟେମ୍ବର ୧୯ ତାରିଖରୁ କଟକର ଅଦାଲତଗୁଡ଼ିକରେ ଓକିଲାତି ଆରମ୍ଭ କଲାପରେ ତାଙ୍କର ଦ୍ୱିତୀୟ ପଦକ୍ଷେପ ହୋଇଛି କଟକର ବିଦ୍ୱଦ୍‌ମହଲରେ ନିଜ ପାଇଁ ଏକ ପରିଚୟ ସୃଷ୍ଟି କରିବା । ସେଥିପାଇଁ **ଉତ୍କଳଦୀପିକା** ପ୍ରକାଶ ଲାଭ କରୁଥିବା କଟକ ପ୍ରିଣ୍ଟିଂ କମ୍ପାନୀ କୋଠାରେ ସେପ୍ଟେମ୍ବର ୨୬ ତାରିଖରେ ଏକ ଭାଷଣ ଦେଇଛନ୍ତି – ଭାଷଣର ବିଷୟ ଥିଲା : Unification of Indian Alphabets । ଏହା ପରେ ଜଣେ ସୁବକ୍ତା ଭାବରେ ମଧୁସୂଦନ ଖ୍ୟାତି ଲାଭ କରିଛନ୍ତି । ମଧୁସୂଦନଙ୍କର ବକ୍ତୃତା ପ୍ରତି ଥିଲା ଏକ ସ୍ୱାଭାବିକ ପ୍ରବଣତା । ନିଜ ସମ୍ପର୍କରେ ତାଙ୍କର ଏକ ଉକ୍ତି ହେଲା: 'I am a restless talker, not pinned down to concentrated writing.'(ଦାଶ, ୧୯୭୧ : ପୃ.୫୪୭) ଏହି ଅସ୍ଥିରତା ହେତୁ ଜୀବନରେ ସେ ବକ୍ତୃତା ଦେଇଛନ୍ତି ବେଶୀ ଓ ଲେଖିଛନ୍ତି କମ୍ । ଫଳରେ ତାଙ୍କର ଅଧିକାଂଶ ବକ୍ତୃତାର ଲିଖିତ ରୂପ ଦୁର୍ଲଭ ।

ଜୀବନସାରା ଓଡ଼ିଆ ଭାଷା, ସଂସ୍କୃତି ଓ ଜାତି ପାଇଁ ଲଢ଼ିଥିଲେ ବି ବ୍ୟକ୍ତିଗତ ଜୀବନରେ ସର୍ବଦା ବଙ୍ଗଳା ଭାଷା ବ୍ୟବହାର କରୁଥିବା ନେଇ ମଧୁସୂଦନଙ୍କର ଅପଖ୍ୟାତି ଥିଲା । ଅପରପକ୍ଷରେ ତାଙ୍କ ଲେଖା ଓ ବକ୍ତୃତାର ସ୍ୱାଭାବିକ ଭାଷା ଥିଲା ଇଂରାଜୀ । ଅବଶ୍ୟ ସେତେବେଳେ ଅଧିକାଂଶ ବୁଦ୍ଧିଜୀବୀ ଇଂରାଜୀ ଭାଷାକୁ ଆପଣାର ଭାବପ୍ରକାଶର ଯଥାର୍ଥ ମାଧ୍ୟମ ବୋଲି ବିବେଚନା କରୁଥିଲେ । କିନ୍ତୁ ଇଂରାଜୀ ଭାଷାର ସୀମିତ ଆବେଦନ ସମ୍ପର୍କରେ ଯଦି କେହି ଅଧିକ ସଚେତନ ଥିଲେ, ସେ ହେଉଛନ୍ତି ମଧୁସୂଦନ । ୦୧.୦୧.୧୯୧୫ ତାରିଖରେ ସୁରେନ୍ଦ୍ରନାଥ ବାନାର୍ଜୀଙ୍କୁ ଅଭ୍ୟର୍ଥନା ଦେବା ଉଦ୍ଦେଶ୍ୟରେ କଟକରେ ଯେଉଁ ସଭା ହୋଇଥିଲା, ସେଇ ସଭାରେ ଇଂରାଜୀରେ ଅଭିଭାଷଣ ଦେବା ଅବସରରେ ମଧୁସୂଦନ କହିଥିଲେ :

> ସୁରେନ୍ଦ୍ରବାବୁ ଇଂରାଜୀ ଭାଷାରେ ଭାରତର ବିଭିନ୍ନ ଅଂଶରେ ବକ୍ତୃତା ଦେଇ ସର୍ବପ୍ରଥମେ ଭାରତୀୟ ଏକତା ଓ ସଂହତି ଭାବ ଅଣାଇଛନ୍ତି ସତ୍ୟ କିନ୍ତୁ ଏ ବକ୍ତୃତାମାନ ଇଂରାଜୀ ଭାଷାରେ ହୋଇଥିବାରୁ ସେଥିପାଇଁ ଗଣ ଆନ୍ଦୋଳନ ହୋଇପାରୁନାହିଁ ଓ ଗାଁ ଗହଳିରେ ତାହା ପ୍ରବେଶ କରିପାରୁ ନାହିଁ । ଆଞ୍ଚଳିକ ଭାଷା ମାଧ୍ୟମରେ କେବଳ ଗଣ ଆନ୍ଦୋଳନ ତେଜି ଉଠିବ ।
> (**ଉତ୍କଳ-ଦୀପିକା**-୫୦/୧; ୦୧.୦୧.୧୯୧୫)

ଏହି ସଚେତନତା ହେତୁ ୧୮୮୮ ମସିହା ଫେବ୍ରୁଆରୀ ୧୨ ତାରିଖରେ ଲବଣକରକୁ ପ୍ରତିବାଦ କରିବା ଉଦ୍ଦେଶ୍ୟରେ ଅନୁଷ୍ଠିତ ସଭାରେ ପ୍ରଥମ ଥର ପାଇଁ ସେ ଓଡ଼ିଆରେ ଭାଷଣ ଦେଇଥିଲେ । ପରେ ଓଡ଼ିଆରେ ଭାଷଣ ଦେବା ତାଙ୍କ ପାଇଁ ସହଜ ହୋଇଯାଇଥିଲା । ସାଧାରଣ ଲୋକଙ୍କୁ ନେଇ ସଂଗଠିତ ସଭାଗୁଡ଼ିକରେ ଓ ଉତ୍କଳ-ସମ୍ମିଳନୀରେ ସେ ମୁଖ୍ୟତଃ ଓଡ଼ିଆରେ ହିଁ ଭାଷଣ ଦେଇଛନ୍ତି ।

ତାଙ୍କର ଓଡ଼ିଆ ଭାଷଣଗୁଡ଼ିକ ମଧ୍ୟରୁ ମାତ୍ର ତେରଟି ଭାଷଣ ସ୍ୱର୍ଗତ ନବକିଶୋର ଦାସ ସଂଗ୍ରହ କରିଥିଲେ । ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ବହୁ ଭାଷଣର ସୂଚନା ଦେଇଥିଲେ ବି ଅନ୍ୟ କୌଣସି ଗବେଷକ ସେଗୁଡ଼ିକୁ ସଂଗ୍ରହ କରିବା ପାଇଁ ପଦକ୍ଷେପ ନେଇ ନ ଥିଲେ । ପ୍ରସ୍ତୁତ ସଂକଳନର ପ୍ରଥମ ସମ୍ପାଦକ ମଧୁସୂଦନଙ୍କର ତିନୋଟି ଭାଷଣ **ଓଡ଼ିଶାର ଜନକ ମଧୁସୂଦନ** ପୁସ୍ତକରେ (ପୃ:୧୪୩-୫୭) ଓ ଗୋଟିଏ ଭାଷଣ ରାଉରକେଲାର ପ୍ରଗତି ଉତ୍କଳ ସଂଘ ଦ୍ୱାରା ପ୍ରକାଶିତ ବାର୍ଷିକ ସଂକଳନ **ଉତ୍କଳ ଗୌରବ** - ୨୦୦୫ ସଂଖ୍ୟାରେ (ପୃ:୨୯-୩୩) ବିଭିନ୍ନ ସୂତ୍ରରୁ ସଂଗ୍ରହ କରି ସୂଚନା ସହ ପୁନଃ ମୁଦ୍ରିତ କରିଥିଲା । **ଓଡ଼ିଶାର ଜନକ ମଧୁସୂଦନ** ପୁସ୍ତକରେ ସଂକଳିତ ପ୍ରଥମ ଭାଷଣକୁ ପରବର୍ତ୍ତୀକାଳରେ ବହୁ ସଂକଳନରେ ବିନା ସ୍ୱୀକୃତିରେ ପତ୍ରସ୍ଥ କରାଯାଇଛି । ନବକିଶୋର ଦାସଙ୍କ ଦ୍ୱାରା ସଂକଳିତ ଅଭିଭାଷଣଗୁଡ଼ିକ 'ଉତ୍କଳ ସମ୍ମିଳନୀ'ରେ ପ୍ରଦତ୍ତ ଓ ସେଗୁଡ଼ିକ ମୂଳ ଉତ୍ସରୁ ସଂଗୃହୀତ ହୋଇ ଏହି ସଂକଳନର ଦ୍ୱିତୀୟ ବିଭାଗରେ ସ୍ଥାନିତ । ଏହି ବିଭାଗରେ 'ଉତ୍କଳ ସମ୍ମିଳନୀ' ବାହାରେ ପ୍ରଦତ୍ତ ଅଭିଭାଷଣଗୁଡ଼ିକ ସଂକଳିତ । ଗୋଟିଏ ଚିଠିରେ ନିଜ ଭାଷଣ ସମ୍ପର୍କରେ ସ୍ପଷ୍ଟୀକରଣ ଦେଇ ମଧୁସୂଦନ ଲେଖିଥିଲେ: "I am not in the habit of writing my speeches, but occasionally I speak from notes."(**ଉତ୍କଳ ଦୀପିକା**-୩୩।୪; ୨୬.୦୧.୧୮୯୮) ଚିଠା କରୁ ନଥିବାରୁ ଓ ସମ୍ପୂର୍ଣ୍ଣ ମୌଖିକ ହୋଇଥିବାରୁ ତାଙ୍କର ଅଧିକାଂଶ ଭାଷଣ – ତାହା ଇଂରାଜୀରେ ହେଉ କି ଓଡ଼ିଆରେ ହେଉ – ଶୂନ୍ୟରେ ଉଡ଼ିଯାଇଛି । ଅଳ୍ପ କେତେକ ଭାଷଣକୁ ଅନ୍ୟମାନେ ଲିପିବଦ୍ଧ କରିଥିବାରୁ ବା ତାହାର ସାରକଥାକୁ ପତ୍ରିକା ପାଇଁ ସାମ୍ବାଦିକମାନେ ସଂଗ୍ରହ କରିଥିବାରୁ ସେଗୁଡ଼ିକ ପରବର୍ତ୍ତୀ ପ୍ରଜନ୍ମ ପାଇଁ ସଂଗ୍ରହ କରିବା ସମ୍ଭବପର ହୋଇଛି । ତେଣୁ ଏଠାରେ ସଂକଳିତ ତାଙ୍କର ବକ୍ତୃତାବଳୀ ମଧ୍ୟରୁ ଅଧିକାଂଶ ତାଙ୍କ ବକ୍ତବ୍ୟର ସାରତ୍‌ସାର – ଭାଷଣର ପୂର୍ଣ୍ଣାଙ୍ଗ ପ୍ରତିଲିପି ନୁହେଁ । ଏହି ସମସ୍ତ ଭାଷଣ ବିଭିନ୍ନ ସ୍ଥାନ ଓ ପରିପ୍ରେକ୍ଷୀରେ ଓଡ଼ିଆ ଭାଷାରେ ଦିଆଯାଇଛି । ତେଣୁ ସେଗୁଡ଼ିକର ପ୍ରେକ୍ଷିତ ଓ ସଂଗ୍ରହର ଉତ୍ସ ନିମ୍ନରେ ପ୍ରଦାନ କରାଯାଉଛି ।

୧. ୧୨.୨.୧୮୮୮ ମସିହାରେ କଟକ ମ୍ୟୁନିସିପାଲିଟି ପଡ଼ିଆରେ ଲବଣକରକୁ

ପ୍ରତିବାଦ କରିବା ପାଇଁ ମଧୁସୂଦନଙ୍କ ଉଦ୍ୟମ କ୍ରମେ ଏକ ସଭା ଅନୁଷ୍ଠିତ ହୋଇଥିଲା । ସେହି ସଭାରେ ମଧୁସୂଦନ ପ୍ରଥମଥର ପାଇଁ ଓଡ଼ିଆରେ ଭାଷଣ ଦେଇଥିଲେ । ବକ୍ତୃତାର ସାରମର୍ମ ଉପସ୍ଥାପନ କରିବା ପୂର୍ବରୁ କୁହାଯାଇଥିଲା: ''ବାବୁ ମଧୁସୂଦନ ଦାସ ଯେମନ୍ତ ସୁବକ୍ତା ତହିଁର ପରିଚୟ ଏଥିପୂର୍ବେ ପାଠକମାନେ ପାଇଅଛନ୍ତି । ଓଡ଼ିଆ ଭାଷାରେ ବକ୍ତୃତା କରିବାର ତାହାଙ୍କର ଅଭ୍ୟାସ ନ ଥିବାରୁ ଭାଷାଗତ ତ୍ରୁଟି ମାର୍ଜନା କରିବା କାରଣ ପ୍ରାର୍ଥନା କରି କାଳୋଚିତ ସଦୁପଦେଶପୂର୍ଣ୍ଣ ସୁନ୍ଦର ବକ୍ତୃତାଟିଏ କଲେ । ତହିଁର ସାରମର୍ମ ଏହି... '' (**ଉତ୍କଳ-ଦୀପିକା**-୨୩।୭; ୧୮.୨.୧୮୮୮) ଏହି ସଭାରେ ସଭାପତିତ୍ୱ କରିଥିଲେ କାଳୀପଦ ବାନୁର୍ଜ୍ୟା । ମଧୁସୂଦନଙ୍କ ବକ୍ତୃତାର ସାରମର୍ମ **ଉତ୍କଳ ଦୀପିକା**ର ଉଲ୍ଲିଖିତ ସଂଖ୍ୟାରୁ ଗୃହୀତ ।

୨. 'ଗୋବଧ ନିବାରଣର ବିଚାର' କରିବାକୁ ଅନୁଷ୍ଠିତ ସଭାରେ ମଧୁସୂଦନ ଗୋଟିଏ ପ୍ରସ୍ତାବକୁ ସମର୍ଥନ କରି ଦେଇଥିବା ବକ୍ତୃତାଟି ପ୍ରକାଶ ପାଇଥିଲା **ଉତ୍କଳ-ଦୀପିକା**ର ତ୍ରୟୋବିଂଶ ବର୍ଷ ଅଷ୍ଟମ ସଂଖ୍ୟା (୨୫.୨.୧୮୮୮)ରେ ।

୩. ବଳରାମ ଦାସଙ୍କ ସଭାପତିତ୍ୱରେ କେନ୍ଦ୍ରାପଡ଼ା ଠାରେ ୨୬.୨.୧୮୮୮ ତାରିଖରେ ଏକ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା । ଏହି ସଭାରେ ଆଲୋଚ୍ୟ ବିଷୟ ଥିଲା — ସ୍ୱାୟତ୍ତଶାସନର ସୁଫଳ ବିଚାର ଓ ଗୋବଧ ନିରାକରଣ । ମଧୁସୂଦନ ଏହି ସଭାରେ ଅନ୍ୟତମ ବକ୍ତା ଭାବରେ ଯୋଗ ଦେଇ ପ୍ରଦାନ କରିଥିବା ବକ୍ତୃତା **ଉତ୍କଳ-ଦୀପିକା** - ୨୩ । ୯ (୦୩.୩.୧୮୮୮)ରେ ପ୍ରକାଶ ପାଇଥିଲା । ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାଶ ମଧ୍ୟ ବକ୍ତୃତାଟିର ଅଧିକାଂଶ ଅଂଶ **ଦେଶପ୍ରାଣ ମଧୁସୂଦନ** (ପୃ.୮୭-୮୪)ରେ ଉଦ୍ଧାର କରିଥିଲେ । ଏଠାରେ ସମ୍ପୃକ୍ତ ବକ୍ତୃତାଟି ତୃତୀୟ ବକ୍ତୃତା ଭାବରେ ଉପସ୍ଥାପିତ ।

୪. ମୁଖ୍ୟତଃ କଟକର ମୁସଲମାନମାନଙ୍କ ଦ୍ୱାରା ପ୍ରତିଷ୍ଠିତ 'ଫଏଜଆମ' ନାମକ ଅନୁଷ୍ଠାନର ଏକ ସଭା ୧୮.୩.୧୮୮୮ ତାରିଖରେ କଟକ ପ୍ରିଣ୍ଟିଂ କମ୍ପାନୀ କୋଠାରେ ଆହୂତ ହୋଇଥିଲା । ଏହି ସଭାରେ ସଭାପତିତ୍ୱ କରି ମଧୁସୂଦନ ଦେଇଥିବା ବକ୍ତୃତାର ସାରମର୍ମ **ଉତ୍କଳଦୀପିକା**-୨୩।୧୨ (୨୪.୩.୧୮୮୮)ରୁ ଗୃହୀତ ।

୫. ଓଡ଼ିଶାରେ ରେଳପଥ ନିର୍ମାଣର ଅଗ୍ରଗତି ସମ୍ପର୍କରେ ସମୀକ୍ଷା କରିବା ପାଇଁ ୨୫.୩.୧୮୮୮ ତାରିଖରେ 'ଉତ୍କଳ ସଭା'ର ଏକ ଅଧିବେଶନ ଏହାର

ସହକାରୀ ସଭାପତି ମଧୁସୂଦନଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ସମ୍ପୃକ୍ତ ଅଧିବେଶନରେ ମଧୁବାବୁ ଦେଇଥିବା ସଭାପତି ଅଭିଭାଷଣର ସାରମର୍ମ **ଉତ୍କଳଦୀପିକା**- ୨୩।୧୩(୩୧.୩.୧୮୮୮)ରୁ ଗୃହୀତ ହୋଇ ପ୍ରସ୍ତୁତ ସଂକଳନରେ ପୁନଃମୁଦ୍ରିତ ।

୬. ମଧୁବାବୁଙ୍କ ସଭାପତିତ୍ୱରେ 'ଉତ୍କଳ ସଭା'ର ଏକ ଅଧିବେଶନ ବନ୍ଦୋବସ୍ତ ସମ୍ପର୍କରେ ଆଲୋଚନା କରିବା ପାଇଁ ତା ୨୪.୫.୧୮୯୬ରିଖରେ କଟକ ପ୍ରିଣ୍ଟିଂ କମ୍ପାନୀ ହଲ୍‌ରେ ଅନୁଷ୍ଠିତ ହୋଇଥିଲା । ସଭାପତି ଅଭିଭାଷଣ ପ୍ରଦାନ କରି ମଧୁବାବୁ ଯାହା କହିଥିଲେ, ତାହାର ସାରାଂଶ **ଉତ୍କଳଦୀପିକା** - ୩୧।୨୨(୩୦.୫.୧୮୯୬)ରେ ପ୍ରକାଶିତ ହୋଇଥିଲା । ସମ୍ପୃକ୍ତ ସାରକଥା ଏଠାରେ 'ବନ୍ଦୋବସ୍ତ ଓ ପ୍ରଜାମାନଙ୍କ ଦୁଃଖ' ଶୀର୍ଷକରେ ଉପସ୍ଥାପିତ ।

୭. ଓଡ଼ିଶାରେ ବାରମ୍ବାର ଦେଖାଯାଉଥିବା ମହାମାରୀ ସମ୍ପର୍କରେ ଆଲୋଚନା କରିବା ପାଇଁ ମଧୁସୂଦନଙ୍କ ଉଦ୍ୟମକ୍ରମେ ଏକ ସଭା କଟକରେ ଅନୁଷ୍ଠିତ ହୋଇଥିଲା । ସମ୍ପୃକ୍ତ ସଭାରେ ମଧୁସୂଦନ ଦେଇଥିବା ଭାଷଣ 'ମହାମାରୀ ଓ ଆମର କର୍ତ୍ତବ୍ୟ' ଶୀର୍ଷକରେ ଏଥିରେ ଉପସ୍ଥାପିତ ଓ ସମ୍ପୃକ୍ତ ଭାଷଣ **ଉତ୍କଳଦୀପିକା** - ୩୩। ୨୧ (୨୧.୫.୧୮୯୮)ରୁ ଗୃହୀତ ।

୮. ବ୍ରିଟିଶ୍ ପ୍ରଶାସନ ମଧୁସୂଦନଙ୍କୁ ସି.ଆଇ.ଇ. ଉପାଧିରେ ଭୂଷିତ କରିଥିବାରୁ ତାଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ନାଟ୍ୟକାର ରାମଶଙ୍କର ରାୟଙ୍କ ସମ୍ପାଦକତ୍ୱରେ ଏକ କମିଟି ଗଠନ ହୋଇଥିଲା । ଏହି କମିଟିର ଉଦ୍‌ଯୋଗରେ ଏକ ସାଧାରଣ ସଭା ଜାନୁଆରୀ ୩୦ ତାରିଖ, ୧୯୦୪ରେ କଟକର ଜୁବୁଲି ପାର୍କରେ ଅନୁଷ୍ଠିତ ହୋଇଥିଲା । ସମ୍ପୃକ୍ତ ସଭାରେ ପାଞ୍ଚହଜାର ଲୋକ ଉପସ୍ଥିତ ଥିଲେ । ରାମଶଙ୍କର, ହରିବଲ୍ଲଭ ବୋଷ ଓ ସୁଦାମଚରଣ ନାୟକ ମଧୁବାବୁଙ୍କର ଗୁଣଗାନ କରି ଭାଷଣ ପ୍ରଦାନ କରିଥିଲେ । ସମ୍ପୃକ୍ତ ଅଭିବାଦନର ଉତ୍ତର ସ୍ୱରୂପ ମଧୁବାବୁ ଯାହା କହିଥିଲେ, ତାହା **ଉତ୍କଳଦୀପିକା**-୩୯।୬(୦୭.୦୨.୧୯୦୪)ରେ ପ୍ରକାଶିତ ହୋଇଥିଲା । ସମ୍ପୃକ୍ତ ଅଭିଭାଷଣ ଏଠାରେ 'ଅଭିବାଦନର ଉତ୍ତର' ଶୀର୍ଷକରେ ପୁନଃପ୍ରକାଶିତ ।

୯. ବମ୍ବେର ସଙ୍ଗଲି ଥିଏଟର କମ୍ପାନୀ କଟକ ଆସି ଏଠାରେ ସେମାନଙ୍କର ଅଭିନୟ ପ୍ରଦର୍ଶନ କରିଥିଲେ । ସମ୍ପୃକ୍ତ ଥିଏଟର କମ୍ପାନୀର ମାନେଜର ଓ ଆଠଜଣ ଅଭିନେତାଙ୍କୁ ରୌପ୍ୟପଦକ ପ୍ରଦାନ କରିବାକୁ ମଧୁସୂଦନ ମନସ୍ଥ କରିଥିବାର ସୂଚନା ଦେଇଥିଲେ ରାମଶଙ୍କର ରାୟ । ଏହି ସମ୍ବାଦ ପ୍ରକାଶ କରି

**ଉତ୍କଳ ଦୀପିକା** ୪୦।୨୫ (୨୪.୬.୧୯୦୫)ରେ ଲେଖିଥିଲା: ''ମଧୁବାବୁ ଓ ରାମଶଙ୍କର ବାବୁ ପ୍ରଭୃତି ଅନୁରୁଦ୍ଧ ହୋଇ ମଞ୍ଚସ୍ଥଳରେ ଆସନ ଗ୍ରହଣ କଲା ଉତ୍ତାରୁ ମଧୁବାବୁ ଗୋଟିଏ କ୍ଷୁଦ୍ର ଅଥଚ ରମଣୀୟ ବକ୍ତୃତା'' ପ୍ରଦାନ କରିଥିଲେ । ସମ୍ପୃକ୍ତ କ୍ଷୁଦ୍ର ବକ୍ତୃତାଟି ଏଠାରେ 'ରଙ୍ଗମଞ୍ଚ ଓ ସମାଜ' ଶୀର୍ଷକ ଦେଇ ଉପସ୍ଥାପିତ ଓ ଏହା **ଉତ୍କଳ ଦୀପିକା**ର ପୂର୍ବୋକ୍ତ ସଂଖ୍ୟାରୁ ଗୃହୀତ ।

୧୦. କଟକ ମ୍ୟୁନିସିପାଲିଟିର ଜୁବୁଲି ବଗିଚାରେ ସ୍ୱଦେଶୀ ଜିନିଷକୁ ଲୋକପ୍ରିୟ କରିବା ଉଦ୍ଦେଶ୍ୟରେ ଏକ ସଭା ଜାନକୀନାଥ ବସୁଙ୍କ ସଭାପତିତ୍ୱରେ ୧୯୦୫ ମସିହା ଅଗଷ୍ଟ ୨୦ ତାରିଖରେ ଅନୁଷ୍ଠିତ ହୋଇଥିଲା । ସମ୍ପୃକ୍ତ ସଭାରେ ମଧୁସୂଦନ ଏକ ଦୀର୍ଘ ଭାଷଣ ପ୍ରଦାନ କରି ଯାହା କରିଥିଲେ ତାହାର ସାରାଂଶ 'ସ୍ୱଦେଶ ପ୍ରେମ ଓ ସ୍ୱଦେଶୀ ଦ୍ରବ୍ୟ' ଶୀର୍ଷକରେ ଉପସ୍ଥାପନ କରାଯାଇଛି । ସମ୍ପୃକ୍ତ ସଭାର ବିବରଣୀ ଓ ମଧୁସୂଦନଙ୍କ ବକ୍ତବ୍ୟ **ଉତ୍କଳ ଦୀପିକା** ୪୦। ୩୪ (୨୬.୮.୧୯୦୫)ରେ ପ୍ରକାଶିତ ହୋଇଥିଲା ।

୧୧. 'ଉତ୍କଳ ସଭା'ର ପ୍ରତିନିଧି ହିସାବରେ ଜାନକୀନାଥ ବସୁ ଓ ବିଶ୍ୱନାଥ କର ପ୍ରମୁଖ ଭାରତୀୟ ଜାତୀୟ କଂଗ୍ରେସର କଲିକତା ଅଧିବେଶନରେ ଯୋଗଦାନ କରିଥିଲେ । ସେମାନଙ୍କୁ ଅଭିନନ୍ଦନ ଜଣାଇବା ଉଦ୍ଦେଶ୍ୟରେ ମଧୁସୂଦନଙ୍କ ସଭାପତିତ୍ୱରେ 'ଉତ୍କଳସଭା' ତରଫରୁ ଏକ ଅଭ୍ୟର୍ଥନା ସଭା ୧୪.୦୧.୧୯୦୭ରେ କଟକ ପ୍ରିଣ୍ଟିଂ କମ୍ପାନୀ ହଲ୍‌ରେ ଅନୁଷ୍ଠିତ ହୋଇଥିଲା । ଜାନକୀନାଥ ଓ ବିଶ୍ୱନାଥ ପ୍ରମୁଖ ଭାଷଣ ଦେଇ ସାରିଲାପରେ ମଧୁସୂଦନ ଓଡ଼ିଆରେ ଭାଷଣ ଦେଇ ଯାହା କହିଥିଲେ, ତାହାର ସାରାଂଶ **ଉତ୍କଳ ଦୀପିକା**-୪୨।୩(୧୯.୦୧.୧୯୦୭)ରେ ପ୍ରକାଶିତ ହୋଇଥିଲା । ସେହି ଅଭିଭାଷଣର ସାରାଂଶ ଏଠାରେ ପୁନଃମୁଦ୍ରିତ ।

୧୨. ବ୍ରହ୍ମପୁର ଠାରେ ଅନୁଷ୍ଠିତ ହୋଇଥିବା 'ଉତ୍କଳ ସମ୍ମିଳନୀ'ର ତୃତୀୟ ଅଧିବେଶନରେ ନିର୍ଦ୍ଧାରିତ ହୋଇଥିବା ପ୍ରସ୍ତାବଗୁଡ଼ିକୁ କଟକର ଜନସାଧାରଣଙ୍କୁ ଜଣାଇବା ଉଦ୍ଦେଶ୍ୟରେ ଶରତଚନ୍ଦ୍ର ମୁଖୁର୍ଜୀଙ୍କ ସଭାପତିତ୍ୱରେ ଏକ ସାଧାରଣ ସଭା କଟକ ମ୍ୟୁନିସିପାଲିଟିର ବଗିଚାରେ ୨୭.୦୧.୧୯୦୭ ତାରିଖରେ ଅନୁଷ୍ଠିତ ହୋଇଥିଲା । ସମ୍ପୃକ୍ତ ସଭାରେ ଗୌରୀଶଙ୍କର, ରାମଶଙ୍କର ଓ ରାମକୃଷ୍ଣ ପଟ୍ଟନାୟକ ପ୍ରମୁଖଙ୍କ ସହ ମଧୁସୂଦନ ମଧ୍ୟ ଭାଷଣ ଦେଇଥିଲେ । ମଧୁସୂଦନଙ୍କ ବକ୍ତବ୍ୟ ଉପସ୍ଥାପନ କରିବା ପୂର୍ବରୁ **ଉତ୍କଳ ଦୀପିକା**-୪୨।୫ (୧୨.୦୨.୧୯୦୭) ଲେଖିଥିଲା:

"... ଶ୍ରଦ୍ଧାସ୍ପଦ ବାବୁ ମଧୁସୂଦନ ଦାସ ସି.ଆଇ.ଇ. ଗାତ୍ରୋତ୍‌ଥାନ କଲେ । ମଧୁବାବୁ ଧୋତୀ ଚାଦର ପିନ୍ଧି ସେଦିନ ସଭାକୁ ଯାଇଥିଲେ ଏବଂ ତାଙ୍କୁ ସେ ବେଶରେ ଦେଖି ସମସ୍ତେ ଅତୀବ ଆନନ୍ଦିତ ହୋଇ ସେ ଯେ ଆମ୍ଭ ଦେଶର ଜଣେ ଭାଇ ତାହା ସମୁଚିତ ରୂପେ ବୁଝିପାରିଥିଲେ । ଏ ମହାଶୟ ତେଜୋଗର୍ଭ ସରଳ ଭାଷାରେ ବ୍ୟକ୍ତ କଲେ .... " । ମଧୁସୂଦନଙ୍କ ସେହି ବକ୍ତବ୍ୟ ଏଠାରେ ଦ୍ୱାଦଶ ଭାଷଣ ଭାବରେ ସଂଗୃହୀତ ।

୧୩. କଟକରେ ରେଭେନ୍ସା କଲେଜିଏଟ ସ୍କୁଲ୍‌ର ଏକ ପୁରସ୍କାର ବିତରଣୀ ସଭା ଅନୁଷ୍ଠିତ ହୋଇଥିଲା ୧୯୧୩ ମସିହା ଫେବ୍ରୁଆରୀ ୯ ତାରିଖରେ ଓ ଏହି ସଭାରେ ସଭାପତିତ୍ୱ କରିଥିଲେ ମଧୁସୂଦନ । ତାଙ୍କର ସଭାପତି ଅଭିଭାଷଣ ପ୍ରକାଶିତ ହୋଇଥିଲା **ଉତ୍କଳ-ଦୀପିକା**-୪୮।୭(୧୫.୨.୧୯୧୩) ସଂଖ୍ୟାର ଅତିରିକ୍ତ ପୃଷ୍ଠାରେ । ଅଭିଭାଷଣଟିକୁ ସଂପୃକ୍ତ ଉତ୍ସରୁ ସଂଗ୍ରହ କରାଯାଇ ପ୍ରଥମେ **ଓଡ଼ିଶାର ଜନକ ମଧୁସୂଦନ** (ପୃ.୧୪୮-୧୪୯) ପୁସ୍ତକରେ ପୁନଃମୁଦ୍ରିତ ହୋଇଥିଲା ।

୧୪. କଟକ ରେଭେନ୍ସା କଲେଜିଏଟ ସ୍କୁଲ୍‌ର 'ଆଲୋଚନା ସଭା' ଆନୁକୂଲ୍ୟରେ ସଂପୃକ୍ତ ବିଦ୍ୟାଳୟରେ ରେଭେନ୍ସାଙ୍କର ଏକ ଚିତ୍ରପଟ ସ୍ଥାପିତ ଓ ଉନ୍ମୋଚିତ ହୋଇଥିଲା ୧୯୧୩ ମସିହା ମେ ୧ ତାରିଖରେ । ସମ୍ପୃକ୍ତ ସଭାରେ ସଭାପତିତ୍ୱ କରିଥିଲେ ମଧୁସୂଦନ । ସଭାର ବିବରଣୀ ପ୍ରକାଶିତ ହୋଇଥିଲା **ଉତ୍କଳ-ଦୀପିକା**-୪୮।୧୮(୦୩.୫.୧୯୧୩) ସଂଖ୍ୟାରେ । ମଧୁସୂଦନଙ୍କ ସଭାପତି ଅଭିଭାଷଣ ପ୍ରକାଶିତ ହୋଇଥିଲା **ମୁକୁର** ଅଷ୍ଟମ ବର୍ଷ ତୃତୀୟ ସଂଖ୍ୟା(ଜୁନ୍, ୧୯୧୩)ରେ । ଏହି ଅଭିଭାଷଣଟିକୁ ଲିଖିତ ରୂପ ଦେଇଥିବା ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଏ ସମ୍ପର୍କରେ ସୂଚନା ଦେଇ ଲେଖିଥିଲେ :

କଟକ କଲେଜିଏଟ୍ ସ୍କୁଲସ୍ଥ ଆଲୋଚନା ସଭାର ପଞ୍ଚମ ବାର୍ଷିକ ଅଧିବେଶନରେ ଶ୍ରୀଯୁକ୍ତ ଗୋବିନ୍ଦଚନ୍ଦ୍ର ଶୂରଦେଓଙ୍କ ଚିତ୍ରିତ ଭୂତପୂର୍ବ କମିଶନର ମହାମତି ରେଭେନ୍ସାଙ୍କ ତୈଳଚିତ୍ର ଆବରଣୋନ୍ମୋଚନ ଉପଲକ୍ଷେ ମାନନୀୟ ଶ୍ରୀଯୁକ୍ତ ମଧୁସୂଦନ ଦାସ ସି.ଆଇ.ଇ.ଙ୍କ ବକ୍ତୃତା ... । (**ମୁକୁର**-୮। ୩; ଜୁନ୍, ୧୯୧୩)

୧୫. କଟକର ଟାଉନ ଭିକ୍ଟୋରିଆ ସ୍କୁଲ୍‌ରେ ଏହାର ପ୍ରତିଷ୍ଠାତା କବି ମଧୁସୂଦନ ରାଓଙ୍କର ଏକ ପ୍ରତିକୃତି ପ୍ରତିଷ୍ଠା ଉପଲକ୍ଷ୍ୟରେ ଏକ ସଭା ଯୋଗେଶଚନ୍ଦ୍ର ରାୟଙ୍କର ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ସଂପୃକ୍ତ ସଭାରେ ଉପସ୍ଥିତ ଥିଲେ ଉତ୍କଳଗୌରବ ମଧୁସୂଦନ । "ସଭାପତିଙ୍କ ଆହ୍ୱାନ ମତେ ଆମ୍ଭମାନଙ୍କ

ଶ୍ରଦ୍ଧେୟ ମାନ୍ୟବର ମଧୁସୂଦନ ଦାସ ସି.ଆଇ.ଇ. ପ୍ରକାଶ କଲେ ଯେ...'' (**ଉତ୍କଳ ଦୀପିକା**-୪୯ । ୨୧; ୨୩.୫.୧୯୧୪) — ସମ୍ପୃକ୍ତ ସଭାରେ ମଧୁସୂଦନ ଯାହା ପ୍ରକାଶ କରିଥିଲେ, ତାହା ଏଠାରେ 'କବି ମଧୁସୂଦନ ସ୍ମୃତିସଭା' ଶୀର୍ଷକରେ ଉପସ୍ଥାପିତ ଓ ସମ୍ପୃକ୍ତ ବକ୍ତବ୍ୟ **ଉତ୍କଳ ଦୀପିକା** - ୪୯ । ୨୧ ସଂଖ୍ୟାରୁ ଗୃହୀତ ।

୧୬. ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ଉଦ୍ୟମରେ ରେଭେନ୍ସା କଲେଜିଏଟ୍ ସ୍କୁଲ୍‌ରେ ସ୍ଥାପିତ 'ଆଲୋଚନା ସଭା' ସହ ମଧୁସୂଦନ ପ୍ରଥମରୁ ସମ୍ପୃକ୍ତ ଥିଲେ । ଏହାର ସପ୍ତମ ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୋଇଥିଲା ୧୪.୪.୧୯୧୫ ମସିହାରେ ଓ ଏଥିରେ ସଭାପତିତ୍ୱ କରିଥିଲେ ମଧୁସୂଦନ । ମଧୁସୂଦନଙ୍କ ସଭାପତି ଅଭିଭାଷଣ ପ୍ରକାଶିତ ହୋଇଥିଲା 'ଆଲୋଚନା ସଭା'ର ମୁଖପତ୍ର **ଛାତ୍ରବନ୍ଧୁ** ପତ୍ରିକାରେ, ୧୯୧୫ ମସିହାରେ । ପ୍ରଥମେ ଏହି ଅଭିଭାଷଣଟି ପୁନଃମୁଦ୍ରିତ ହୋଇଥିଲା **ଓଡ଼ିଶାର ଜନକ ମଧୁସୂଦନ** (ପୃ.୧୪୩-୧୪୭) ପୁସ୍ତକରେ । ପରେ ବିଭିନ୍ନ ସଂକଳନ ଓ ପତ୍ରିକାରେ ବିନା ସ୍ୱୀକୃତିରେ ଭୁଲ୍ ତଥ୍ୟ ସହ ଏହି ଭାଷଣଟି ପୁନଃମୁଦ୍ରିତ । **ଓଡ଼ିଶାର ଜନକ ମଧୁସୂଦନ** ପୁସ୍ତକର ସୂଚନାରେ ଭୁଲ୍‌କ୍ରମେ ଏହା '୧୯୧୨ ମସିହା ଏପ୍ରିଲ୍ ମାସ'ର ପ୍ରଦତ୍ତ ଓ **ଉତ୍କଳ ଦୀପିକା**ରେ ପ୍ରକାଶିତ ବୋଲି ଉଲ୍ଲିଖିତ ।

୧୭. କଟକର ଆୟୁର୍ବେଦ ବିଦ୍ୟାଳୟର ବାର୍ଷିକ ଉତ୍ସବରେ ସଭାପତିତ୍ୱ କରି ମଧୁସୂଦନ ଦେଇଥିବା ଭାଷଣର ସାରକଥା ପ୍ରକାଶିତ ହୋଇଥିଲା **ଉତ୍କଳ ଦୀପିକା**-୫୨।୩୯(୨୯.୯.୧୯୧୭) ସଂଖ୍ୟାରେ । ସମ୍ପୃକ୍ତ ବକ୍ତବ୍ୟ ଏଠାରେ ସପ୍ତଦଶ ଉପାଦାନ ଭାବରେ ଉପସ୍ଥାପିତ ।

୧୮. ୧୯୧୯ ମସିହା ଜୁଲାଇ ୧୯ ତାରିଖରେ 'ଉତ୍କଳ ସାହିତ୍ୟ ସମାଜ'ର ଗୃହର ଭିତ୍ତିସ୍ଥାପନ ଉଦ୍ଦେଶ୍ୟରେ ଏକ ସଭା ଆଳି ରାଜାଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ଏହି ସଭାରେ 'ଉତ୍କଳ ସାହିତ୍ୟ ସମାଜ'ର ଜଣେ 'ଅଭିଭାବକ ସଦସ୍ୟ' ଭାବରେ ଉପସ୍ଥିତ ଥିଲେ ମଧୁସୂଦନ । ସଭାପତିଙ୍କ ଅନୁରୋଧକ୍ରମେ ସଂପୃକ୍ତ ସଭାରେ ମଧୁସୂଦନ ଯାହା କହିଥିଲେ, ତାହାର ସାରକଥା **ଉତ୍କଳ-ଦୀପିକା**-୫୪।୩୦(୨୬.୭.୧୯୧୯)ରେ ପ୍ରକାଶିତ ହୋଇଥିଲା ଓ ସମ୍ପୃକ୍ତ ସାରକଥା ଅଷ୍ଟାଦଶ ଉପାଦାନ ଭାବରେ ଆଲୋଚ୍ୟ ସଂକଳନରେ ଉପସ୍ଥାପିତ ।

୧୯. କଟକ ଟାଉନ ହଲ୍‌ରେ ପଠାଣି ସାମନ୍ତଙ୍କ ତୈଳଚିତ୍ର ସ୍ଥାପନ ଉଦ୍ଦେଶ୍ୟରେ ଏକ ସଭା ୨୦.୦୧.୧୯୨୩ ତାରିଖରେ ମଧୁସୂଦନଙ୍କ ସଭାପତିତ୍ୱରେ

ସେହି ଟାଉନହଲ୍‌ରେ ଅନୁଷ୍ଠିତ ହୋଇଥିଲା । ଏହି ସଭାରେ ପ୍ରାଣକୃଷ୍ଣ ପରିଜା, ମୃତ୍ୟୁଞ୍ଜୟ ରଥ ଓ ନୀଳମଣି ବିଦ୍ୟାରତ୍ନ ପ୍ରମୁଖ ମଧ ଭାଷଣ ଦେଇଥିଲେ । ସର୍ବଶେଷରେ ମଧୁସୂଦନ ତାଙ୍କ ସଭାପତି ଅଭିଭାଷଣରେ ଯାହା କହିଥିଲେ, ତାହା ଉନବିଂଶ ଉପାଦାନ ଭାବରେ ଉପସ୍ଥାପିତ । ସମ୍ପୃକ୍ତ ସଭାର ବିବରଣୀ ଓ ମଧୁସୂଦନଙ୍କ ଭାଷଣ **ଉତ୍କଳ ଦୀପିକା**-୫୮।୪ (୨୭.୦୧.୧୯୨୩)ରେ ପ୍ରକାଶିତ ହୋଇଥିଲା ।

୨୦. ଶ୍ରୀମତୀ ସରଳାଦେଈଙ୍କ ପରିଶ୍ରମରେ 'ଉତ୍କଳ ମହିଳା ସମିତି'ର ପ୍ରଥମ ଅଧିବେଶନ କଟକଠାରେ ୩୦.୬.୧୯୨୪ ତାରିଖରେ ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ସମ୍ପୃକ୍ତ ସଭାରେ ମଧୁସୂଦନ ଓ ଗୋପବନ୍ଧୁ ପ୍ରମୁଖ ଯୋଗ ଦେଇଥିଲେ । ଗଞ୍ଜାମର ନାରୀସମାଜର ପ୍ରଧାନ ଉଦ୍ୟୋକ୍ତା ଶ୍ରୀମତୀ ରସାମଣି ଦେବୀ କହିଲା ପରେ ମଧୁସୂଦନ ଯାହା କହିଥିଲେ, ତାହାର ସୂଚନା ଦେଇ **ଉତ୍କଳ-ଦୀପିକା**ରେ କୁହାଯାଇଥିଲା : ''ତତ୍‌ପରେ ଶ୍ରୀଯୁକ୍ତ ମଧୁବାବୁ ତାଙ୍କର ସ୍ୱାଭାବିକ ଲଳିତ ଭାଷାରେ କହିଥିଲେ ... '' (୫୯।୨୮; ୧୨.୭.୧୯୨୪) । ମଧୁବାବୁ ଯାହା କହିଥିଲେ ତାହା ଏଠାରେ ବିଂଶ ଉପାଦାନ ଭାବରେ **ଉତ୍କଳ-ଦୀପିକା**ର ପୂର୍ବୋକ୍ତ ସଂଖ୍ୟାରୁ ଉଦ୍ଧୃତ ହୋଇ ଉପସ୍ଥାପିତ ।

୨୧. ୧୯୨୫ ମସିହା ଅଗଷ୍ଟ ୭ ତାରିଖରେ ବଙ୍ଗଳାର ପ୍ରଖ୍ୟାତ ନେତା ସୁରେନ୍ଦ୍ରନାଥ ବାନାର୍ଜୀଙ୍କର ମହାପ୍ରୟାଣ ହୋଇଥିଲା । ତାଙ୍କର ସ୍ମୃତିଚାରଣ ଓ ତାଙ୍କ ପ୍ରତି ଶ୍ରଦ୍ଧା-ନିବେଦନ ଉଦ୍ଦେଶ୍ୟରେ ଏକ ସାଧାରଣ ସଭା କଟକ ଟାଉନ୍ ହଲ୍‌ରେ ତା ୧୨.୮.୧୯୨୫ ରିଖରେ ମଧୁସୂଦନଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ସମ୍ପୃକ୍ତ ସଭାର ବିବରଣୀ ଓ ମଧୁସୂଦନଙ୍କ ବକ୍ତବ୍ୟର ସାରକଥା **ଉତ୍କଳ ଦୀପିକା**-୬୦।୩୩( ୧୫.୮.୧୯୨୫)ରେ ପ୍ରକାଶିତ । ସ୍ୱର୍ଗତ ସୂର୍ଯ୍ୟନାରାୟଣ ଦାଶ **ଦେଶପ୍ରାଣ ମଧୁସୂଦନ** (ପୃ. ୪୩୫-୪୩୬)ରେ ମଧୁସୂଦନଙ୍କ ବକ୍ତବ୍ୟକୁ ଉଦ୍ଧାର କଲାବେଳେ କେତେକ ବାକ୍ୟକୁ ଓଲଟପାଲଟ କରିଛନ୍ତି ଓ କେତେକ ନୂତନ ବାକ୍ୟ ଯୋଡ଼ିଛନ୍ତି । ଏହି ସଂକଳନରେ **ଉତ୍କଳ ଦୀପିକା**ରେ ପ୍ରକାଶିତ ବକ୍ତବ୍ୟକୁ ଉଦ୍ଧାର କରାଯାଇଛି ।

୨୨. କଟକ ଟାଉନ୍ ହଲ୍‌ରେ ଦେଶମିଶ୍ରଣ ସପକ୍ଷରେ ଜନମତ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଏକ ସାଧାରଣ ସଭା ୧୯୨୮ ମସିହା ନଭେମ୍ବର ୧୦ ତାରିଖରେ ମଧୁସୂଦନଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ସମ୍ପୃକ୍ତ ବିରାଟ ଜନସଭାରେ ମଧୁସୂଦନ ଯାହା କହିଥିଲେ ତାହା ଏଠାରେ ୨୨ତମ

ଉପାଦାନ ଭାବରେ ଉପସ୍ଥାପିତ । ସମ୍ପୃକ୍ତ ସଭାର ବିବରଣୀ ଓ ମଧୁସୂଦନଙ୍କ ବକ୍ତବ୍ୟ ପ୍ରକାଶିତ ହୋଇଥିଲା **ସମାଜ** (୧୪.୧୧.୧୯୨୮) ସମ୍ବାଦପତ୍ରରେ । ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ **ଦେଶପ୍ରାଣ ମଧୁସୂଦନ** (ପୃ.୪୪୯-୪୫୦)ରେ ତାହା ପ୍ରଥମେ ପୁନଃମୁଦ୍ରିତ ହୋଇଥିଲା । ବର୍ତ୍ତମାନ ସଂକଳନର ପାଠ **ଦେଶପ୍ରାଣ ମଧୁସୂଦନରୁ** ଗୃହୀତ ।

୨୩. ଶେଷ ଅଭିଭାଷଣଟି ତାଳଚେର ଗଡ଼ର ଦରବାର ହଲ୍‌ରେ ଅନୁଷ୍ଠିତ ଏକ ଉତ୍ସବରେ ଜୁନ୍ ୧୦, ୧୯୩୨ରେ ପ୍ରଦତ୍ତ । ଲକ୍ଷ୍ମୀନାରାୟଣ ସାହୁଙ୍କ **ଓଡ଼ିଶାର ଗଡ଼ଜାତ** ପୁସ୍ତକରୁ ଏହି ଅଭିଭାଷଣ ସଂଗୃହୀତ ।

ଏହା ବାହାରେ ଓଡ଼ିଆରେ ପ୍ରଦତ୍ତ ମଧୁସୂଦନଙ୍କର କୌଣସି ଅଭିଭାଷଣ ନାହିଁ, ଏହା ନୁହେଁ । କିନ୍ତୁ **ଉତ୍କଳ ଦୀପିକାର** କେତେକ ବର୍ଷର ଫାଇଲ୍ ମିଳୁ ନ ଥିବାରୁ ତଥା ଅନ୍ୟ ସମ୍ବାଦପତ୍ରଗୁଡ଼ିକର ଯଥାର୍ଥ ଅନୁଶୀଳନର ଅଭାବ ହେତୁ ଏଭଳି ସମ୍ଭାବନାକୁ ସ୍ୱୀକାର କରିବାକୁ ଆମେ ବାଧ୍ୟ ହୋଇଛୁ ।

**ଦେବେନ୍ଦ୍ର କୁମାର ଦାଶ**

***

## (୧)

## ଲବଣକର ଓ ଦରିଦ୍ର ପ୍ରଜା

... ଭାରତବାସୀ ସମସ୍ତ ଏକ ଦେଶୀୟ ହେବାରୁ ଭାଇ ଅଟନ୍ତି, ସମସ୍ତଙ୍କ ମଧ୍ୟରେ ଭ୍ରାତୃଭାବ ରହିବା ଉଚିତ । ଧନୀ ଓ ଗରିବ ମଧ୍ୟରେ କିଛି ପ୍ରଭେଦ ନାହିଁ । ବାସ୍ତବରେ ଗରିବମାନେ ଦେଶର ଖୁଣ୍ଟ ହେଉଅଛନ୍ତି ଏବଂ ଯେ ସ୍ଥଳେ ସେ ଦିଏ ସେ ଧନୀ ଓ ଯେ ନିଏ ସେ ନିର୍ଦ୍ଧନ; ସେ ସ୍ଥଳେ ଗରିବମାନେ କର ଦେଉଥିବା ଓ ଜମିଦାର ଓ ରାଜା ପ୍ରଭୃତି ତାହା ନେଇ ବଡ଼ଲୋକ ହେଉଥିବାରୁ ପ୍ରକୃତରେ ସେହିମାନେ ଧନୀ ଅଟନ୍ତି ଓ ତାହାଙ୍କର ଯେଉଁ ଶକ୍ତି ଅଛି ତାହା ସେମାନେ ଜାଣୁ ନ ଥିବାରୁ ଆପଣାକୁ ଗରିବ ଓ ଅସହାୟ ଭାଳୁ ଅଛନ୍ତି । ଇଂରେଜ ରାଜ ଗରିବଙ୍କର ବନ୍ଧୁ, ପ୍ରଜାଙ୍କୁ କଷ୍ଟ ଦେବା ତାହାଙ୍କର ଅଭିପ୍ରାୟ ନୁହେଁ । ପ୍ରଜାମାନେ ସମବେତ ହୋଇ ଆପଣା ଦୁଃଖ ଜଣାଇଲେ ସେ ଅବଶ୍ୟ ତହିଁର ପ୍ରତିକାର କରିବେ । ଏକତ୍ର ହୋଇ ଦୁଃଖ ଜଣାଇବା ଓ ରାଜନୈତିକ ବିଷୟରେ ମତାମତ ପ୍ରକାଶ କରିବା ପ୍ରଜାମାନଙ୍କର ଗୋଟିଏ ଭାରି ଅଧିକାର । ଏହି ଅଧିକାର ରାଜଭକ୍ତି ଅଥଚ ଦମ୍ଭ ଭାବରେ ପ୍ରକାଶ କଲେ କଦାଚ ବ୍ୟର୍ଥ ହେବ ନାହିଁ । ରୋଗୀ ଆପଣାର ପୀଡ଼ାର ବୃତ୍ତାନ୍ତ ନ ଜଣାଇଲେ ଯେମନ୍ତ ବୈଦ୍ୟ ତହିଁର ପ୍ରତିକାର କରି ନ ପାରେ ପ୍ରଜାମାନେ ଆପଣା ଦୁଃଖ ନ ଜଣାଇଲେ ରାଜାଙ୍କ ଦ୍ୱାରା ତହିଁର ପ୍ରତିକାର ହୋଇ ନ ପାରେ । ଇଂରାଜ ଗବର୍ଣ୍ଣମେଣ୍ଟ କେତେବେଳେ ପ୍ରଜାପୀଡ଼କ ନୁହନ୍ତି । ... ଭାରତବାସୀମାନେ ବିଲାତର ତୁଳନାରେ ବିଲାତର ବାର୍ଷିକ ଆୟ ହାରାହାରିରେ ଜଣ ପ୍ରତି ଟ୩୦୦ଙ୍କା ମାତ୍ର ଭାରତବର୍ଷରେ ଟ୨୦ଙ୍କା ଅଟଇ ଅଥଚ ବିଲାତରେ କରର ସମଷ୍ଟି ଶତକରା ଟ୮ଙ୍କା ସ୍ଥଳେ ଭାରତବର୍ଷରେ ଟ୧୬ଙ୍କା ଲେଖାଏଁ ପଡ଼ିଅଛି । ଭାରତବାସୀମାନେ ଗରିବ ହୋଇ ଏତେ ଅଧିକ କର ଦେଉଥିବା ସ୍ଥଳେ ସେମାନଙ୍କ ଉପରେ ଆଉ ଗୋଟିଏ କର ଭିଡ଼ିବା ନିତାନ୍ତ ଅନ୍ୟାୟ । ଲୁଣକର ନୂତନ କର ନ ହେଲେ ହେଁ ଯେତେବେଳେ ପୁରୁଣା ଘା ଉପରେ ଆଉ ଚୋଟେ ବସିଲା ତେତେବେଳେ ଅନାୟାସ ନୂତନ ପୀଡ଼ା ବୋଲାଯାଇପାରେ । ଲବଣ ସମସ୍ତ ଲୋକଙ୍କର ନିତ୍ୟ ପ୍ରୟୋଜନୀୟ ପଦାର୍ଥ ପୁଣି ଓଡ଼ିଶାରେ ପଖାଳଖିଆଟି ଅଧିକ ଥିବାରୁ ବହୁତ ଲୁଣ ଲୋଡ଼ା ହୁଅଇ । ଏପରି ଦେଶପ୍ରତି ଲବଣକର ଅଳପ ବଢ଼ିଲେ ସୁଧା ଅଧିକ ବାଧିବାର କଥା । ଏଥର ଓଡ଼ିଶାର ନିମକ ମାହାଲ ବଙ୍ଗଳାରୁ ମାନ୍ଦ୍ରାଜକୁ ବଦଳି ହେବାରୁ ଏଠା ଲୁଣ ପ୍ରୋକ୍ତାନ ବନ୍ଦ ହୋଇ ଅନେକ ଲୋକଙ୍କର ରୋଜଗାର ବନ୍ଦ ହୋଇଅଛି ।...

***

## (୨)

## ଗୋବଧ ନିବାରଣ ଓ ଆମ୍ଭମାନଙ୍କ କର୍ତ୍ତବ୍ୟ

... ଭାଇମାନେ ଆମ୍ଭେ ପୂର୍ବ ସଭାରେ ଆପଣମାନଙ୍କୁ କହିଥିଲୁ କି ଏ ଦେଶର ଗରିବ ଲୋକମାନେ ପ୍ରକୃତରେ ଧନୀ ଓ ବଳବାନ କେବଳ ଆପଣାକୁ ଚିହ୍ନି ନ ପାରିବାରୁ ଅସହାୟ ଓ ଦୁର୍ବଳ ମନେ କରନ୍ତି । ଆଜି ଆପଣମାନଙ୍କୁ ଏଠାରେ ଦେଖି ଆମ୍ଭର ଅହଙ୍କାର ହେଉଅଛି । ଅହଙ୍କାରଟା ନୀଚ ବୃତ୍ତି, ମନରେ ସ୍ଥାନ ଦେବାର ଉଚିତ ନୁହେଁ ମାତ୍ର ସେ ଭାବ ଆମ୍ଭ ମନରେ ଉଦୟ ହେଉଅଛି । ଆଜି ଆପଣମାନେ ଯେଉଁ ସଭା କରିଅଛ [କରିଅଛନ୍ତି] ତହିଁର ଉଦ୍ଦେଶ୍ୟ ଗୋବଧ ନିବାରଣ । ଆମ୍ଭମାନଙ୍କ ରାଜା ଗୋଖାଦକ, ଆଜି ତାହାଙ୍କ ଖାଇବା ବନ୍ଦ କରିବାକୁ ବ୍ୟବସ୍ଥା କରୁଅଛ । ରାଜାର ଆହାର ବନ୍ଦ କରିବା ସାମାନ୍ୟ ଶକ୍ତିର କାର୍ଯ୍ୟ ନୁହଇ । ଆପଣମାନଙ୍କର କେତେ ଶକ୍ତି ଅଛି ଦେଖ କିନ୍ତୁ ଆମ୍ଭର ଏତିକି ଅନୁରୋଧ ଯେ ଉଚିତ କାର୍ଯ୍ୟରେ ଏହି ବଳର ପ୍ରୟୋଗ କର ଯେମନ୍ତ କି ତହିଁରେ ଅପବ୍ୟବହାର ଦ୍ୱାରା ଆପଣାର କ୍ଷତି ନ କର । ଦଶ ହାତରେ ତରବାରି ଧରିଅଛ ବୋଲି ଯେମନ୍ତ ଖେଳିବା ଦୋଷରେ ଆପଣାର ହାତ ନ କାଟ । ବଳର ସତ୍ ବ୍ୟବହାର କର ଅବଶ୍ୟ ତା ଦ୍ୱାରା ମଙ୍ଗଳ ଫଳ ଫଳିବ । ...କେଉଁଝଡ଼ରେ [କେଉଁଝରରେ] ବାଛୁରି ହାରିଯିବ ବୋଲି ଲୋକେ ଗାଈ ଦୁହଁନ୍ତି ନାହିଁ । ଗଡ଼ଜାତରେ ଗୋରୁ ପ୍ରତି ଏତେ ଦୟା କିନ୍ତୁ ମୁଗଲବନ୍ଦୀରେ ଏମନ୍ତ ନିର୍ଦ୍ଦୟ କାର୍ଯ୍ୟ ହେଉଅଛି ।

***

## (୩)

## କେନ୍ଦ୍ରାପଡ଼ା ସଭାରେ ବକ୍ତୃତା

...ଭାରତବର୍ଷରେ ନାନା ଜାତୀୟ ଓ ଧର୍ମାବଲମ୍ବୀ ଲୋକ ବାସ କରୁଥିଲେ ହେଁ ସମସ୍ତେ ଏକ ଶାସନାଧୀନ ଓ ରାଜକୀୟ କାର୍ଯ୍ୟର ଉଦ୍ଦେଶ୍ୟ ଏକ ଅଟେ । ଏବେ ସମସ୍ତେ ଭାଇ ଅଟନ୍ତି । ଆମ୍ଭମାନଙ୍କର ଜନ୍ମଭୂମି ଭାରତ ଅତି ପ୍ରାଚୀନ ରାଜ୍ୟ । ଏକ ସମୟରେ ଏହା ରାମରାଜ୍ୟ ହୋଇଥିଲା । ଅର୍ଥାତ୍ ଲୋକେ ବଡ଼ ସୁଖରେ ବାସ କରୁଥିଲେ, ପ୍ରଜାଙ୍କର ଦୁଃଖ ନ ଥିଲା । ସେ ସମୟରେ ବିଲାତ ପ୍ରଭୃତି ଅନ୍ୟ ଦେଶର ଲୋକ ଅସଭ୍ୟ ଓ ପଶୁପରି ଥିଲେ । ବର୍ତ୍ତମାନ ଭାରତର ସେ ଅବସ୍ଥା ନାହିଁ । ଇଂରେଜଙ୍କ ଅମଳରେ ରେଲବାଟ ତାର ଡାକ ଇତ୍ୟାଦି ଅନେକ ଉନ୍ନତ ହୋଇଅଛି ଏବଂ ଇରେଜମାନେ ପ୍ରଜାଙ୍କ ସୁଖ ସ୍ୱଚ୍ଛନ୍ଦତା ନିମିତ୍ତ ଅନେକ ଉପାୟ କରୁଅଛନ୍ତି । ଇଂରେଜ ଜାତି ସ୍ୱଭାବତଃ ଦୟାଳୁ, ପ୍ରଜାଙ୍କର ଦୁଃଖ କେବେ ସହି ପାରନ୍ତି ନାହିଁ । କେହି କେହି

ହାକିମ ଇଂରେଜ ଜାତିର ହୋଇ ସୁଦ୍ଧା ପ୍ରଜାଙ୍କ ଦୁଃଖରେ ସହାନୁଭୂତି ପ୍ରକାଶ କରୁନାହାନ୍ତି ବୋଲି ଇଂରାଜ ଜାତିର ଦୋଷ ଦିଆଯାଇ ନ ପାରେ । ସେ ସବୁ ବ୍ୟକ୍ତିଗତ ଦୋଷ । ପ୍ରଜାଙ୍କ ଦୁଃଖ ଜାଣିବା ନିମିତ୍ତ ଏଠାରୁ ବିଲାତ ପର୍ଯ୍ୟନ୍ତ ତାର ଡାକ ବସାଇଅଛନ୍ତି ମାତ୍ର ସେ ତାର ଡାକରେ ଯେବେ ଆମ୍ଭମାନଙ୍କର ଦୁଃଖର ସମ୍ବାଦ ଇଂରାଜ ଜାତିଙ୍କ ପାର୍ଲିଆମେଣ୍ଟ ସଭାକୁ ଯାଉନାହିଁ ତେବେ ଦୋଷ ଆମ୍ଭମାନଙ୍କର । ଆମ୍ଭେମାନେ ଆପଣା ଦୁଃଖ କି କେବେ ତାର ଡାକରେ ପଠାଇଅଛୁଁ ନା ରେଳବାଟେ ବା ଜାହାଜରେ ଯାଇ ବ୍ୟକ୍ତ କରିଅଛୁଁ ? କାନ୍ଦିବା ଆମ୍ଭମାନଙ୍କର ଅଭ୍ୟାସ; ଘରେ ବସି ଅନେକ କାନ୍ଦୁଅଛୁଁ ମାତ୍ର ସେଥିରେ କିଛି ଫଳ ହେବ ନାହିଁ । କେହି ତାହା ଜାଣିବେ ନାହିଁ, ସମସ୍ତେ ଏକତ୍ରେ ବସି ଉଚ୍ଚସ୍ୱରରେ କାନ୍ଦ ଯେମନ୍ତ କି ଇଂରାଜ ଜାତି ଓ ସରକାର ତାହା ଶୁଣିପାରିବେ । ତେବେ ଅବଶ୍ୟ ଆମ୍ଭମାନଙ୍କର ଦୁଃଖର ପ୍ରତିକାର ହେବ । ଆଜି ମିଉନିସିପାଲିଟୀ ଘଟିତ ଦୁଃଖ ସକାଶେ ଏକତ୍ର ହୋଇଅଛୁଁ ମାତ୍ର ଆମ୍ଭମାନଙ୍କର ଦୁଃଖ ଏହି ଗୋଟିଏ ନୁହଇ । ଲବଣ, ନାଳ ଓ ହାକିମଙ୍କ କାର୍ଯ୍ୟ ଇତ୍ୟାଦି ଘଟିତ ଅନେକ ଦୁଃଖ ଅଛି । ସମସ୍ତେ ଏକତା ସୂତ୍ରେ ବଦ୍ଧ ହୋଇ ସଭାକରି ଦୁଃଖର ପ୍ରତିକାର ଲୋଡ଼ିବାକୁ ପ୍ରବୃତ୍ତ ହୁଅ ଅବଶ୍ୟ ଫଳ ହେବ । ଆମ୍ଭେ ଆପଣମାନଙ୍କର ଚାକର, ଆପଣମାନେ ଯାହା କହିବେ ତାହା କରିବାକୁ ପ୍ରସ୍ତୁତ ଅଛୁଁ । ମାତ୍ର ଆମ୍ଭେ ଏକ ବ୍ୟକ୍ତିର ଚାକର ହେବୁନାହିଁ । ପଞ୍ଚଙ୍କର ଚାକର ହେବାକୁ ଆମ୍ଭର ଇଚ୍ଛା । ଆପଣମାନେ ସମସ୍ତେ ଏକତ୍ର ହୋଇ ଆମ୍ଭଙ୍କୁ ଆଦେଶ କଲେ ଆମ୍ଭେ ଯଥାସାଧ୍ୟ ତାହା ପାଳିବାକୁ ଚେଷ୍ଟା କରିବୁଁ । ଆମ୍ଭେ ଏଠାରେ ବୁଲି ଦେଖିଲୁଁ ଯେ ମିଉନିସିପାଲିଟି ସମ୍ପର୍କରେ ଲୋକଙ୍କର ଅନେକ ଦୁଃଖ ଅଛି । ଯେଉଁମାନେ ଭିକ୍ଷା ଦ୍ୱାରା ଦିନପାତ କରୁଅଛନ୍ତି ତାହାଙ୍କ ଠାରୁ ସୁଦ୍ଧା ଟିକସ ନିଆ ଯାଉଅଛି । ବିଲାତରେ ଭିକ୍ଷାଜୀବୀ ନାହାନ୍ତି ବୋଲି ସାହେବମାନେ ତାହା ବୁଝିପାରନ୍ତି ନାହିଁ । ଆପଣାର ଦୁଃଖ ଓ ଅଭାବ ନିର୍ଭୟରେ ସାହେବମାନଙ୍କୁ ଜଣାଇବାର ଉଚିତ । ସମସ୍ତେ ଏକମେଳ ହୋଇ ଦୁଃଖ କହିଲେ ଅବଶ୍ୟ ଶୁଣାଯିବ । ସାହସ ପୂର୍ବକ ଦୁଃଖ କହିବ – ଓଡ଼ିଆ ଧମକକୁ ଡରିବ ନାହିଁ । ଡରି ରହିଲେ କଦାଚ ଭଲ ହେବ ନାହିଁ । ନିର୍ଭୟରେ ଦୁଃଖ କହ ଆମ୍ଭେ ଯଥା ସାଧ୍ୟ ସାହାଯ୍ୟ କରିବୁଁ । କଟକରେ ଗୋଟିଏ ବୃହଦ୍ ସଭା ଅଛି । ତୁମ୍ଭେମାନେ ଏଠାରେ ଗୋଟିଏ ଶାଖା ସଭା କର ତାହାହେଲେ ସେଠାରେ ବିବେଚକ ଓ ସମସ୍ତ ବ୍ୟକ୍ତିଙ୍କର ସାହାଯ୍ୟ ପାଇବ । ଜମିଦାର ପ୍ରଜା, ହିନ୍ଦୁ ମୁସଲମାନ, ବଡ଼ଲୋକ ଓ ଗରିବଙ୍କ ମଧ୍ୟରେ ସହାନୁଭୂତି ରହିଲେ ଅବଶ୍ୟ ଭଲ ହେବ । ସଭା ଦ୍ୱାରା ସେପରି କାର୍ଯ୍ୟ ସାଧନ ହେବ । ....

***

## (୪)

## ହିନ୍ଦୁ-ମୁସଲମାନ ମୈତ୍ରୀ

... ମୁସଲମାନମାନେ ଚିରକାଳ ନିମିତ୍ତ ଭାରତବର୍ଷରେ ରହିଥିବାରୁ ହିନ୍ଦୁମାନଙ୍କର ଭାଇ ସ୍ୱରୂପ ହୋଇଅଛନ୍ତି । ଏକ ରାଜା ଅଧୀନରେ ଏକ ନିୟମରେ ଚାଳିତ ହେଉଥିବାରୁ ସାଧାରଣରେ କିଛି ପ୍ରଭେଦ ନାହିଁ । ହିନ୍ଦୁର ଯେ ଅଭାବ ତାହା ମୁସଲମାନର ଅଭାବ ଓ ମୁସଲମାନର ଅଭାବ ମଧ୍ୟ ହିନ୍ଦୁର ଅଭାବ । ଅତଏବ କୌଣସି ଅଭାବ ଦୂର କରିବା କାରଣ ସମସ୍ତଙ୍କୁ ମିଶି କାର୍ଯ୍ୟ କରିବାକୁ ହେବ । ମୁସଲମାନମାନେ ପୃଥିବୀର ନାନା ଦେଶରେ ରାଜତ୍ୱ କରିଅଛନ୍ତି ଅତଏବ ଅନ୍ୟଙ୍କ ସହିତ ମିଶିବାର କୌଶଳ ଭଲ ଜାଣନ୍ତି । ହିନ୍ଦୁ ସ୍ୱରାଜ୍ୟର ବାହାରକୁ ଯାଇ ନଥିବାରୁ ସେ ଅଂଶରେ ଊଣା ଅଟଇ । ବିନଗ୍ରେସ୍ ଓ ସଏଦ ଅହମ୍ମଦଙ୍କ କଥାର ଉଲ୍ଲେଖ କରି କହିଲେ କି ସେ ଆପଣା ଭାଇବିରାଦରଙ୍କୁ ସରକାରୀ ଚାକିରୀ ଦେବା ନିମିତ୍ତ ସାହେବଙ୍କ ଖୋସାମଦରେ ଅଛନ୍ତି ମାତ୍ର ସମସ୍ତଙ୍କ ବିଚାର କରିବା ଉଚିତ ଯେ ସମସ୍ତ ମୁସଲମାନମାନେ ସରକାରୀ ଚାକିରୀ ପାଇପାରିବେ ନାହିଁ । ଅଧିକାଂଶ ଲୋକ ଅନ୍ୟ ଉପାୟରେ ଜୀବିକା ନିର୍ବାହ କରିବେ ଅତଏବ ସମସ୍ତଙ୍କର ଯହିଁରେ ମଙ୍ଗଳ ହେବ ତାହା କରିବା ଉଚିତ । ... ବଙ୍ଗାଳିମାନଙ୍କ ଦ୍ୱାରା ଅନେକ ଉପକାର ହୋଇଅଛି ମାତ୍ର ଇଂରେଜଙ୍କ ସହିତ ଏ ଦେଶୀୟଙ୍କର ବିଚ୍ଛେଦ ଜନ୍ମାଇବା ରୂପ ଗୋଟିଏ ମହା ଅପକାର କରୁଅଛନ୍ତି । ... ମୁସଲମାନମାନଙ୍କର ସେବାରେ ସର୍ବଦା ନିଯୁକ୍ତ ହେବାକୁ ସୁଖୀ ହେବି ଏବଂ ...ସାଧ୍ୟାନୁସାରେ ସେମାନଙ୍କୁ ସାହାଯ୍ୟ କରିବାକୁ ତ୍ରୁଟି କରିବି ନାହିଁ ।

***

## (୫)

## ରେଳପଥ ଓ ଓଡ଼ିଆମାନଙ୍କ ସମସ୍ୟା

ପୁରୀ, କଟକ, ବନାରସ ରେଲ ବାଟ ହୋର ମିଲ୍ର କମ୍ପାନୀ ନିର୍ମାଣ କରିବା ଓ ଚଳାଇବାର ଭାର ନେଇଅଛନ୍ତି । ବଙ୍ଗଳା ନାଗପୁର ରେଲବାଟ ମଧ୍ୟ ଏହି କମ୍ପାନୀ କରୁଅଛନ୍ତି । ସେ କାର୍ଯ୍ୟ ଶେଷକଲା ଉତ୍ତାରୁ ଏ ରେଲବାଟରେ ହାତ ଦେବା ଉକ୍ତ କମ୍ପାନୀର ଇଚ୍ଛା । ଏପରି ହେଲେ ଓଡ଼ିଶା-ରେଲବାଟ ବହୁତ ଦିନ ପଛକୁ ପଡ଼ିଯିବ । କିନ୍ତୁ ଏ ବାଟ ଶୀଘ୍ର ନ କଲେ ଗବର୍ଣ୍ଣମେଣ୍ଟ ଏହାଙ୍କୁ ନ ଦେଇ ଅନ୍ୟ କମ୍ପାନୀକୁ ଦେବାର ଇଚ୍ଛା ପ୍ରକାଶ କଲେ ଅଗତ୍ୟା ସେମାନେ ଶୀଘ୍ର କାର୍ଯ୍ୟାରମ୍ଭ କରିବେ । ବଙ୍ଗଳା–ନାଗପୁର ରେଲ ଆଗେ ହେଲେ ଓଡ଼ିଶା ରେଲବାଟ ନିର୍ମାଣ କରିବାର ଅଧିକ ସୁବିଧା ହେବ ଏ ବିଚାର ଯୁକ୍ତିସିଦ୍ଧ ନ ହେଇ ବରଂ ଜାହାଜ ବାଟେ ରେଲର

ଉପକରଣମାନ ପରବାହରେ ପୁରୀକି ଆଣି ସେହିଠାରୁ ନିର୍ମାଣ କାର୍ଯ୍ୟ ଆରମ୍ଭ କରିବା ଅଧିକ ସୁବିଧାର କଥା ଏବଂ କଟକରୁ ପୁରୀକି ଯିବାର ଯେ ସ୍ଥଳେ ଯାତ୍ରୀଙ୍କର ଅନ୍ୟ ଉପାୟ ନାହିଁ ସେ ସ୍ଥଳେ ଏ ରେଲ ହେବା ସଙ୍ଗେ ସଙ୍ଗେ କମ୍ପାନୀର ଆୟ ହେବ ଏବଂ କଟକରୁ ସମୁଦ୍ର ଓ ନାଳ ବାଟେ ରେଲର ଉପକରଣମାନ ଅଣାଇବାର ସମ୍ପୂର୍ଣ୍ଣ ସୁବିଧା ଅଛି ସୁତରାଂ ରେଲବାଟ ନିର୍ମାଣ ପକ୍ଷରେ କିଛି ଅସୁବିଧା ନାହିଁ । ...

***

## (୬)

## ବନ୍ଦୋବସ୍ତ ଓ ପ୍ରଜାମାନଙ୍କ ଦୁଃଖ

... ସମସ୍ତଙ୍କର ଏହା ବୁଝିବା ଉଚିତ୍ ଯେ ବନ୍ଦୋବସ୍ତର ଅର୍ଥ ଜମାବୃଦ୍ଧି ଅଟେ । ସରକାର ବା ଜମିଦାର ଯେ କେହି ବନ୍ଦୋବସ୍ତ କରେ ଜମାବୃଦ୍ଧି ତହିଁର ଅଭିପ୍ରାୟ ଅଟେ । ବର୍ତ୍ତମାନ ଯେ ସ୍ଥଳେ ବନ୍ଦୋବସ୍ତ ହେଉଅଛି ସେ ସ୍ଥଳେ ଜମା ବୃଦ୍ଧି ହେବ ଏଥିରେ ଆଶ୍ଚର୍ଯ୍ୟ ହେବାର କାରଣ ନାହିଁ । ଜମିର ଉନ୍ନତି ତାହା ଦ୍ୱାରା କି ପ୍ରକାରେ ହେଲା ଓ ତହିଁର ଫଳ କି ପରିମାଣରେ କିଏ ଭୋଗ କରିବେ ଏ ପ୍ରଶ୍ନ ନିତାନ୍ତ ଅଯୌକ୍ତିକ ବୋଲାଯାଇ ନ ପାରେ ମାତ୍ର ତାହା ଇଂଲଣ୍ଡ ପ୍ରଭୃତି ରାଜ୍ୟ ପ୍ରତି ଖଟେ । ଭାରତର ପ୍ରତ୍ୟେକ ଭୂମିଖଣ୍ଡରେ ସରକାରଙ୍କ ସତ୍ତ୍ୱାଧିକାର ଥିବା ପ୍ରତ୍ୟକ୍ଷେ ଯେପ୍ରକାରେ ଭୂମିର ଉନ୍ନତି ସାଧନା ହେଉ ପଛକେ ସରକାର ତହିଁର ଭାଗ ପାଇବାର ଯୋଗ୍ୟ । ଏଥି ମଧ୍ୟରେ ଜମାବନ୍ଦି କାର୍ଯ୍ୟ ଅନେକ ଦୂର ଅଗ୍ରସର ହୋଇଅଛି ଏବଂ ପ୍ରଜାମାନେ ଜମାବନ୍ଦି ଫର୍ଦ୍ଦରେ ସମ୍ମତି ସତକ [ସୂଚକ] ଦସ୍ତଖତ କରିଅଛନ୍ତି । କଥିତ ହୁଅଇ ଯେ ଅନେକ ପ୍ରଜା ଭୟ ବା ଧମକ ଚମକରେ ସ୍ୱାକ୍ଷର କରିଅଛନ୍ତି । ଏଥିରେ କୌଣସି ପ୍ରମାଣ ସଭାରେ ଆଗତ ହୋଇନାହିଁ ଏବଂ ଅନେକ ଲୋକ ବାଧ ହୋଇ ଦସ୍ତଖତ କରିବାର ଅନୁମାନ ହେଉନାହିଁ । ଯେବେ ଲୋକେ ବୁଝାସୁଝା ନ କରି ଅଥବା ହେଳାରେ ସ୍ୱାକ୍ଷର କରିଅଛନ୍ତି ତେବେ ତହିଁର ପ୍ରତିକାର ଅସମ୍ଭବ । ଯେ ଆତ୍ମଘାତୀ ହେବ ତାହାକୁ କେହି ରକ୍ଷା କରିବାକୁ ସମର୍ଥ ନୁହେଁ, ତଥାତ ଯେବେ ସଭା ଜାଣିପାରିବେ ଯେ ଅନେକ ସ୍ଥଳେ ଗରିବ ପ୍ରଜାଙ୍କର ଜମାବୃଦ୍ଧି ଏପରି ହୋଇଅଛି ଯେ ତାହା ଅସହ୍ୟ ଏବଂ ପ୍ରଜା-ଜର୍ଜର ତେବେ ତହିଁର ପ୍ରତିକାର ଲୋଡ଼ିବା ଅବଶ୍ୟ କର୍ତ୍ତବ୍ୟ ଅଟେ । ...

***

## (୭)

## ମହାମାରୀ ଓ ଆମର କର୍ତ୍ତବ୍ୟ

... ଯେ କୌଣସି ବେମାରି ପହଞ୍ଚିଲେ ଆଗେ ଗରିବମାନେ କଷ୍ଟ ଭୋଗ କରନ୍ତି । ଗରିବମାନଙ୍କ ଉପରେ ବଡ଼ଲୋକଙ୍କ ଦୁଃଖ ନିର୍ଭର କରେ ଏଥିଯୋଗୁଁ ଗରିବକୁ ସାହାଯ୍ୟ କରିବା ବଡ଼ଲୋକଙ୍କର ଉଚିତ । ଗରିବ ଲୋକମାନେ [ଲୋକମାନଙ୍କ] ଘରଦ୍ୱାର ସଫା ରଖିବା ନିମନ୍ତେ କିଛି କିଛି ଖର୍ଚ୍ଚ ହେବ । ସେମାନଙ୍କୁ ବଡ଼ଲୋକମାନେ ସାହାଯ୍ୟ ନ କଲେ ସେମାନେ ତାହା ନିର୍ବାହ କରିପାରିବେ ନାହିଁ । ରୋଗୀମନୁଷ୍ୟକୁ ପୃଥକ୍ ସ୍ଥାନରେ ରଖିବା କଥା ଏ ଦେଶରେ ପୂର୍ବରୁ ଅଛି । ଯାହାର କୁଷ୍ଠରୋଗ ହୁଏ ତାହା ସଙ୍ଗେ କେହି ବସା ଉଠା ଖିଆପିଆ କରନ୍ତି ନାହିଁ । ...

***

## (୮)

## ଅଭିବାଦନର ଉତ୍ତର

... ଆପଣମାନଙ୍କର ଏତେ ସ୍ନେହ ଓ ପ୍ରେମ ସକାଶେ ମୁଁ ଅନ୍ତରର ସହିତ ଧନ୍ୟବାଦ ଦେଉଅଛି । ପ୍ରୀତି ସୁଖକର ବୋଲି ମୁଁ ବୁଝିଥିଲି । ଆଜି ଅନୁଭବ କରୁଅଛି ତାହା ଅତି ଦୁର୍ବହ । ଏ ଭାର ବହିବାକୁ ମୋର ସାମର୍ଥ୍ୟ ନାହିଁ । ଚନ୍ଦ୍ରର ଲାବଣ୍ୟ ରୂପ ଦେଖି ସମୁଦ୍ର ଜଳ ଆନନ୍ଦରେ ଉପରକୁ ଉଠି ଯହୁଁ ଦେଖେ ଯେ ଚନ୍ଦ୍ରରେ କଳଙ୍କ ରହିଅଛି ତହୁଁ ଫେରିଆସି ମୁକ୍ତା ପ୍ରବାଳାଦି କୂଳ ପାଖରେ ଥୋଇଦେଇ ଚାଲିଯାଏ । ମୋହର ଅନେକ ଦୋଷ ଅଛି । ମୁଁ ଏତେ ସ୍ନେହର ଯୋଗ୍ୟ ନୁହେ । ତାହା କେବଳ ଆପଣମାନଙ୍କର ଉଦାରତା । ଏହି ଯେ ଫୁଲମାନେ ମତେ ପିନ୍ଧାଇ ଦେଇଅଛ ଏଥିର ପ୍ରତ୍ୟେକ ଫୁଲ ଏବଂ ପାଖୁଡ଼ା ଆପଣମାନଙ୍କର ସ୍ନେହରେ ଗଠିତ ହୋଇଅଛି । ମୁଁ ଏହା ଉତ୍କଳ ଜନନୀଙ୍କୁ ଅର୍ପଣ କରୁଅଛି । ଏକ ସମୟରେ ଜନନୀଙ୍କର ଏକ ପଦ ଗଙ୍ଗା ଓ ଅନ୍ୟ ପଦ ଗୋଦାବରୀରେ ରହିଥିଲା ଏବଂ ତାହାଙ୍କର କୀର୍ତ୍ତି ପଥରରେ ଖୋଦିତ ହୋଇ ବିଶ୍ୱ ଲୋକଙ୍କର ଆଶ୍ଚର୍ଯ୍ୟ ବଢ଼ାଉଥିଲା । ବର୍ତ୍ତମାନ ତାହାଙ୍କର ଦୁର୍ଦ୍ଦଶା ଦେଖି ମୁଁ କେତେ କାନ୍ଦିଛି ଓ କାନ୍ଦିବି । ଜନ୍ମବେଳେ କାନ୍ଦିଥିଲି; ବୋଧହୁଏ ଶେଷ ପର୍ଯ୍ୟନ୍ତ କାନ୍ଦିବାକୁ ହେବ । ଆପଣମାନେ ସମସ୍ତେ ଏକ ମନରେ ଯତ୍ନ କଲେ ଉତ୍କଳ ଜନନୀଙ୍କର ସୁଦିନ ଆସିପାରେ । ମୋର ଏହି ପ୍ରାର୍ଥନା ।

***

## (୯)

## ରଙ୍ଗମଞ୍ଚ ଓ ସମାଜ

.... ଯେପରି ଦେଶର ନାନା ସ୍ଥାନରେ ଜଳ ବୋହି ଯାଉଥାଏ ସମାଜରେ ସେହିପରି ଭଲମନ୍ଦ ଗୁଣମାନ ଚଳୁଥାଏ । ମାତ୍ର ବହନ୍ତା ନଦୀର ଜଳ ଭଲମନ୍ଦକୁ ଅନାଇଲେ ହଠାତ୍ ଦେଖାଯାଏନାହିଁ, ସ୍ୱଚ୍ଛ ଗ୍ଲାସ୍‌ରେ ଉଠାଇ ଧରିଲେ ଜଣାପଡ଼େ । ସେହିପରି ରଙ୍ଗମଞ୍ଚରୂପ କ୍ଷୁଦ୍ରାୟତନ ବିଶିଷ୍ଟ ସ୍ଥାନରେ ସମାଜର କୁସଂସ୍କାର ଏବଂ ସୁଗୁଣମାନ ସହଜରେ ଚିହ୍ନାପଡ଼ଇ । ଅଳ୍ପଦିନ ତଳେ ଏହି ଥିଏଟର କମ୍ପାନୀ ଶିବାଜିର ଅଭିନୟ କରିବା କାଳରେ ସ୍ୱଦେଶପ୍ରେମ ଓ ସ୍ୱଜନୋପକାରର ଜ୍ୱଳନ୍ତ ଉଦାହରଣ ଦେଖାଯାଇଥିଲା ଏବଂ ସଙ୍ଗେ ସଙ୍ଗେ ସେହି କ୍ଷୁଦ୍ରାୟତନ ସ୍ଥାନରେ ଆରଙ୍ଗଜେବର ଗର୍ବ ଏବଂ ଅତ୍ୟାଚାରର ମଧ ଉଦାହରଣ ଦେଖାଗଲା । ଏଣୁ ରଙ୍ଗମଞ୍ଚ ଗୋଟିଏ ଉପଯୁକ୍ତ ଶିକ୍ଷାସ୍ଥଳ ଅଟେ ଏବଂ ଅଭିନେତାମାନେ ଗୁରୁସ୍ଥାନୀୟ । ଏଠା ଲୋକମାନେ ଅଭିନେତାମାନଙ୍କୁ ଗୁରୁଜ୍ଞାନ କରି ତାଙ୍କଠାରୁ ଯାହା ଶିକ୍ଷା ଲାଭ କରିଅଛନ୍ତି ତହିଁରେ ସନ୍ତୁଷ୍ଟ ହୋଇ ଦକ୍ଷିଣାସ୍ୱରୂପ ପଦକ ଏବଂ ବସ୍ତ୍ରର ଆୟୋଜନ କରିଥିବାରୁ [ମୁଁ] ... ସନ୍ତୁଷ୍ଟ ହୋଇ ତାହା ପ୍ରଦାନ କରିବା କାରଣ ଉପସ୍ଥିତ ... [ହୋଇଅଛି] ।

***

## (୧୦)

## ସ୍ୱଦେଶପ୍ରେମ ଓ ସ୍ୱଦେଶୀ ଦ୍ରବ୍ୟ

... ପ୍ରତିଜ୍ଞା କରିବା ଯଥେଷ୍ଟ ନୁହେ ତାହା ପାଳିବାକୁ ଅହରହ ଚେଷ୍ଟା କରିବା ଏବଂ ତହିଁ ପାଇଁ ଆତ୍ମସଂଯମ ଆବଶ୍ୟକ । ଦଶଜଣ ଏକତ୍ରିତ ବସି ଗୋଟିଏ ବିଷୟ ବିଚାର କରି ଅଧିକାଂଶ ମତରେ ଯାହା ସ୍ଥିର କରିବେ ସମସ୍ତେ ଦୃଢ଼ ଚିତ୍ତରେ ତାହା ପାଳନ କରିବେ ଏହାର [ଏହାହିଁ] ଆତ୍ମସଂଯମର ପ୍ରକୃତ ପଥ ଅଟେ । ପ୍ରତିଜ୍ଞା ପାଳିବା ସକାଶେ କିଛି ତ୍ୟାଗ ସ୍ୱୀକାର କରିବାକୁ ହେବ । ସାଧାରଣ ସ୍ୱାର୍ଥ ନିମନ୍ତେ ନିଜର ସ୍ୱାର୍ଥ କିଛି ତ୍ୟାଗ କରିବା ଉଚିତ । ଅଧିକ ତ୍ୟାଗସ୍ୱୀକାର କରିବାକୁ ...[ମୁଁ] ଅନୁରୋଧ କରୁନାହିଁ । ଦିନରାତ୍ର ମଧରେ ନିତି ଅନ୍ତତଃ ୧୦/୧୫ ମିନିଟ୍ ଆପଣା ପରିବାର ବା ବନ୍ଧୁମାନଙ୍କ ସଙ୍ଗେ ଦେଶର ହିତକଥା କୁହାକୁହି କରିବାକୁ ... [ମୁଁ] ଅନୁରୋଧ କରୁଅଛି । ଏହା ସମସ୍ତେ ପାରନ୍ତି ଏବଂ ଅଭ୍ୟାସ ହେଲେ ତହିଁର ଉପକାର ଅଳ୍ପଦିନରେ ଜଣାପଡ଼ିବ । ... ଯେଉଁ ଦେଶରେ ଯେପରି ଜୋତା ଅଛି ସେହି ଜୋତା ବ୍ୟବହାର କରିବା ଉଚିତ, ତାହା

କଦାକାର ବୋଲି ବ୍ୟବହାର୍ଯ୍ୟ ନୁହେଁ ଏପରି ଜ୍ଞାନ କରିବା ଭ୍ରମଜନକ । ଜାପାନ ଜେନେରଲ ଟୋଗୋଙ୍କ ଜୁତା କଦାକାର ହୋଇଥିଲେ ସୁଦ୍ଧା ସେ ତାଙ୍କର ଦେଶ ଜୁତାକୁ ଛାଡ଼ିବାକୁ ଚାହାନ୍ତି ନାହିଁ । ଅତଏବ ଆମ୍ଭମାନଙ୍କର ମଧ୍ୟ ସେହିପରି ସ୍ୱଦେଶୀ ଜୁତା ପ୍ରତି ପ୍ରେମ ଦେଖାଇବା ଉଚିତ । .... ଇଂଲଣ୍ଡର ଏକ ଜୁତା ଦୋକାନରେ ଇଂଲଣ୍ଡର ଜୁତା ଅପେକ୍ଷା ଜର୍‌ମାନିର ଜୁତା ୨ ଟଙ୍କା ଊଣା ମୂଲ୍ୟରେ ବିକ୍ରୟ ହେଉଥିବା ସ୍ଥଳେ ଜଣେ ସାମାନ୍ୟ ଇଂରାଜୀ ଗ୍ରାହକ ଅଧିକ ମୂଲ୍ୟ ଦେଇ ସ୍ୱଦେଶୀ ଜୁତା କିଣିଲା । ଅଥଚ ଇଂଲଣ୍ଡୀୟ ଜୁତା ଅପେକ୍ଷା ଜରମାନି ଜୁତା କୌଣସି ଅଂଶରେ ନ୍ୟୁନ ନ ଥିଲା । .... କାରଣ ପଚାରିବାରେ ସେ [ଇଂରାଜୀ ଗ୍ରାହକ] ଉତ୍ତର କରିଥିଲେ ଯେ ଦେଶର ଟଙ୍କା ଦେଶରେ ଚଳ ପ୍ରଚଳ ହେବ ଏବଂ ସେ ମଧ୍ୟ ବ୍ୟବସାୟ ସୂତ୍ରରେ ତହିଁର କିଛି ଭାଗ ପାଇପାରିବ, ମାତ୍ର ଜର୍‌ମାନି ଜୁତାର ମୂଲ୍ୟ ସେ ଦେଶକୁ ବାହାରିଯିବ ।

***

## (୧୧)

## ଉତ୍କଳ ସଭାରେ ପ୍ରଦତ୍ତ ସଭାପତି ଅଭିଭାଷଣ

... ସ୍ୱଦେଶ ପ୍ରେମକୁ ଧର୍ମ ବୋଲି ନ ମଣିବା ପର୍ଯ୍ୟନ୍ତ ଆମ୍ଭମାନଙ୍କର ମନୁଷ୍ୟତା ନ ହେବା ବିଷୟ ଦେଶୀୟ ଲୋକଙ୍କୁ ଯାହା ଶିଖାଇବାକୁ ହେଲା ଏହାହିଁ ପରିତାପର ବିଷୟ ଏବଂ ଏଥୁଁ ବଳି ଅମନୁଷ୍ୟତା ଆଉ ହୋଇ ନ ପାରେ । ଆମ୍ଭମାନଙ୍କ ଦେଶରେ ବିଦେଶୀ ଲୁଣ ଓ ବିଦେଶୀ ଦ୍ରବ୍ୟର ବ୍ୟବହାର କଲେ ଧର୍ମ ନଷ୍ଟ ହେବାର ଚିରଦିନ ଶିକ୍ଷା ଅଛି । ଏ ଶିକ୍ଷା ଆମ୍ଭେମାନେ ଭୁଲିଯାଇଅଛୁଁ । ପ୍ରତ୍ୟେକ ବିଦେଶୀୟ ଦ୍ରବ୍ୟ ବ୍ୟବହାର କରିବା ଦ୍ୱାରା ଆମ୍ଭେମାନେ ଦେଶୀୟ କାରିଗରଙ୍କ ଅନ୍ନ [ଅନ୍ନ] ଗ୍ରାସ କାଢ଼ି ନେଉଅଛୁଁ ଏବଂ ସେମାନେ ଅନାହାରରେ ମଲେ ଆମ୍ଭେମାନେ ସେଥି ନିମିତ୍ତ ଦାୟୀ ଅଛୁଁ । ମାତ୍ର ଏ ବିଷୟକ ଚିନ୍ତା କେତେ ଜଣ କରିଥାନ୍ତି ? ଆତ୍ମା ଅମର ଅଟେ ଏବଂ ଉନ୍ନତି ହିଁ ତହିଁର ଧର୍ମ । ଆମ୍ଭେମାନେ ସ୍ୱଦେଶର ଚିନ୍ତା କରୁଥିଲେ କ୍ରମଶଃ ଉନ୍ନତିମାର୍ଗରେ ଯାଉଥିବୁଁ । ସ୍ୱାର୍ଥତ୍ୟାଗ ଏକାନ୍ତ ପ୍ରୟୋଜନୀୟ ଅଟେ । ଯେଉଁ ବତୀ ଆଲୋକ ପ୍ରଦାନ କରୁଅଛି ସେ ନିଜେ ପୋଡ଼ି ଯାଉଅଛି । ଆପଣାକୁ ସଂସାରରେ ନଗଣ୍ୟ ମଣି ସ୍ୱତେଜ ଏବଂ ଉତ୍ସାହରେ ପ୍ରଣୋଦିତ ହୋଇ କାର୍ଯ୍ୟ ନ କଲେ ନିଜର କିମ୍ବା ଦେଶର ଉନ୍ନତି ହେବ ନାହିଁ । ଗଛରେ ଫଳଟିଏ ହେଲେ ଗଛର ଲାଭ ନାହିଁ । ତାହା ଗୋରୁ ମନୁଷ୍ୟ ଖାଇ ପ୍ରାଣ ଧାରଣ କରନ୍ତି । ଗଛର ପତ୍ର ଶୋଭା ନିମିତ୍ତ ନୁହେ । ତାହା ଜଳରେ ପଡ଼ି ସାର ହୋଇ ଅନ୍ୟ ଗଛର ପୁଷ୍ଟିର କାରଣ ହୁଏ । ଆମ୍ଭେମାନେ ଏହି ଦୃଷ୍ଟାନ୍ତମାନ ଘେନି ସ୍ୱାର୍ଥତ୍ୟାଗ କରିବାକୁ ଶିକ୍ଷା ନ କଲେ ମନୁଷ୍ୟ ହେବୁ ନାହିଁ ।

ଦେଶଲୋକେ ମିଲଟନ, ସେକ୍ସପୀୟର ଅଥବା କାଳୀଦାସଙ୍କୁ ଖାଇବାକୁ ନ ଦେଇ ମାରି ପକାଇଥିଲେ ଅଥଚ ସେମାନେ ଗୁଣର ପରାକାଷ୍ଠା ଦେଖାଇଥିବାରୁ ଦେଶ ସେମାନଙ୍କୁ ଆପଣାର ବୋଲି କହୁଅଛି । ସେହିପରି ସମସ୍ତେ ଉତ୍ସାହାନ୍ୱିତ ହୋଇ ସତ୍ କାର୍ଯ୍ୟରେ ବ୍ରତୀ ହେଉନ୍ତୁ । ଆମ୍ଭମାନଙ୍କୁ ନେଇ ଦେଶ । ଦେହର ଏକ ସ୍ଥାନରେ ସୂଚିବିଦ୍ଧ ହେଲେ ସମସ୍ତ ଅଙ୍ଗ ପୀଡ଼ିତ ହୁଏ । ସୁତରାଂ ସମସ୍ତଙ୍କୁ ସଦ୍‌ଗୁଣର ଆଶ୍ରୟ କରି ଆତ୍ମୋନ୍ନତିରେ ବ୍ରତୀ ହେବା ବିଧେୟ । ...

***

## (୧୨)

## କଟକର ଅଭ୍ୟର୍ଥନାସଭାରେ ପ୍ରଦତ୍ତ ବକ୍ତୃତା

... ଦେଶଲୋକଙ୍କୁ ଘେନି ସମ୍ମିଳନୀ । ରାଜା ମହାରାଜାଙ୍କ ଦାନ କଥା କେହି ଭୁଲି ପାରନ୍ତି ମାତ୍ର ବିଦୁରର ଖୁଦ କଣିକାକୁ କେହି ଭୁଲିପାରିବେ ନାହିଁ । ସର୍ବସାଧାରଣ ଯଥାଶକ୍ତି ସମ୍ମିଳନୀର [ସମ୍ମିଳନୀକୁ] ସାହାଯ୍ୟ କରି କାର୍ଯ୍ୟ କଲେ ଅବଶ୍ୟ ପରମ ସୁଖର ବିଷୟ ହେବ । ମାତ୍ର ଆଉ କିଛି ଦେବାର ତେଣିକି ଥାଉ, କେତେଜଣ ଲୋକ ଦେଶର କଥା ଚିନ୍ତା କରନ୍ତି ? ଯଦି ଆମ୍ଭମାନଙ୍କ ମଧରେ ନିୟମ ହୁଏ ଯେ ପ୍ରତିଦିନ ଅନ୍ତତଃ ୧୦ ମିନିଟ୍ ଦେଶର କଥା ଚିନ୍ତା କରିବା, ତାହାହେଲେ ଦେଶର ଦୁର୍ଦ୍ଦଶା ଅଚିରେ ମୋଚନ ହେବ । ପ୍ରତିଦିନ ଦେଶର ଏବଂ ସମ୍ମିଳନୀର କଥା ନିୟମିତ ରୂପେ ଜଣକ ସଙ୍ଗରେ ହେଲେ କରନ୍ତି ଏବଂ ନିତାନ୍ତ କେହି ନ ମିଳିଲେ ଯେଉଁ ଚାକର ବାକର ତାଙ୍କର [ସମ୍ମିଳନୀ କଥା ଚିନ୍ତା କରିବା ବ୍ୟକ୍ତିଙ୍କର] ଗୋଡ଼ ଘଷି ଦିଏ ତାହା ସଙ୍ଗରେ ହେଲେ ସେହି କଥାର ଚର୍ଚ୍ଚା କରନ୍ତି । ନିୟମ ରକ୍ଷା ଗୋଟିଏ ପ୍ରଧାନ କଥା । ଅନେକ ଲୋକ କେରିଏ ଘାସ ନେଇ ଗୋରୁକୁ ନ ଦେଲେ ଖାଆନ୍ତି ନାହିଁ ଏବଂ ସେ [ସେହିଭଳି ଲୋକମାନେ] ଖରାବେଳେ ମଧ୍ୟ କେରିଏ ଘାସ ନେଇ ଗୋରୁ ଖୋଜି ବୁଲିବାର ଲୋକ ଦେଖିଅଛନ୍ତି । ମୋର ମାତା ଅନାହାରିକୁ ଖାଇବାକୁ ନ ଦେଇ ନିଜେ ଖାଉ ନ ଥିଲେ । ଯଦି ଦେଶଲୋକ ଏବଂ [ଏହି] ଦେଶର ଚିନ୍ତା କରିବାର ନିୟମ କରନ୍ତି ତାହା ହେଲେ ଅଚିରେ ଆମ୍ଭମାନଙ୍କର ଭାଗ୍ୟର ପରିବର୍ତ୍ତନ ହେବ । ...

***

(୧୩)

## ରେଭେନ୍ସା କଲେଜିଏଟ ସ୍କୁଲ୍ ପୁରସ୍କାର ବିତରଣୀ ସଭାରେ ପ୍ରଦତ୍ତ ସଭାପତି ଅଭିଭାଷଣ

ସଭାପତି ଭାବରେ ଛାତ୍ରମାନଙ୍କୁ କିଛି କହିବାର କଥା । ଏ ସ୍କୁଲ୍‌ର ଯେତେ ପୁରାତନ ଛାତ୍ର ବଞ୍ଚିଛନ୍ତି ମୁଁ ସେମାନଙ୍କ ମଧ୍ୟରେ ସବୁଠାରୁ ବୟୋଧିକ ଭାବି ନାରାୟଣ ବାବୁ [ନାରାୟଣ ପ୍ରସାଦ ମହାନ୍ତି - ରେଭେନ୍ସା କଲେଜିଏଟ ସ୍କୁଲ୍‌ର ତତ୍କାଳୀନ ପ୍ରଧାନ ଶିକ୍ଷକ] ମୋତେ ସଭାପତି ହବା ପାଇଁ ଅନୁରୋଧ କରିଛନ୍ତି । ଏ ସ୍କୁଲ୍‌ରେ ସବୁ ବର୍ଷ କମିଶନର ସାହେବ ସଭାପତି ହୁଅନ୍ତି । କିନ୍ତୁ ନାରଣବାବୁ ପ୍ରଥମ ଓଡ଼ିଆ ହେଡ୍‌ମାଷ୍ଟର ଥିବାରୁ ଜଣେ ବେସରକାରୀ ଓଡ଼ିଆ ବ୍ୟକ୍ତିଙ୍କୁ ଏ ସମ୍ମାନ ଦେଖାଇଛନ୍ତି । ମୁଁ ଏଠାରେ ବସିବାବେଳେ ଗଲା ପଚାଶ ବର୍ଷ ତଳର କଥା ମନେ ପଡ଼ିଯାଉଛି । ଏହି ସ୍କୁଲ୍, ଯାହାର ନାମ ସେତେବେଳେ କଟକ ଗଭର୍ଣ୍ଣମେଣ୍ଟ ସ୍କୁଲ୍ ଥିଲା, ତହିଁର ମୁଁ ଛାତ୍ର ଥିଲି । ସେତେବେଳେ ଏହା ଓଡ଼ିଶାର ଏକମାତ୍ର ହାଇସ୍କୁଲ୍ ଥିଲା ଓ ସଂଗେ ସଂଗେ ବାଲେଶ୍ୱରରେ ଏକ ସ୍କୁଲ୍ ହେଲା । ଗଭର୍ଣ୍ଣମେଣ୍ଟ ହାଇସ୍କୁଲ୍‌ରେ ଅଳ୍ପ ପିଲା ପଢୁଥାନ୍ତି । ବର୍ଷକେ ତିନି ଚାରି ଜଣ ଏଣ୍ଟ୍ରାନ୍ସ ପାସ କରୁଥାନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ବଙ୍ଗାଳୀ, ବଙ୍ଗଦେଶରୁ ଯେଉଁ ବଙ୍ଗାଳୀ କର୍ମଚାରୀମାନେ ଓଡ଼ିଶା ଶାସନ କରିବାକୁ ଆସିଥାନ୍ତି, ସେହିମାନଙ୍କ ପିଲାମାନେ ଏଠାରେ ପଢୁଥାନ୍ତି । ମୋ ଆଗରୁ ଖାଣ୍ଟି ତିନିଗୋଟି ଓଡ଼ିଆ, ଯଥା - ବନମାଳୀ ସିଂହ, ବିଚ୍ଛନ୍ଦ ପଟ୍ଟନାୟକ, ନନ୍ଦକିଶୋର ଦାସ ଏବଂ ଦୁଇଜଣ ଉତ୍କଳବାସୀ ବଙ୍ଗାଳୀ – ଜଗନ୍ମୋହନ ରାୟ ଓ ପ୍ୟାରୀମୋହନ ସେନ ଏଣ୍ଟ୍ରାନ୍ସ ପାସ୍ କରିଥିଲେ ଓ ମୋ ବର୍ଷ ମୁଁ, ମଧୁସୂଦନ ମହାପାତ୍ର ଓ ଆଉ ଦୁଇଜଣ ବଙ୍ଗାଳୀ ଓ ଜଣେ ସାହେବ ଏଣ୍ଟ୍ରାନ୍ସ ପାସ୍ କଲେ । ବନମାଳୀ, ନନ୍ଦକିଶୋର, ଜଗନ୍ମୋହନ ସଂଗେ ସଂଗେ ଡେପୁଟି କଲେକ୍ଟର ହେଲେ ଓ ନନ୍ଦକିଶୋର ଶେଷରେ ଗଡ଼ଜାତର ଆସିଷ୍ଟେଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ହେଲେ । ପରେ ବନମାଳୀ, ଜଗନ୍ମୋହନ [ଏଠାରେ ସୂଚନାଯୋଗ୍ୟ ଯେ ମଧୁସୂଦନ, ଜଗନ୍ମୋହନ ରାୟ ଓ ଜଗନ୍ମୋହନ ଲାଲ, ଉଭୟଙ୍କୁ ଏକ କରି କହିଛନ୍ତି । ଡେପୁଟୀ ମାଜିଷ୍ଟ୍ରେଟ୍ ଜଗନ୍ମୋହନ ରାୟ ଲେଖକ ନ ଥିଲେ । - ସଂ] ଅନେକ ସାହିତ୍ୟିକ ଲେଖା ଓଡ଼ିଆ ଭାଷାରେ ଲେଖିଲେ । ବିଚ୍ଛନ୍ଦ ବାବୁ ଏଫ୍.ଏ.ପଢ଼ିବାକୁ ଯାଇଥିଲେ କିନ୍ତୁ ପଢ଼ା ଛାଡ଼ି ସ୍କୁଲ୍ ଇନ୍ସପେକ୍ଟର ହେଲେ ଓ ସେ ସମୟରେ ଅନେକ ଓଡ଼ିଆ ବହି ଲେଖିଥିଲେ । ପରେ ସେ ଡେପୁଟି କଲେକ୍ଟର ହୋଇ ଅଳ୍ପ ବୟସରେ ମରିଗଲେ । ପ୍ୟାରୀମୋହନ (ସେନ୍) ସ୍କୁଲ୍ ଇନ୍ସପେକ୍ଟର ହୋଇ ଅନେକ ପାଠ୍ୟପୁସ୍ତକ ଲେଖିଥିଲେ ଓ ମଧୁସୂଦନ ମହାପାତ୍ର ସରକାରୀ ଚାକିରୀ କରି

ବିଭାଗୀୟ କମିସନର ଅଫିସ୍‌ରେ ସିରସ୍ତାଦାର ହୋଇଥିଲେ ।

ମୁଁ ଏହି ସ୍କୁଲ୍‌ରେ ପଢୁଥିବାବେଳେ ମୋ ମୁଣ୍ଡରେ ଲମ୍ବା ଚୁଟି ବନ୍ଧା ହୋଇଥାଏ । ସେ କାଳରେ ଓଡ଼ିଶାରେ ବଡ଼ ସାନ ସବୁ ଶ୍ରେଣୀର ଲୋକ ଲମ୍ବା ବାଳ ରଖୁଥିଲେ । ନଣ୍ଡା ହୋଇଗଲେ ଲୋକଙ୍କୁ ପଠାଣ ବୋଲି ଥଟ୍ଟା କରାଯାଉଥିଲା । ବଙ୍ଗଦେଶରେ ତାର ପୂର୍ବରୁ ଚୁଟି କଟା ଆରମ୍ଭ ହୋଇ ସାରିଥିଲା । ମୁଁ ପଢ଼ିବାବେଳେ ଆମ୍ଭ ସ୍କୁଲ୍‌ର ବଙ୍ଗାଳୀ ପିଲାଏ ମୋର ଲମ୍ବା ଚୁଟି ଦେଖି ମାଇକିନା ଝିଅ ବୋଲି ଥଟ୍ଟା କରୁଥିଲେ ଓ ଥରେ ଗୋଟିଏ ପିଲା ମୋ ଲମ୍ବାବାଳକୁ କତୁରିରେ କାଟିଦେଲା । ମୋ ମନରେ କଷ୍ଟ ହେଲା । ବଙ୍ଗାଳୀ ପିଲାଏ ଓଡ଼ିଆ ପିଲାଙ୍କୁ ମଧ ଥଟ୍ଟା ପରିହାସ କରୁଥାନ୍ତି । ମୁଁ କହିଥିଲି ମୁଁ ବଡ଼ ହେଲେ ବେଶି ପାଠ ପଢ଼ିବି । ବଙ୍ଗାଳୀଙ୍କ ଦେଶରେ ବଙ୍ଗାଳୀଙ୍କୁ ପାଠ ଶିଖାଇବି ଓ ବଙ୍ଗାଳୁଣୀ ମାଇକିନା ବାହା ହେବି । ଆମେ ପଢ଼ିଲାବେଳେ ଇଂରାଜୀ ବଙ୍ଗଳା ବହି ପଢୁଥିଲୁ କାରଣ ସବୁତକ ମାଷ୍ଟର ବଙ୍ଗାଳୀ । ସେମାନେ ଓଡ଼ିଆରେ କଥା କହୁ ନ ଥିଲେ ଓ ଓଡ଼ିଆ ପାଠ୍ୟପୁସ୍ତକ ମଧ ନ ଥିଲା । ସେତେବେଳେ ଆମେ କେତେଜଣ ଓଡ଼ିଆ ପିଲାଙ୍କ ମନରେ ଭାବ ଆସିଲା ଯେ ଓଡ଼ିଆ ପାଠ୍ୟପୁସ୍ତକ ଥାନ୍ତା ଓ ଓଡ଼ିଆ ମାଷ୍ଟର ଥାନ୍ତେ କି ! ଯାହାହେଉ ମୁଁ ପାସ୍ କରି ଉଚ୍ଚଶିକ୍ଷା ପାଇଁ କଲିକତା ଯିବାପାଇଁ ଇଚ୍ଛା ପ୍ରକାଶ କରି ବାପାଙ୍କୁ କହିଲି । ସେ ମନା କରି କହିଲେ ଡେପୁଟି ହୁଅ । ସେ ତ ପୁରୁଣାକାଳିଆ ପାରସୀ ପଢ଼ା ଓକିଲ, ଇଂରାଜୀ ଜାଣି ନ ଥିଲେ । ସେ ମନା କଲେ କିନ୍ତୁ ତାଙ୍କ ମନା ନ ମାନି ଚାଲିଚାଲି ବାଲେଶ୍ୱର ଗଲି । ସେଠାରେ ବାଲେଶ୍ୱର ଜିଲ୍ଲା ସ୍କୁଲ୍‌ରେ ମାଷ୍ଟର ହେଲି । ସେଠା ହେଡ୍ ପଣ୍ଡିତ କାନ୍ତିଚନ୍ଦ୍ର ବନ୍ଦୋପାଧ୍ୟାୟ [ଭଟ୍ଟାଚାର୍ଯ୍ୟ] ଓଡ଼ିଆ ବିଦ୍ୱେଷୀ ଥିଲେ । ସେ କହୁଥିଲେ ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ; ଏହା ଏକ ବଙ୍ଗଳାର ଉପଭାଷା । ସେତେବେଳେ ୧୮୬୬ ସାଲରେ ଓଡ଼ିଶାରେ ଘୋର ନଅଙ୍କ ପଡ଼ିଥିଲା । କଟକରେ ଗୌରୀଶଙ୍କର ରାୟ ମାଷ୍ଟର ଚାକିରି ଛାଡ଼ି "ଉତ୍କଳ ଦୀପିକା" ଖବରକାଗଜ ଚଳାଉଥିଲେ । ସେ, ବିଚିତ୍ରାନନ୍ଦ ଦାସ ଓ ବିଚ୍ଛନ୍ଦ ପଟ୍ଟନାୟକ ମିଶି ଓଡ଼ିଆ ସପକ୍ଷ ଆନ୍ଦୋଳନ ଚଳାଇଥିଲେ । ବାଲେଶ୍ୱରରେ ଫକୀରମୋହନ ସେନାପତି ଭର୍ଣ୍ଣାକୁଲର ପଢ଼ି ଗୋଟିଏ ପ୍ରାଇମେରୀ ସ୍କୁଲ୍ ଶିକ୍ଷକ ଥିଲେ । ସେ ଓଡ଼ିଆ ଭାଷାପ୍ରେମୀ ଥାଇ ବାଲେଶ୍ୱରରେ ଏକ ଆନ୍ଦୋଳନ ଚଳାଇଲେ । ସେ ମୋଠାରୁ ବୟସରେ ପାଞ୍ଚବର୍ଷ ବଡ଼ ଥିଲେ ଓ ମୁଁ ତାଙ୍କ ସଙ୍ଗେ ଯୋଗଦେବାରୁ କାନ୍ତିଚନ୍ଦ୍ର ମୋ ଉପରେ ବିରକ୍ତ ହେଲେ । ତା'ପରେ ମୁଁ ସବ୍‌ରେଜେଷ୍ଟ୍ରି ଅଫିସ୍‌ରେ ଚାକିରି କଲି । କାନ୍ତିଚନ୍ଦ୍ରଙ୍କ ବନ୍ଧୁ ସେଠି ହେଡ୍ କିରାନି ଥାଇ ମୋତେ ବଦନାମରେ ପକାଇବାକୁ ଚେଷ୍ଟା କଲେ । ମୁଁ ତାଙ୍କ ଦୌରାତ୍ମ୍ୟ ଓ ଷଡ଼ଯନ୍ତ୍ର ସହି ନପାରି ମୁକୁନ୍ଦବଲ୍ଲଭ ମିତ୍ରଙ୍କ ପରାମର୍ଶରେ ଚାକିରି ଛାଡ଼ି କଲିକତା ଗଲି । କଲେଜିଏଟ୍ ସ୍କୁଲ୍‌ରେ ମୁଁ ପଢୁଥିଲାବେଳେ ଆମେ ଓଡ଼ିଆ ଛାତ୍ରମାନେ କଥାବାର୍ତ୍ତା

ହେଉଁ କିପରି ବଙ୍ଗଳା ଠାରୁ ଓଡ଼ିଶା ଅଲଗା ପ୍ରଦେଶ ହୁଅନ୍ତା ଓ ସବୁ ଓଡ଼ିଆ ଅଞ୍ଚଳ ଏକାଠି ମିଶନ୍ତା । ଆଜି ଯେ 'ଉତ୍କଳ ସମ୍ମିଳନୀ' ଗଢ଼ା ହେଲା ତାର ମୂଳଦୁଆ ପଡ଼ିଥିଲା କଲେଜିଏଟ୍ ସ୍କୁଲ୍‌ରେ । ଡିଉକ ଅଫ୍ ଉଇଲିଙ୍ଗଟନ ଯାହାଙ୍କ ଭାଇ ଲର୍ଡ୍ ଉଇଲିୟମ ଓଏଲସଲି ଭାରତର ବଡ଼ଲାଟ ଥିଲେ, ସେ କହିଥିଲେ ୱାଟର୍ଲୁ ଯୁଦ୍ଧ ଇଟନରେ ଶୁଭ ଦିଆଯାଇଥିଲା । ତାର ଅର୍ଥ ସେ ପିଲାଦିନେ ଇଟନ ସ୍କୁଲ୍‌ରେ ପଢ଼ିବାବେଳେ ଇଂଲଣ୍ଡର ଭବିଷ୍ୟତ ଓ ଫ୍ରାନ୍ସକୁ ଦମନ କରିବା ସେଠି ଭାବିଥିଲେ ଓ ସେହି ପୁଣି ସମ୍ରାଟ ନେପୋଲିୟନଙ୍କୁ ୱାଟର୍ଲୁ ଯୁଦ୍ଧରେ ପରାଜୟ କଲେ । ସେହିପରି ମୁଁ କହେ ଆମେ କେତେଜଣ ଛାତ୍ର 'ଉତ୍କଳ ସମ୍ମିଳନୀ'ର ମଞ୍ଜି ଏହି ସ୍କୁଲ୍‌ରେ ପୋତିଥିଲୁଁ ।

ହେ ଛାତ୍ରଗଣ ! ଏହି ଐତିହାସିକ କଥାଟିକୁ ସ୍ମରଣ କରି ଏ ସ୍କୁଲ୍‌ର ଛାତ୍ର ବୋଲି ଗର୍ବ ପ୍ରକାଶ କର ।

***

## (୧୪)

## 'ଆଲୋଚନା ସଭା'ର ପଞ୍ଚମ ବାର୍ଷିକ ଅଧିବେଶନରେ ପ୍ରଦତ୍ତ ଅଭିଭାଷଣ

ଭାଇମାନେ, ଆଉ ପିଲାମାନେ,

ମୁଁ ଦେଖୁଛି ଅନେକ କ୍ଷୁଦ୍ରବାଳକ ଏଠାରେ ଉପସ୍ଥିତ । ମୁଁ ବୁଝିଛି ଯେ ପ୍ରଥମ ଚାରିଶ୍ରେଣୀର ଛାତ୍ରମାନେ ଏ ସଭାର ସଭ୍ୟ । ଆଜି ଅନୁଗ୍ରହ କରି ଅନେକ ମାନ୍ୟଗଣ୍ୟ ବ୍ୟକ୍ତି ଏଠାରେ ଉପସ୍ଥିତ ହୋଇଅଛନ୍ତି ଏବଂ ବିଶେଷ ଅନୁଗ୍ରହ କରି ମଧ କହିଅଛନ୍ତି ।

ମୁଁ ଆସନରେ ବସିଲାବେଳେ ସଂଗୀତରୁ ସମିତିର ନାମ 'ଓଡ଼ିଆ ଆଲୋଚନାସଭା' ଦେଖି ଭୟ ହେଲା । ଭାଷାର ଆଲୋଚନାରେ ମୋହର ଅଧିକାର ନାହିଁ । ମୁଁ ପିଲାଦିନରୁ ଭାଷାଶିକ୍ଷାର ମର୍ମ ଏହା ବୁଝିଛି ଓ ବୁଝୁଛି ''ଭାଷାଶିକ୍ଷାର ଉଦ୍ଦେଶ୍ୟ ହେଉଛି ମନର ଚିନ୍ତାକୁ ଚିତ୍ରପଟରେ ଆଙ୍କିବା'', ଯାହାଙ୍କ ସଙ୍ଗେ କଥା କହୁଛି ସେମାନଙ୍କ ମନ ଚିତ୍ରପଟ ଏବଂ ଭାଷା ତୂଳିସ୍ୱରୂପ । ମୋହ ମନରେ ଯେଉଁ ଛବି ଅଛି, ସେ ଛବିକୁ ଅନ୍ୟ ମନରେ ଯେଉଁ ତୂଳିଦ୍ୱାର ଆଙ୍କିପାରେଁ ତାହାର ନାମ ଭାଷା । ଇଂରାଜୀଭାଷାର ଏକ ସମୟ ଥିଲା, ଯେଉଁ ସମୟରେ ଲୋକମାନେ ଭାବୁଥିଲେ, ଯେ ବଡ଼ ବଡ଼ କଥାରେ ବକ୍ତୃତା କରେ ସେହି ଯଥେଷ୍ଟ ଭାଷା ଆଲୋଚନା କରିଛି । ଏକଥା ଠିକ୍ କି ନା ତାହା କହିବାର ମୋର ଅଧିକାର ନାହିଁ । ମୁଁ ଭାଷା ଆଲୋଚନାର ଅର୍ଥ ଏହି ବୁଝେଁ ଯେ, ଏପ୍ରକାର ଭାଷା କହିବାକୁ ହେବ ଯାହାକୁ ପାଞ୍ଚବର୍ଷର ଶିଶୁ ବୁଝିପାରିବ । ଜଣେ ଶିକ୍ଷକ ବକ୍ତୃତା

କରୁଛି, ଛାତ୍ରମାନେ ଶୁଣୁଛନ୍ତି । ଯଦି ଏପରି କୌଣସି ଯନ୍ତ୍ର ଥାନ୍ତା, ଯଦ୍ୱାରା ଉଭୟଙ୍କ ମନର ଫଟୋଗ୍ରାଫ୍ ଉଠାଯାନ୍ତା, ତାହାହେଲେ ଶିକ୍ଷକର ମନ ଓ ଛାତ୍ରମାନଙ୍କ ମନର ଚିତ୍ର ଠିକ୍ ଗୋଟିଏ ଶିବ ଏବଂ ବାନ୍ଦର ହୁଅନ୍ତା । ଅନେକ ଦେଶହିତୈଷୀ ବକ୍ତୃତା କଲାବେଳେ ଘନ ଘନ କରତାଳି ଉଠୁଥାଏ, ମାତ୍ର ଫଳରେ କିଛି ହୁଏ ନାହିଁ । ତାହାର କାରଣ କଣ ? କେହି କାହାରିକି ତାହାର ମନର ଛବି ଆଜିପର୍ଯ୍ୟନ୍ତ ଦେଇ ନାହିଁ । ତାହା ଯଦି ଦେଇପାରୁଥାନ୍ତା ତାହାହେଲେ ନିଶ୍ଚୟ ଉନ୍ନତି ହୁଅନ୍ତା । ତେବେ ହାତତାଳି କାହିଁକି ଉଠେ ? କାରଣ ମୁଁ ଯେବେ ଶିବ ଭାବିଲି, ତାହା ଅନ୍ୟ ମନରେ ବାନ୍ଦର ଉଠିଲା । ଶିଶୁ କିଛି ନ କହି ପାରିଲେ ମଧ ସେ ଚିନ୍ତା କରେ । ଆଉ ସେ ମା ସଙ୍ଗେ ମଧ ଇଙ୍ଗିତଦ୍ୱାରା କଥା କହେ । କ୍ରମେ କ୍ରମେ ଭାଷାର ବ୍ୟବହାର ହୁଏ । ଯଦି ଏ ସଭାର ଉଦ୍ଦେଶ୍ୟ ପରସ୍ପର ମନର ଭାବ ପ୍ରକାଶ ହୁଏ, ତେବେ ତାହା ବଡ଼ ଭଲ କାର୍ଯ୍ୟ । କିନ୍ତୁ ପିଲାମାନଙ୍କୁ ମୁଁ ବିଶେଷ ଅନୁରୋଧ କରେଁ ମନର ଭାବ ପ୍ରକାଶ କରିବାକୁ ଚେଷ୍ଟା କର, ଭାଷା ପ୍ରତି ସେତେ ଦୃଷ୍ଟି ଦେବ ନାହିଁ । ଭାଷା କେବଳ ଭାବର ପୋଷାକସ୍ୱରୂପ । ଯାହାକୁ କେହି ଚିହ୍ନନ୍ତି ନାହିଁ ସେ ଜରି ଟୋପି ମୁଣ୍ଡରେ ଦିଏ । ଯାହାକୁ ସମସ୍ତେ ଚିହ୍ନନ୍ତି ତାହାର ବହୁମୂଲ୍ୟ ପୋଷାକରେ ମନ ନ ଥାଏ । ହୁଏତ ତାହା ସହିତ କଥାଭାଷା ହେବାର ଦୁଇଘଣ୍ଟା ପରେ ଯଦି ପଚାର ସେ କି ପୋଷାକ ପିନ୍ଧିଥିଲେ, ତାହା କହିପାରିବ ନାହିଁ । ଅତଏବ ଯାହାର ବହୁମୂଲ୍ୟ ଉଚ୍ଚ ଚିନ୍ତା ଅଛି, ତାହାର ଭାଷା ଅନାବଶ୍ୟକ । ମନୁଷ୍ୟର ଯଦି ଉଚ୍ଚଦରର ଚିନ୍ତା ଥାଏ, ତେବେ ସେ ଚିନ୍ତାରେ ସମସ୍ତେ ମୋହିତ ହୁଅନ୍ତି । ଭାଷା ବ୍ୟବହାର କେତେବେଳେ କେହି ଦେଖେ ନାହିଁ । *ମନ କଦାପି ଭାଷା ଜାଣିବାକୁ ଚାହେଁ ନାହିଁ । ମୃତ୍ୟୁଶଯ୍ୟାରେ ଚିନ୍ତା ଥିବ, କିନ୍ତୁ ଭାଷା ନ ଥିବ । ମୂକ ହେଲେ ମଧ ଇଙ୍ଗିତ ଦ୍ୱାରା ଭାବ ପ୍ରକାଶ କରିପାରିବ । ମନର ଚିନ୍ତା ଭଲ ଥିଲେ କେହି ଭାଷା ଦେଖିବ ନାହିଁ । ଅତଏବ ତୁମ୍ଭେମାନେ ଅଳ୍ପବୟସରୁ ମନକୁ ମଜଭୁତ କରି ଶିଖ । ଶରୀର ମଜଭୁତ ହେବା ସଙ୍ଗେ ସଙ୍ଗେ ମନ ମଜଭୁତ ହେଲେ ପୋଷାକ ଭାଷା ଆପେ ଆସିବ । ସାନପିଲା ଯେ କୌଣସିମତେ ଆପଣାର ଭାବ ମାଆକୁ ଜଣାଏ । ତୁମ୍ଭେମାନେ ଏହି ଆଦର୍ଶକୁ ସର୍ବଦା ମନେ ରଖିବ ।

ଆଜି ରେଭେନ୍ସା ସାହେବଙ୍କ ସମ୍ବନ୍ଧରେ ଏ ସଭାରେ କିଛି କହିବାକୁ ହେବ । ୧୮୯୭ ମସିହାରେ ବିଲାତରେ ତାଙ୍କ ସହିତ ମୋହର ପ୍ରଥମ ସାକ୍ଷାତ ହୁଏ । ତେତେବେଳେ ମୁଁ

---

* ଥରେ ମୋହର ଜଣେ ଗଣ୍ୟମାନ୍ୟ ବିଦ୍ୱାନ ବ୍ୟକ୍ତିଙ୍କ ସହିତ ଏ ବିଷୟରେ ତର୍କ ହୋଇଥିଲା । ମୁଁ ବକ୍ତୃତା ପୂର୍ବରୁ ସମସ୍ତଙ୍କୁ ଜଣାଇଦେଲି ଯେ ଆଜି ମୁଁ ଅଶୁଦ୍ଧ ଭାଷାରେ କହିବି; କିଏ ଧରିବେ ଧରନ୍ତୁ । ମୁଁ ସେଦିନ ବକ୍ତୃତା ମଧରେ He am ଏବଂ I is ପର୍ଯ୍ୟନ୍ତ କହି ଚାଲିଗଲି, ଅଥଚ କେହି ଧରିପାରି ନାହାନ୍ତି । ବକ୍ତୃତା ଶେଷରେ କାହାରିଠାରୁ ଏ ଭାଷାଭ୍ରମ ଶୁଣିପାରିଲି ନାହିଁ ।

ବଙ୍ଗଳା ବ୍ୟବସ୍ଥାପକ ସଭାର ସଭ୍ୟ ଥିଲି । ତାଙ୍କର ଗୋଟିଏ କଥା ମୁଁ ଏଠାରେ କହିବି, ଯାହା ଉତ୍କଳଦୀପିକା ପ୍ରଭୃତି ସମ୍ବାଦପତ୍ରରେ କେବେ ପ୍ରକାଶ କରି ନାହିଁ । ତାହା ଏହି — କିଛିକ୍ଷଣ ଆଳାପରୁ ମୋହର ପରିଚୟ ପାଇବା ପରେ ଦେଖିଲି ସାହେବଙ୍କର ଚକ୍ଷୁ ଲୋତକପୂର୍ଣ୍ଣ, କ୍ଷଣକ ପରେ ସେ ଗଦ୍‌ଗଦ ସ୍ୱରରେ କହିଲେ - ''ମଧୁବାବୁ, ମୁଁ ଓଡ଼ିଶାରେ ବହୁତ ଦିନ ରହିଲି, ତୁମ୍ଭପରି ଜଣେ ଶିକ୍ଷିତ ଯୋଗ୍ୟ ଓଡ଼ିଆ ଦେଖିବା ପାଇଁ ମୁଁ କେତେ ଅପେକ୍ଷା କରିଥିଲି, କିନ୍ତୁ ଦେଖିପାରି ନ ଥିଲି, ଆଜି ତୁମ୍ଭଙ୍କୁ (*Honourable*) ଦେଖି ମୋହ ମନରେ ଯଥେଷ୍ଟ ଆନନ୍ଦ ହୋଇଅଛି ।'' ଏ ଦୃଷ୍ଟାନ୍ତରୁ ଆମ୍ଭେମାନେ କଣ ଦେଖୁଛୁଁ ? ''ପ୍ରକୃତରେ ଗୋଟିଏ ଜାତିର ଉନ୍ନତି ହେବ ମୁଁ ଦେଖିବି'', ଏହି ତାଙ୍କର ଆନ୍ତରିକ ଇଚ୍ଛା ଥିଲା । ମଧୁବାବୁଙ୍କ ପାଇଁ ତାଙ୍କର ଆହ୍ଲାଦ ନୁହେଁ — ଓଡ଼ିଆ ଜଣେ ବୋଲି ତାଙ୍କର ଆହ୍ଲାଦ । ଜାତୀୟ ଉନ୍ନତି ଦେଖି ଏ ଆହ୍ଲାଦ । ସେ ଯେ କେବଳ ଓଡ଼ିଆଙ୍କୁ ଭଲ ପାଉଥିଲେ, ଅନ୍ୟ ଜାତିକୁ ଘୃଣା କରୁଥିଲେ, ତାହା ନୁହେଁ । ସେ ଏହି ଓଡ଼ିଶାର କମିଶନର ଥିବାରୁ ଓଡ଼ିଶାର ଉନ୍ନତିକୁ କର୍ତ୍ତବ୍ୟ ମନେ କରିଥିଲେ । ମନୁଷ୍ୟ ଜାତିର ଉନ୍ନତି କାମନା କର, କିନ୍ତୁ ତୁମ୍ଭ ଉପରେ ଯେଉଁ କର୍ତ୍ତବ୍ୟ ଅଛି, ସେହି କର୍ତ୍ତବ୍ୟ ପ୍ରଥମେ କର । ମନୁଷ୍ୟର ଆତ୍ମା ଯେତେବେଳେ ସ୍ୱର୍ଗରୁ ଆସେ, ସେତେବେଳେ ଜଳବିନ୍ଦୁ ପରି ନିର୍ମଳ ଥାଏ, ତେତେବେଳେ ଅବଶ୍ୟ ଓଡ଼ିଆ, ବଙ୍ଗାଳୀ କି ଇଂରାଜ ନ ଥାଏ । ବର୍ଷାପାଣିର ପ୍ରଥମେ କୌଣସି ରଙ୍ଗ ନଥାଏ । ମାଟିରେ ପଡ଼ିଲେ ସେ ପରେ ମାଟିର ରଙ୍ଗ ନିଏ । ସେ ପାଣି ସମୁଦ୍ରରେ ମିଶିଲାବେଳେ ପୁଣି ଏକ ରଙ୍ଗ ହୁଏ । ସେହି ନଦୀ ପ୍ରବାହିତ ହେଲାବେଳେ ବୃକ୍ଷଲତାଙ୍କୁ ଜୀବନ ଦେବା ତାହାର କାର୍ଯ୍ୟ ହୁଏ । କିନ୍ତୁ ସମୁଦ୍ର ସଙ୍ଗେ ମିଶିବା ତାହାର ମୁଖ୍ୟ ଉଦ୍ଦେଶ୍ୟ ଥାଏ । ମନୁଷ୍ୟ ସେହିପରି ଭୂମିଷ୍ଠ ହୋଇ ସ୍ୱ ଜୀବନ କାଳ ମଧରେ ଏହିପରି କାର୍ଯ୍ୟ କରି ଯାଏ । ଯେ ଯେଉଁଠାରେ ଜନ୍ମିବ, ସେ ସ୍ଥାନର ମଙ୍ଗଳକାମନା କରିବା ତାହାର ବିଧେୟ ଏବଂ ଏହା ଈଶ୍ୱରଙ୍କର ଅଭିପ୍ରେତ । ପ୍ରତ୍ୟେକ ଲୋକର ଏହା ଭାବିବା ଉଚିତ ଯେ 'ମୋତେ ଯେତେବେଳେ ଈଶ୍ୱର ଏହିଠାରେ ଜନ୍ମ ଦେଇଛନ୍ତି, ତେତେବେଳେ ମୁଁ ଏହିଠାର ଉନ୍ନତି କାମନା ବିଶେଷ ଭାବରେ କରିବି, ତାହା ନ କଲେ ମୁଁ ଈଶ୍ୱରଙ୍କଠାରେ ଦ୍ରୋହୀ ହେବି' । ରେଭେନ୍ସା ସାହେବ ଓଡ଼ିଶାରେ ରହି ତାକୁ ଏହିଭାବରେ ଦେଖୁଥିଲେ । ଏହା ବୋଲି ଯେ ରେଭେନ୍ସା ସାହେବ ଅନ୍ୟ ଜାତିର ମଙ୍ଗଳ ଇଚ୍ଛା କରୁ ନ ଥିଲେ, ଏକଥା କହିଲେ ତାଙ୍କ ପ୍ରତି ଅବିଚାର ହେବ । ରେଭେନ୍ସା ସାହେବଙ୍କ ନାମରେ କୃତଜ୍ଞତା ପ୍ରକାଶ କରିଥିବାରୁ ଆଜି ମୁଁ ପିଲାମାନଙ୍କୁ କୃତଜ୍ଞତା ଜଣାଉଅଛି । ସାହେବ ଯେଉଁ ଶୁଖିଲା ଟାକୁଆ ପୋତିଥିଲେ, ଏ ଗଛକୁ ସେତେବେଳେ ସେ ଦେଖିଥିଲେ କି ? ତେତେବେଳେ ସେ ସମସ୍ତଙ୍କଦ୍ୱାରା ଅପଦସ୍ଥ ହୋଇଥିଲେ । କିଏ କେତେ ତାଙ୍କ କାର୍ଯ୍ୟର ଉପହାସ କରିଥିଲା । ଏଥିରୁ

ଆମ୍ଭେମାନେ ବର୍ତ୍ତମାନ କି ଶିକ୍ଷା ପାଉଥାଉଁ ? ସ୍ୱାର୍ଥକୁ ବଳି ଦେଇ ଯାହା କର୍ତ୍ତବ୍ୟ ମନେକର, କରି ଚାଲିଯାଅ । ସେ ଭବିଷ୍ୟତ ତୁମ୍ଭଙ୍କୁ ଯେପରି ଦିଶେ ଅନ୍ୟକୁ ସେପରି ଦିଶେ ନାହିଁ, ଅତଏବ ତାହା ବିରୁଦ୍ଧରେ ଯେତେ ଯାହା ଉଠୁ – ସମୁଦ୍ର ଗର୍ଜନ ହେଉ, ଅଥବା ମହାତୋଫାନ ହେଉ – ସେଥିପ୍ରତି ଦୃଷ୍ଟି ନ ଦେଇ ତୁମ୍ଭର କର୍ତ୍ତବ୍ୟ କର୍ମ କରିଯାଅ । ଭବିଷ୍ୟତରେ ତାହା ଇତିହାସରେ ରହିବ । ରେଭେନ୍ସା ସାହେବଙ୍କର ନାମ କ'ଣ ରହିବ ନାହିଁ ? ଅବଶ୍ୟ ରହିବ, କିନ୍ତୁ ସେ ନାମ ରଖିବାକୁ ଆଦୌ ଚେଷ୍ଟା କରି ନାହାନ୍ତି । ଯାହାଙ୍କର ନାମ ରଖିବାର ଆଶା, ତାଙ୍କଠାରୁ ବଳି ମୂର୍ଖ ଏ ଜଗତରେ ନାହିଁ । ନାମ ରଖିବାକୁ କଦାପି ଚେଷ୍ଟାକର ନାହିଁ - କାର୍ଯ୍ୟ ରଖିଯାଅ । ଗୋଟାଏ ଜାତିକୁ ରେଭେନ୍ସା ସାହେବ ରଖିଯାଇ ଅଛନ୍ତି । ଯେଉଁ ଜାତି ଇଂରାଜୀ ପଢ଼ିବାକୁ ଯାଉ ନ ଥିଲେ ସେମାନଙ୍କୁ ବର୍ତ୍ତମାନେ ସେ ଗୋଟାଏ ସ୍ରୋତରେ ପକାଇ ଦେଇଅଛନ୍ତି । ବିଶ୍ୱସ୍ରଷ୍ଟାଙ୍କର କାର୍ଯ୍ୟ କିଏ ଜାଣିପାରେ ? ସେ କୋଟି କୋଟି ଜୀବନ ଗଠନ କରୁଅଛନ୍ତି । ଯେ ନାମ ରଖୁଅଛି ସେ ପ୍ରକୃତ ଲୋକ ନୁହେଁ – ଯେ ଜାତିର ଉନ୍ନତି କରେ ସେ ପ୍ରକୃତ କାର୍ଯ୍ୟ କରେ । ସେହି ବାସ୍ତବରେ ମନୁଷ୍ୟ ଜୀବନରେ ସାର୍ଥକତା ଲାଭ କରେ । ରେଭେନ୍ସା ସାହେବ ତାହାହିଁ କରିଥିଲେ । କାର୍ଯ୍ୟକ୍ଷେତ୍ରରେ ପଡ଼ି କିଛି ଆଶା କରନାହିଁ । କେବଳ କର୍ତ୍ତବ୍ୟ କର୍ମ କର । ଅନ୍ୟଆଡ଼କୁ ଚାହିଁବା ଉଚିତ ନୁହେଁ । ଯୁବକମାନେ ବର୍ତ୍ତମାନ ଜୀବନର ଉଦ୍ଦେଶ୍ୟ ଜାଣିବାକୁ ଚେଷ୍ଟା କର । ପ୍ରତ୍ୟେକଙ୍କର କର୍ତ୍ତବ୍ୟ କଣ ? ପ୍ରତ୍ୟେକଙ୍କୁ ସୃଷ୍ଟି କରିବାରେ ତାଙ୍କର ବିଶିଷ୍ଟ ଉଦ୍ଦେଶ୍ୟ ଅଛି । ସେହି କର୍ତ୍ତବ୍ୟ ପଥରେ ଚାଲ – ଜଗତ ଯାହା କହୁ । ମୃତ୍ୟୁଶଯ୍ୟାରେ ସଂସାର ସହିତ କୌଣସି ସମ୍ବନ୍ଧ ରହିବ ନାହିଁ, କେବଳ ନିଜ ଆତ୍ମା ସହିତ ସମ୍ବନ୍ଧ ରହିବ । ତେତେବେଳେ ବିବେକ ପ୍ରତ୍ୟେକଙ୍କୁ ପଚାରିବ ନିଜ ନିଜ କର୍ତ୍ତବ୍ୟ କରିଅଛ କି ନାହିଁ ?

ବର୍ତ୍ତମାନ ମୋହର ବକ୍ତବ୍ୟ ଏହିଠାରେ ଶେଷ କରି ପ୍ରତିମୂର୍ତ୍ତିର ଆବରଣ ଉଠାଇବି । ପୂର୍ବରୁ ପିଲାମାନେ, ତୁମ୍ଭଙ୍କୁ ଏତିକି କହୁଅଛି ଯେ ତୁମ୍ଭେମାନେ ଗଙ୍ଗାଙ୍କ କଥା ଶୁଣିଥିବ । ଯେଉଁ ଗଙ୍ଗା କେତେ ଦୂର ଦେଶର ଭୂମିକୁ ଶସ୍ୟଶ୍ୟାମଳ କରିଅଛି, ଯାହା ଦେହରୁ କେତେ କେତେ ନଦୀ ଜଳସ୍ରୋତ ଘେନି ବହିଯାଇଅଛି, ଯାହାର ଗର୍ଭରେ କେତେ ଜାହାଜ ନୌକାମାନ ଅନବରତ ପୂର୍ଣ୍ଣ ରହିଅଛି, ସେହି ଗଙ୍ଗା ପୁଣି ମହାଦେବଙ୍କ ଜଟା ଭିତରୁ ବାହାରି ଥିଲେ । ସେହିପରି ଯେଉଁ ରେଭେନ୍ସା ସାହେବଙ୍କର ଏତେ ପ୍ରଶଂସା ସବୁ ଶୁଣିଗଲ, ଏହି ଉପର ଲୁଗାଖଣ୍ଡି କାଢ଼ିଦେଲେ ତାହାଙ୍କୁ ଏହିକ୍ଷଣି ଦେଖିପାରିବ । ଏହି ମୂର୍ତ୍ତିଟି ପୁଣି ତାଙ୍କର ପ୍ରତିଷ୍ଠିତ ସ୍କୁଲ୍‌ର ଜଣେ ଛାତ୍ରଦ୍ୱାରା ଅଙ୍କିତ, ଏହା ଅଧିକ ଆନନ୍ଦର ବିଷୟ । ଏଣୁ ଆମ୍ଭେମାନେ ସମସ୍ତେ ତାଙ୍କଠାରେ କୃତଜ୍ଞ ହେଉଅଛୁଁ ।

***

## (୧୫)
## କବି ମଧୁସୂଦନ ସ୍ମୃତିସଭା

.... ସେହି [ଏହି] ବିଦ୍ୟାଳୟର ପ୍ରତିଷ୍ଠାତା ମଧୁସୂଦନ ରାଓ ମହୋଦୟ ଜଣେ ମହାନୁଭବ ବ୍ୟକ୍ତି ଥିଲେ ଏବଂ ତାଙ୍କର ଶରୀର କ୍ଷୀଣ ଓ ରୁଗ୍ଣ ଥିଲେ ହେଁ ଆତ୍ମା ତେଜରେ ଜଳୁଥିଲା । ଗବର୍ଣ୍ଣମେଣ୍ଟଙ୍କ ଠାରୁ ସାହାଯ୍ୟ ନ ନେଇ ସେ ଅକ୍ଳାନ୍ତ ପରିଶ୍ରମପୂର୍ବକ ଏହି ବିଦ୍ୟାଳୟ ସ୍ଥାପନ କରି ଶିକ୍ଷାଦାନ କରିବା ଯେ ଲୋକଙ୍କ କର୍ତ୍ତବ୍ୟକର୍ମ ତହିଁର ଉଦାହରଣ ଦେଖାଇ ଯାଇଅଛନ୍ତି ଏବଂ ଜଣେ ସରକାରୀ ଶିକ୍ଷାବିଭାଗୀୟ ଇନସ୍ପେକ୍ଟର ସରକାରରୁ ସାହାଯ୍ୟ ନ ନେଇ ଉଚ୍ଚ ବିଦ୍ୟାଳୟ କରାଇବା ବଡ଼ ପ୍ରଶଂସନୀୟ ।

***

## (୧୬)
## 'ଆଲୋଚନା ସଭା'ର ସପ୍ତମ ବାର୍ଷିକ ଅଧିବେଶନରେ ପ୍ରଦତ୍ତ ସଭାପତି ଅଭିଭାଷଣ

ମୋତେ ସଭାପତି ହେବା ନିମିତ୍ତ ତୁମ୍ଭେମାନେ ଅନୁରୋଧ କରିଥିବାରୁ ମୁଁ ତୁମ୍ଭମାନଙ୍କୁ ଧନ୍ୟବାଦ ଦେଉଛି । ପ୍ରଥମେ ମୁଁ ଭାବିଲି ମୋର ଏହି ସାହିତ୍ୟ-ସଭାରେ ସଭାପତି ହେବା ନିମିତ୍ତ କି ଅଧିକାର ବା ଯୋଗ୍ୟତା ଅଛି ? ସାହିତ୍ୟିକ ଯୋଗ୍ୟତା ନ ଥାଉ ପଛକେ ମୋର ଅନ୍ୟ କିଛି ଅଧିକାର ଅଛି ବୋଲି ଭାବି ଏ ପଦ ଗ୍ରହଣ କଲି । ହେଡ଼ମାଷ୍ଟର ବାବୁ ନାରାୟଣ ପ୍ରସାଦ ମହାନ୍ତି ଜଣେ ବିଶିଷ୍ଟ ଶିକ୍ଷାବିତ୍, ବାବୁ ଜଗନ୍ନାଥ ତ୍ରିପାଠୀ ଜଣେ ବିଶିଷ୍ଟ ସାହିତ୍ୟିକ ଓ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ବାଣୀଭୂଷଣ ଯେପରି ପଣ୍ଡିତ ଓ ଉତ୍ସାହୀ ଶିକ୍ଷକ ସେହିପରି ପ୍ରବୀଣ ପ୍ରତ୍ନତତ୍ତ୍ୱବିତ୍ । ବର୍ତ୍ତମାନ ଏହିମାନେ ହେଉଛନ୍ତି ଏ ଅନୁଷ୍ଠାନର ଓଡ଼ିଆ ଶିକ୍ଷକ । ମୋର ମନେ ହେଉଛି ୧୮୬୦ରୁ ୧୮୬୪ ମସିହା ମଧ୍ୟରେ ଯେତେବେଳେ ଏ ସ୍କୁଲ୍‌ର ନାମ କଟକ ଗଭର୍ଣ୍ଣମେଣ୍ଟ ହାଇସ୍କୁଲ୍ ଥିଲା ସେତେବେଳେ ମୁଁ ଏ ବିଦ୍ୟାଳୟରେ ଅଧ୍ୟୟନ କରୁଥିଲି । କେହି ଓଡ଼ିଆ ଶିକ୍ଷକ ସେତେବେଳେ ଏ ବିଦ୍ୟାଳୟରେ ନ ଥିଲେ କିମ୍ବା ଓଡ଼ିଆ ଭାଷାରେ ଶିକ୍ଷା ଦିଆ ହେଉ ନ ଥିଲା କି ଓଡ଼ିଆ ସାହିତ୍ୟ କୌଣସି ପାଠ୍ୟ ନ ଥିଲା । ଏ ସ୍କୁଲ୍‌ର ପୁରୁଣା ଛାତ୍ରଙ୍କ ମଧ୍ୟରେ ମୁଁ ସର୍ବଜ୍ୟେଷ୍ଠ ଓ ଏହିଠାରୁ ୧୮୬୪ରେ ସେକାଳର ଏଣ୍ଟ୍ରାନ୍ସ ପାସ କରି ଉଚ୍ଚ ଶିକ୍ଷା ପାଇଁ କଲିକତା ଯାଇ ସେଠାରେ ସର୍ବପ୍ରଥମ ଓଡ଼ିଆ ବି.ଏ., ଏମ୍.ଏ. ଓ ବି.ଏଲ୍. ହୋଇଅଛି । ଏଣୁ ମୋର ଏ ସ୍କୁଲ୍‌ରେ ବାଲ୍ୟ ଶିକ୍ଷା ହୋଇଥିବା ହେତୁ ମୁଁ ସଭାପତି ପଦ ପାଇଁ ବଛା ଯାଇଅଛି । ଏ ସାହିତ୍ୟସଭାରେ ମୋଠାରୁ ସାହିତ୍ୟ ସମ୍ବନ୍ଧରେ

କଣ ଶୁଣିବ ? ମୁଁ ସାହିତ୍ୟିକ ନୁହେଁ । ମୋର ଅଲଗା ବ୍ୟବସାୟ । ଓକିଲାତି, ରାଜନୀତି ଓ ଅର୍ଥନୈତିକ ପ୍ରଗତି ସାଧନରେ ମୁଁ ମୋର ଜୀବର୍ନ ଅତିବାହିତ କରିଛି । ତଥାପି ମୋର ଅନୁଭୂତିଗୁଡ଼ିକ ତୁମ୍ଭମାନଙ୍କ ଆଗରେ କହିବି ।

ମୁଁ ଯେତେବେଳେ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୁଏ ସେତେବେଳେ କେତେକ ବଙ୍ଗୀୟ ଭଦ୍ରବ୍ୟକ୍ତି ଓଡ଼ିଆ ଭାଷାର ସତ୍ତା ଲୋପ କରିବାକୁ ଚେଷ୍ଟା କରିଥିଲେ । ମୁଁ ଛାତ୍ରାବସ୍ଥାରେ ଏ ଅବସ୍ଥା ଦେଖି ବିକ୍ଷୁବ୍ଧ ହୋଇଥିଲି । ମୁଁ ଏଣ୍ଟ୍ରାନ୍ସ ପାସ କଲା ପରେ କେତେ ମାସ ପାଇଁ ବାଲେଶ୍ୱର ଜିଲ୍ଲା ସ୍କୁଲ୍‌ରେ ଶିକ୍ଷକତା କଲି । ସେଠାକାର ହେଡ଼ପଣ୍ଡିତ ବାବୁ କାନ୍ତିଚନ୍ଦ୍ର ବନ୍ଦୋପାଧ୍ୟ[ଭଟ୍ଟାଚାର୍ଯ୍ୟ] ଓଡ଼ିଆ ଭାଷା ଦୂରୀକରଣ ଏବଂ ବଙ୍ଗଭାଷା ପ୍ରଚଳନ ପାଇଁ ଏକ ଆନ୍ଦୋଳନର ସୂତ୍ରପାତ କଲେ । କଲିକତାର ବିଶିଷ୍ଟ ଐତିହାସିକ ରାଜେନ୍ଦ୍ରଲାଲ ମିତ୍ର ଏ ଆନ୍ଦୋଳନର ପୃଷ୍ଠପୋଷକ ଥିଲେ । ସେ କାଳରେ ତ ମୁଷ୍ଟିମେୟ ଓଡ଼ିଆ ଯୁବକ ଏଣ୍ଟ୍ରାନ୍ସ ପାସ୍ କରିଥିଲେ । କି [କେହି] ଗ୍ରାଜୁଏଟ ନ ଥିଲେ କି ଓକିଲ ନ ଥିଲେ । ଶ୍ରୀଯୁକ୍ତ ଫକୀରମୋହନ ସେନାପତି ଭର୍ଣ୍ଣାକ୍ୟୁଲାର ପାସ୍ କରି ଏକ ପ୍ରାଇମେରୀ ସ୍କୁଲ୍‌ରେ ଶିକ୍ଷକତା କରୁଥିଲେ । ସେ ମୋଠାରୁ ପାଞ୍ଚବର୍ଷ ବଡ଼ ଥିଲେ । ସେ, ମୁଁ ଓ ଆଉ କେତେଜଣ ବାଲେଶ୍ୱରରେ ଓଡ଼ିଆ ଭାଷା ସପକ୍ଷରେ ଆନ୍ଦୋଳନ ଚଳାଇଲୁ । କଟକରେ ଯାଜପୁରୀ ବିଚିତ୍ରାନନ୍ଦ ଦାସ ଯେ କି କମିଶନର ସାହେବଙ୍କ ସିରସ୍ତାଦାର ଥିଲେ ଓ ଗୌରୀଶଙ୍କର ରାୟ, ଯେ କି 'ଉତ୍କଳ ଦୀପିକା'ର ସମ୍ପାଦକ ଥିଲେ, ସେମାନେ ଆନ୍ଦୋଳନ ଚଳାଇଲେ । ଶ୍ରୀ ବିଚ୍ଛନ୍ଦ ପଟ୍ଟନାୟକ ନାମକ ଏକ ଶିକ୍ଷିତ ବ୍ୟକ୍ତି କଟକ ଓ ସମ୍ବଲପୁରରେ ଓ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ ନାମକ ଏକ ପଣ୍ଡିତ ବାଲେଶ୍ୱରରେ ରହି କେତେ ଓଡ଼ିଆ ପୁସ୍ତକ ପ୍ରଣୟନ କଲେ ଯାହାକି ପାଠ୍ୟ ବୋଲି ବିବେଚିତ ହେଲା । ଅନେକ ବାଧାବିଘ୍ନ ସତ୍ତ୍ୱେ ଓଡ଼ିଆ ଭାଷାକୁ ତତ୍କାଳୀନ ବଙ୍ଗଳାର ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ଓଡ଼ିଶାର ସ୍କୁଲ କଚେରୀର ପ୍ରଚଳନଯୋଗ୍ୟ ଭାଷା ବୋଲି ସ୍ୱୀକାର କରିବାରୁ ଓଡ଼ିଆ ଭାଷାର ଅସ୍ତିତ୍ୱ ରହିଲା ନଚେତ୍ ବର୍ତ୍ତମାନ ମେଦିନାପୁର ଓ ଧଳଭୂମବାସୀ ଓଡ଼ିଆମାନଙ୍କର ଯେଉଁ ଅବସ୍ଥା ତାହା ହିଁ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର ଓ ଗଡ଼ଜାତରେ ହୋଇଥାଆନ୍ତା । ମୁଁ ଏ ଭାଷା ଆନ୍ଦୋଳନରେ ଯୋଗଦେଇ ବଙ୍ଗାଳୀଙ୍କ ଚକ୍ଷୁଶୂଳ ହେଲି । ମୋତେ ଅନେକ ବଙ୍ଗାଳୀ ବଦନାମ କରାଇଲେ । ତାହା ସତ୍ତ୍ୱେ ମଧ ଉଚ୍ଚ ଶିକ୍ଷା ପାଇଁ ମୁଁ କଲିକତା ଗଲି ଓ ସେଠାରେ ମୁଁ ଏକମାତ୍ର ବିଶ୍ୱବିଦ୍ୟାଳୟର ଛାତ୍ର ଥାଇ ସଂସ୍କୃତର ଉତ୍ତର ଓଡ଼ିଆ ଅକ୍ଷରରେ ଲେଖିବାର ଦାବି କରି ସେ ଦାବି ହାସଲ କଲି । କଲିକତାରେ ଓଡ଼ିଆ ଭାଷା ଶିକ୍ଷା ପାଇଁ ନୈଶ ବିଦ୍ୟାଳୟମାନ ସ୍ଥାପନ କରିଥିଲି ।

ମୁଁ କଲିକତାରେ ଦୀର୍ଘକାଳ ରହି କଟକ ଫେରିଲି । ସେତେବେଳେ ଓଡ଼ିଶାର ଶିକ୍ଷା କ୍ଷେତ୍ରରେ ଧିମେଇ ଧିମେଇ ଉନ୍ନତି ଘଟୁଥିଲା । ଗୌରୀଶଙ୍କର ରାୟ, ରାଧାନାଥ

ରାୟ ଓ ପ୍ୟାରିମୋହନ ଆଚାର୍ଯ୍ୟ ପ୍ରଭୃତି ବଙ୍ଗୀୟ ଥାଇ ସୁଦ୍ଧା ନିଜକୁ ଉତ୍କଳୀୟ ମନେ କରି ଓଡ଼ିଆ ଭାଷାର ଉନ୍ନତି ସାଧନ କରିଥିଲେ ।

ମୋର ଓଡ଼ିଆ ସାହିତ୍ୟରେ ଚର୍ଚ୍ଚା ନ ଥିଲା । ପିଲାଦିନେ କୋଇଲି, ଗୋପୀଭାଷା ପଢ଼ିଥିଲି । ମୋ ମାଆଙ୍କୁ ଖୁସି କରାଇବା ପାଇଁ ବଳରାମ ଦାସଙ୍କ ରାମାୟଣ, ସାରଳା ଦାସଙ୍କ ମହାଭାରତ, ଜଗନ୍ନାଥ ଦାସଙ୍କ ଭାଗବତ ପୋଥିରୁ ପଢ଼ି ଶୁଣାଇଥିଲି । ଉପେନ୍ଦ୍ର ଭଞ୍ଜଙ୍କ ବୈଦେହୀଶବିଳାସ, ଲାବଣ୍ୟବତୀ; ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ବିଦଗ୍ଧ ଚିନ୍ତାମଣି, ଦୀନକୃଷ୍ଣ ଦାସଙ୍କ ରସକଲ୍ଲୋଳ ଉପର ଠାଉରିଆ କରି ପଢ଼ିଥିଲି । ମୁଁ କଲିକତାରେ ଦୀର୍ଘ ୧୬ ବର୍ଷ ରହି ଇଂରାଜୀ ଭାଷା ପଢ଼ି ସେ ସାହିତ୍ୟରେ ଦଖଲ ହାସଲ କଲି । ମିଲଟନ, ସେକ୍ସପିୟର, ବାଇବେଲ ପ୍ରଭୃତି ପଢ଼ି ପାଶ୍ଚାତ୍ୟ ସାହିତ୍ୟ ସମ୍ପର୍କରେ ଆସିଲି । ସେ ସମୟରେ ମାଇକେଲ ମଧୁସୂଦନ ନୂଆ ଧରଣର କାବ୍ୟ ଓ ବଙ୍କିମଚନ୍ଦ୍ର ନୂଆ ଧରଣର ଉପନ୍ୟାସ ଲେଖିଲେ । ସେସବୁ ପଢ଼ିବାକୁ ମୋର ସମୟ ନ ଥିଲେ ସୁଦ୍ଧା ବଙ୍ଗ ସାହିତ୍ୟର ଗତିକୁ ମୁଁ ଲକ୍ଷ୍ୟ କରୁଥିଲି । ମୁଁ ଏଠାକୁ ଫେରିବା ପରେ ଓଡ଼ିଶାର ପ୍ରାଚୀନ ସାହିତ୍ୟ ଓ ନବୀନ ସାହିତ୍ୟ ମଧ୍ୟରେ ତୁମୁଳ ବାଦବିବାଦ ଲାଗିଲା । 'ବିଜୁଳି' ଓ 'ଇନ୍ଦ୍ରଧନୁ' ନାମରେ ଦୁଇଦଳ ବାହାରି ପଡ଼ିଲେ । ମୁଁ କୌଣସି ଦଳଭୁକ୍ତ ନ ଥାଇ ଉଭୟଙ୍କ ମଧ୍ୟରେ ଏକ ମେଳ ଆଣିବାକୁ ଚେଷ୍ଟା କଲି । ସେ ଯେଉଁ ଧରଣର ଚର୍ଚ୍ଚା ହେଉଥିଲା, ତାହା ବ୍ୟାଖ୍ୟା କଲେ ଏକ ପୋଥି ହେବ । ତଥାପି ମୋର ମତ ଥିଲା ଯେ ପ୍ରାଚୀନ ସାହିତ୍ୟର ଆଦର ବଢ଼ୁ, କାରଣ ତାହା ଦ୍ୱାରା ଜାତି ଓ ଭାଷା ବଞ୍ଚି ରହିଛି, ସମସାମୟିକ ଭାବଧାରା ପ୍ରକାଶିତ ହୋଇଛି । ନୂତନ ସାହିତ୍ୟିକମାନେ ନୂତନ ଭାବଧାରାର ପ୍ରଚାର କରନ୍ତୁ ।

ମୁଁ ଖ୍ରୀଷ୍ଟଧର୍ମ ଗ୍ରହଣ କରିଅଛି ସତ୍ୟ, କିନ୍ତୁ ଓଡ଼ିଶାର ଜାତୀୟ କବି ଜଗନ୍ନାଥ ଦାସଙ୍କ ଭାଗବତ ପାଠ କରିଛି ଓ ତାହାକୁ ଧର୍ମଗ୍ରନ୍ଥ ହିସାବରେ ଯଥେଷ୍ଟ ମାନ୍ୟ କରେ । ଭାଗବତ ଯେଉଁ ପ୍ରଭାବ ପକାଇଛି ତାହା ଭାରତର ଅନ୍ୟ କୌଣସି ପ୍ରଦେଶରେ ଦେଖାଯାଏ ନାହିଁ । ଓଡ଼ିଶାର ପ୍ରତି ଗ୍ରାମରେ ଭାଗବତ ଟୁଙ୍ଗିରେ ପ୍ରତିଦିନ ସନ୍ଧ୍ୟାବେଳେ ଅଶିକ୍ଷିତ ଲୋକମାନେ ଆଧ୍ୟାତ୍ମିକ ଚିନ୍ତା କରନ୍ତି ଓ ଗାମରେ ଏକତା ଆସେ । ଉପେନ୍ଦ୍ର ଭଞ୍ଜଙ୍କ କୌଣସି ଲେଖା ମୁଁ ଭଲ ଭାବେ ସମ୍ପୂର୍ଣ୍ଣ ପଢ଼ିନାହିଁ । କିନ୍ତୁ ଉପେନ୍ଦ୍ର ଭଞ୍ଜଙ୍କ ବୈଦେହୀଶବିଳାସ ଓ ଲାବଣ୍ୟବତୀ ଓଡ଼ିଶାର ଘରେ ଘରେ ପରିଚିତ । ଉପେନ୍ଦ୍ର ଭଞ୍ଜ ଗଞ୍ଜାମର ଘୁମୁସରବାସୀ । ସେ ଓଡ଼ିଆ ସାହିତ୍ୟରେ ଏକ କୋଣାର୍କ ତିଆରି କରି ଯାଇଛନ୍ତି ଓ ସେହି ଗଞ୍ଜାମ ଓଡ଼ିଶା ବାହାରେ ମାନ୍ଦ୍ରାଜ ଶାସନାଧୀନରେ ଅଛି । ଆମ ଜାତି ଓ ଭାଷାର ଗୌରବ ଯେଉଁ ଉପେନ୍ଦ୍ରଭଞ୍ଜ, ତାଙ୍କ ବାସସ୍ଥାନ ଭିନ୍ନ ଶାସନାଧୀନରେ ରହି ନ ପାରେ । ଏହାହିଁ ଆମ୍ଭମାନଙ୍କୁ 'ଉତ୍କଳ ସମ୍ମିଳନୀ' ଗଢ଼ିବାକୁ ପ୍ରେରଣା ଦେଇଅଛି ।

ଆଜିକାଲି ବିଜ୍ଞାନ କ୍ଷେତ୍ରରେ ଯେଉଁ ଉନ୍ନତି ହୋଇଅଛି ଓ ଯନ୍ତ୍ରଶିଳ୍ପ କ୍ଷେତ୍ରରେ ପ୍ରସାର ହେଉଅଛି, ଭାରତର ବିଭିନ୍ନ ପ୍ରାନ୍ତରେ ଗମନାଗମନର ଯେଉଁ ସୁବିଧା ହୋଇଅଛି, ତାହା ଫଳରେ ଆମ୍ଭମାନଙ୍କର ସାମାଜିକ ଜୀବନରେ ଅନେକ ପରିବର୍ତ୍ତନ ହୋଇ ଆସୁଅଛି । ବିଶ୍ୱବିଦ୍ୟାଳୟମାନଙ୍କର ଅଧ୍ୟାପନା ପରିସର ବୃଦ୍ଧି ଓ ଶାସନାତାନ୍ତ୍ରିକ ଦୃଷ୍ଟିରୁ ଯେଉଁ ପରିବର୍ତ୍ତନ ହୋଇଅଛି ଓଡ଼ିଆ ଯୁବକମାନେ ସେଥିରେ ପ୍ରଭାବିତ ହେଉଅଛନ୍ତି । ତେଣୁ ନୂତନ ସାହିତ୍ୟର ସୃଷ୍ଟି ହେଉଅଛି ଓ ଓଡ଼ିଆ ଭାଷା ସେ ସାହିତ୍ୟ ଦ୍ୱାରା ପରିପୁଷ୍ଟ ହେବ ।

ଗୌରୀଶଙ୍କର ରାୟ 'ଉତ୍କଳ ଦୀପିକା'ରେ ଓଡ଼ିଆ ଗଦ୍ୟକୁ ଏକ ନୂତନ ରୂପ ଦେଲେ । ନୀଳମଣି ବିଦ୍ୟାରତ୍ନ ମଧ୍ୟ ଅନେକ ପତ୍ରିକା ସମ୍ପାଦନା କରି ଉନ୍ନତ ଗଦ୍ୟର ପ୍ରଚଳନ କରିଛନ୍ତି । ରାଧାନାଥ ରାୟ ଓ ମଧୁସୂଦନ ରାଓ ନୂତନ ଧରଣର ଗଦ୍ୟ ଓ ପଦ୍ୟ ଲେଖି ଓଡ଼ିଆ ସାହିତ୍ୟର କଳେବର ବୃଦ୍ଧି କରିଅଛନ୍ତି । ଗୋପାଳ ପ୍ରହରାଜ ଗାଉଁଲି ଭାଷାରେ 'ଦୁନିଆର ହାଲଚାଲ' 'ନନାଙ୍କ ବସ୍ତାନି' ଲେଖି ଜନସମାଜରେ ସାହିତ୍ୟର ପ୍ରସାର କରୁଅଛନ୍ତି । ନନ୍ଦକିଶୋର ବଳ ପଲ୍ଲୀଜୀବନକୁ ଆମ୍ଭମାନଙ୍କ ଆଗରେ ଥୋଇ ଦେଉଛନ୍ତି । ଗଙ୍ଗାଧର ମେହେର ପୌରାଣିକ କାବ୍ୟମାନଙ୍କ ଦେଇ ଉନ୍ନତ ସାହିତ୍ୟ ସୃଷ୍ଟି କରୁଅଛନ୍ତି । ବିଶ୍ୱନାଥ କର ଓ ବ୍ରଜସୁନ୍ଦର ଦାସ 'ଉତ୍କଳ ସାହିତ୍ୟ' ଓ 'ମୁକୁର' ପତ୍ରିକାମାନ ପ୍ରକାଶ କରି ଏ ଦେଶର ସାହିତ୍ୟିକମାନଙ୍କୁ ଉତ୍ସାହ ଓ ପ୍ରେରଣା ଯୋଗାଇଅଛନ୍ତି । ରାମଶଙ୍କର ରାୟ, କାମପାଳ ମିଶ୍ର ଓ ଭିକାରୀ ପଟ୍ଟନାୟକ ପ୍ରଭୃତି ନୂଆ ଧରଣର ନାଟକମାନ ଲେଖୁଛନ୍ତି । ଏସବୁ ଦେଖିଲେ ମୋର ମନରେ ଗର୍ବ ଆନନ୍ଦ ଜାତ ହେଉଅଛି ।

ଓଡ଼ିଆ ଭାଷା ରହିବାରୁ ସିନା ଓଡ଼ିଆ ସାହିତ୍ୟ ସୃଷ୍ଟି ହେଉଅଛି । ଏ ଅତି ପ୍ରାଚୀନ ଭାଷା । ଏହାତ ଲୋପ ହେବ ନାହିଁ । ମୁଁ ତ ଆଗରୁ କହିଛି ଏହାକୁ ଲୋପ କରିବାର ଚେଷ୍ଟା କିପରି ବ୍ୟର୍ଥ ହୋଇଅଛି । ଭାଷା ନେଇ ଜାତି । ଆମ୍ଭେମାନେ ଭାରତ ଜନନୀ ଓ ଉତ୍କଳ ଜନନୀର ପୂଜା କରୁଅଛୁ । ଆମ୍ଭର ଉତ୍କଳ ସମ୍ମିଳନୀରେ ଗୋଟିଏ ସୂକ୍ତି ଥିଲା—

''ମାତୃଭାଷା ମାତୃଭୂମି ଉଭୟେ ଜନନୀ
କର ତାଙ୍କ ପାଦ ପୂଜା ଦିବସ ରଜନୀ ।''

ଏହି ଓଡ଼ିଆ ଭାଷାର ପରିସର କେତେଦୂର, ତାହାର ଅନୁସନ୍ଧାନ ପାଇଁ ଆମ୍ଭେମାନେ ଚେଷ୍ଟିତ ହେବା ଉଚିତ । ଯେଉଁ ଅଞ୍ଚଳମାନଙ୍କରେ ଏ ଭାଷାର ପ୍ରଚଳନ ଅଛି, ସେହି ସ୍ଥାନମାନ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶରେ ମିଶି ତାହାର ଅଙ୍ଗୀଭୂତ ହେଲେ ନୂତନ ରାଜନୈତିକ ଜୀବନ ଦେଶରେ ଖେଳିବ । ତେଣୁ ଭାଷା ସୂତ୍ରେ ଦେଶମିଶ୍ରଣ 'ଉତ୍କଳ ସମ୍ମିଳନୀ'ର ମୂଳ ଲକ୍ଷ୍ୟ ।

ଛାତ୍ରମାନଙ୍କର ସାହିତ୍ୟସଭାରେ ମୁଁ ତୁମ୍ଭମାନଙ୍କୁ ରାଜନୀତି ଆଡ଼କୁ ଟାଣି ନେବି ନାହିଁ । କିନ୍ତୁ ଓଡ଼ିଆ ଭାଷାର ସୀମା କେଉଁଠି ତାହା ନ ସୂଚାଇ ରହିପାରୁନାହିଁ । ଗତ କେତେ ବର୍ଷତଳେ ସାର ଜର୍ଜ ଗ୍ରିୟର୍ସନ ନାମରେ ସିବିଲିୟାନ ଓ ଅତି ବିଦ୍ୱାନ ଭାଷାତତ୍ତ୍ୱବିତ୍‌ଙ୍କୁ ଭାରତ ସରକାର ଏହି ଭାଷା ସର୍ଭେ କରିବାକୁ ନିଯୁକ୍ତ କରିଥିଲେ । ସେ Linguistic Survey of India ନାମକ ଏକ ବିରାଟ ଗ୍ରନ୍ଥ ରଚନା କରି ରିପୋର୍ଟ ଦେଇଅଛନ୍ତି । ତାଙ୍କରି ରିପୋର୍ଟରେ ଯେଉଁଠାରେ ଓଡ଼ିଆ ଭାଷା ପ୍ରଚଳନ ରହିଛି ବୋଲି ଲେଖାଅଛି, ସେହି ସ୍ଥାନମାନଙ୍କୁ ଆମ୍ଭେମାନେ ଓଡ଼ିଆ ଭାଷାର ପୀଠ ରୂପେ ଗ୍ରହଣ କରି ଦେଶମିଶ୍ରଣ ଦାବି ଉତ୍ଥାପନ କରି ଆସୁଅଛୁ । ଓଡ଼ିଆ ଭାଷାର ପ୍ରଚାର ପାଇଁ ଗଡ଼ଜାତର ରାଜାମାନେ ଯଥା: ବାମଣ୍ଡା, ମୟୂରଭଞ୍ଜ ଓ ତାଳଚେରର ରାଜାମାନେ ଯେଉଁ ଉତ୍ସାହ ଦେଇଅଛନ୍ତି, ଖ୍ରୀଷ୍ଟାନ-ପାଦ୍ରୀମାନେ ଯାହା କରିଅଛନ୍ତି, ସେଥିପାଇଁ ଓଡ଼ିଶା ସେମାନଙ୍କ ନିକଟରେ ଚିର ଋଣୀ ହୋଇରହିବ ।

ମୁଁ ତ ତୁମ୍ଭମାନଙ୍କୁ କଣ କହିଚି ସେ କଥା ଭାବୁଛି । ମୋର ସଂସ୍କୃତ ସାହିତ୍ୟରେ ଦଖଲ ନାହିଁ । କାଳିଦାସଙ୍କ ରଘୁବଂଶରୁ କେତେଟା ଶ୍ଳୋକ ପଢ଼ି ବୁଝିଛି । ମେଘଦୂତ କଥାଟା ରାଧାନାଥଙ୍କ ଓଡ଼ିଆ କବିତାରୁ ପଢ଼ିଛି । ସଂସ୍କୃତ ହେଲା ଓଡ଼ିଆ ଭାଷାର ଜନନୀ । ତେଣୁ ସେହି ସାହିତ୍ୟ ଚର୍ଚ୍ଚା କରିବା ଆବଶ୍ୟକ । ମୁଁ ତ କହିଛି, ମୁଁ ଇଂରାଜୀ ସାହିତ୍ୟର ସର୍ବଶ୍ରେଷ୍ଠ ସାହିତ୍ୟମାନ ପଢ଼ିଛି, ମୋହର ଭାବଧାରା ତାହା ଦ୍ୱାରା ପ୍ରଭାବିତ ହୋଇଅଛି । ହୋମରଙ୍କ ଇଲିୟାଡ଼ ଓ ଅଡ଼ିସୀର ଆଖ୍ୟାୟିକାକୁ ମୂଳ କରି ପାଶ୍ଚାତ୍ୟ ସାହିତ୍ୟ ଗଢ଼ା ହୋଇଅଛି । ସେହିପରି ରାମାୟଣ ଓ ମହାଭାରତର ଆଖ୍ୟାୟିକାକୁ ମୂଳ କରି ଭାରତର ବିଭିନ୍ନ ପ୍ରଦେଶର ସାହିତ୍ୟ ଗଢ଼ା ହୋଇଅଛି । ଆଜିକାଲି ଦେଶ-କାଳ-ପାତ୍ରକୁ ଚାହିଁ ନାନାବିଧ କାବ୍ୟ ଉପନ୍ୟାସ ରଚିତ ହେଉଅଛି । ବିଶେଷତଃ ବଙ୍ଗ ସାହିତ୍ୟ ଅତି ପ୍ରବଳ ବେଗରେ ଗତି କରୁଅଛି । ଆମ ଓଡ଼ିଆ ଛାତ୍ରମାନଙ୍କର ଏହି ସମସାମୟିକ ଇଂରାଜୀ ଓ ବଙ୍ଗଳା ସାହିତ୍ୟ ସମ୍ପର୍କରେ ଆସିବା ଉଚିତ । ସାହିତ୍ୟରେ ପ୍ରାଦେଶିକତାର ସଂକୀର୍ଣ୍ଣ ଭେଦଭାବ ରହିବା ଉଚିତ ନୁହେଁ । ଯେଉଁ ଭାଷା ହେଉ ପଛକେ ଯେଉଁଠି ଭଲ ଭାବ, ଉଚ୍ଚ ଚିନ୍ତା ଓ ଉନ୍ନତ ରୁଚିର ଉପାଦାନମାନ ଅଛି ତାହା ଗ୍ରହଣ କରି ଆମ୍ଭମାନଙ୍କ ସାହିତ୍ୟ ଭିତରେ ପୂରାଇ ତାକୁ ଆମ୍ଭ ନିଜର କରିନେବାକୁ ହେବ ଓ ଲେଖକର ମାର୍ଗ ଓ ଧାରାକୁ ଆଧୁନିକ ରୁଚି ଅନୁଯାୟୀ ବଦଳାଇବାକୁ ହେବ ।

ତୁମ୍ଭମାନଙ୍କ ଶିକ୍ଷକ ମୃତ୍ୟୁଞ୍ଜୟ ବାବୁ ଯେଉଁ ପ୍ରତ୍ନତତ୍ତ୍ୱ ଗବେଷଣା କରି ନୂତନ ଲେଖାମାନ ଓଡ଼ିଆ ସାହିତ୍ୟକୁ ଦାନ କରୁଅଛନ୍ତି, ତାହା ଅମୂଲ୍ୟ । ସେ ତାହା ଦ୍ୱାରା 'ଜାତି ଇତିହାସ' ଆମ ଆଗରେ ଠିଆ କରାଇ ଦେଉଛନ୍ତି । ଏହି ସମ୍ପର୍କରେ ମୁଁ ଥରେ ଲେଖିଥିଲି :-

"ଜାତି ଇତିହାସ ଜାନ୍ତିର ନିର୍ଝର
ତହୁଁ ବହେ ସଦା ଜାତି ପ୍ରାଣଧାର
ସେ ଧାରାରୁ ନୀର ପିଉଛି ଯେ ନର
ନିଶ୍ଚୟ ହେବ ସେ ଜାତି କର୍ମବୀର ।
କଳକଳ ନାଦେ ଧାଉଁଛି ସେ ଧାର
ଜାତୀୟ କୀରତି ଗାଇ ନିରନ୍ତର,
ଭାବୀ କୀରତିର ଉଦୟେ ନାଚଇ
ଯେହ୍ନେ ଚନ୍ଦ୍ରୋଦୟେ ନାଚେ ରତ୍ନାକର ।"

ମୋତେ ମୃତ୍ୟୁଞ୍ଜୟ ବାବୁ ତୁମ୍ଭମାନଙ୍କ ମାସିକ ପତ୍ରିକା 'ଛାତ୍ରବନ୍ଧୁ'ର କେତୋଟି ସଂଖ୍ୟା ପଢ଼ିବାକୁ ଦେଇଥିଲେ । ମୁଁ ସବୁ ପଢ଼ି ପାରିନାହିଁ । କେବଳ ସେ ସୂଚୀପତ୍ର ଦେଖି ମୋ ମନରେ ଗୋଟାଏ ଗର୍ବ ଆସିଲା ଯେ ଆଜିକାଲିର ଛାତ୍ରମାନଙ୍କୁ ନିଜର ଭାବ ଓ ମତପ୍ରକାଶ କରିବାକୁ କି ସୁଯୋଗ ମିଳିଛି ଓ କିପରି ଶିକ୍ଷକମାନେ ସେମାନଙ୍କୁ ଭଲ ବାଟରେ ଚଳାଉଅଛନ୍ତି ।

ସାହିତ୍ୟ ସମ୍ବନ୍ଧରେ କେବଳ ପଦେ ଦୁଇପଦ ଉପଦେଶ ଛଳରେ କହିବି । ତୁମ୍ଭମାନଙ୍କର ଚିନ୍ତାରାଜ୍ୟକୁ ପ୍ରସାର କର, ବିଭିନ୍ନ ଭାଷାର ସାହିତ୍ୟ ପଢ଼ । ଆଧ୍ୟାତ୍ମିକ ଭାବରେ ଅନୁପ୍ରାଣିତ ହୁଅ । ଯାହା ସତ୍ୟ ଓ ଚିରସ୍ଥାୟୀ, ତାର ପୂଜକ ହୁଅ । ଯାହା ଲେଖିବ ତାହା ଯେପରି ସମସ୍ତ ଦେଶ ଓ ସବୁ କାଳରେ ଗ୍ରହଣଯୋଗ୍ୟ ହେବ, ସେ ଦିଗରେ ମନ ଦିଅ । ଗଠନମୂଳକ ସାହିତ୍ୟ ଲେଖ, ଉନ୍ନତ ଧରଣର ଆଲୋଚନା କର । ଈର୍ଷା, କୁତ୍ସା, ନିନ୍ଦାକୁ ମନରୁ ଦୂରୀଭୂତ କର । ଆମ ଦେଶରେ ଯେଉଁ ଆଧ୍ୟାତ୍ମିକ ପରମ୍ପରା ଗଢ଼ି ଆସୁଅଛି, ସେହି ପରମ୍ପରାରୁ ବିଚ୍ୟୁତ ହୁଅନାହିଁ । ଏ ବୈଜ୍ଞାନିକ ଯୁଗର ଗତି ଦେଖି ଜନସମାଜର ଆର୍ଥିକ ଓ ନୈତିକ ମଙ୍ଗଳ ନିମିତ୍ତ ଯେ ପ୍ରକାର ସାହିତ୍ୟ ଆବଶ୍ୟକ, ସେହିଭଳି ସାହିତ୍ୟ ଲେଖ । ଅଭିଳାଷକୁ ଉଚ୍ଚରେ ରଖି ଭବିଷ୍ୟତ ଜୀବନରେ ଯେ ଯେଉଁ କ୍ଷେତ୍ରରେ ପ୍ରବେଶ କଲେ ମଧ୍ୟ ନିଜର ଜାତି ଭାଷା ଓ ସାହିତ୍ୟ ପ୍ରତି ଦୃଷ୍ଟି ରଖ ଓ ସେଥିନିମିତ୍ତ ଯେଉଁ ତ୍ୟାଗ ଆବଶ୍ୟକ ତାହା ଦେଶକୁ ଦିଅ । କରୁଣାମୟ ପରମେଶ୍ୱର ତୁମ୍ଭମାନଙ୍କୁ ଆଶୀର୍ବାଦ କରନ୍ତୁ । ତୁମ୍ଭେମାନେ ଜଣେ ଜଣେ ଆଦର୍ଶ ମାନବ ହୋଇ ଦେଶର ଜାତିର ସର୍ବବିଧ କଲ୍ୟାଣରେ ବ୍ରତୀ ହୁଅ ।

***

## (୧୭)

## କବିରାଜୀ ଚିକିତ୍ସା ଓ ଶରୀରରକ୍ଷା

.... ଆମ୍ଭେମାନେ ସର୍ବଦା ବିଦେଶୀୟ ପଦାର୍ଥ ପ୍ରତି ଆଦର ଦେଖାଇଥାଉଁ, ଅତ୍ୟନ୍ତ କ୍ଷୋଭର ବିଷୟ । କବିରାଜୀ ଏହି ଦେଶର ବିଦ୍ୟା ଓ ଏହି ଦେଶର ଗଛ, ପତ୍ର, ଧାତୁ ପ୍ରଭୃତିର ଗୁଣ ପର୍ଯ୍ୟବେକ୍ଷିତ ହୋଇ କବିରାଜୀ ଚିକିତ୍ସାର ସୃଷ୍ଟି ହୋଇଅଛି । ଯଦ୍ୟପି କବିରାଜିରେ କିଛି ଅଭାବ ଥାଏ ତେବେ ଅନ୍ୟ ଦେଶରୁ ଯାହା ଅବଲମ୍ବିତ ହୋଇପାରେ ତଦ୍ୱାରା ଅଭାବ ପୂରଣ କରିବା ବିଧେୟ । ... ଶରୀରରକ୍ଷା ସମସ୍ତ ଧର୍ମର ମୂଳ । ଏପରିକି ଶରୀର ସୁସ୍ଥ ନ ରହିଲେ ଆତ୍ମାର ମଧ୍ୟ କାର୍ଯ୍ୟ ସାଧିତ ହୋଇପାରେ ନାହିଁ କାରଣ ଆତ୍ମାର ତାହାର କାର୍ଯ୍ୟ ଶରୀର ଦ୍ୱାରା ସାଧନ କରେ । ଶରୀରର ସ୍ୱାସ୍ଥ୍ୟ ବିଧାନ କରିବାକୁ ଗଲେ ସୁଖାଦ୍ୟ ଖାଇବା ଆବଶ୍ୟକ । ରସନା ପରି ଶତ୍ରୁ ନାହିଁ, ରସନା ଲୋଭ ସମ୍ବରଣ କରିବା ମନୁଷ୍ୟର ପ୍ରଧାନ କର୍ତ୍ତବ୍ୟ ।

***

## (୧୮)

## ଆଧୁନିକ ସାହିତ୍ୟ ଓ ବିଦେଶୀ ପ୍ରଭାବ

.... କବିମାନଙ୍କର ଲେଖା ଏ ଦେଶର ଜନସାଧାରଣଙ୍କ ଶିକ୍ଷା ଓ ମନର ଅବସ୍ଥା ଓ ଚିନ୍ତାନୁରୂପ ହେବା ଉଚିତ । ମାତ୍ର ଦୁଃଖର ବିଷୟ ଆଧୁନିକ ଲେଖକମାନେ ବିଦେଶୀୟ ଚିନ୍ତା ଓ ଲେଖା ଅନୁକରଣ କରୁଥିବାରୁ ଜନସାଧାରଣ ସେହି ଲେଖାର ଉପକାର ପାଇ ପାରୁ ନାହାନ୍ତି । ମଧ୍ୟ ଆଜିକାଲି ଲେଖାର ମୂଳରେ ଧର୍ମଭାବ ନାହିଁ ।

***

## (୧୯)

## ପଠାଣି ସାମନ୍ତଙ୍କ ସ୍ମୃତିସଭାରେ ବକ୍ତୃତା

... ବର୍ତ୍ତମାନ ଶିକ୍ଷାପ୍ରଣାଳିଦୋଷରେ ଛାତ୍ରମାନେ ଦେଶୀୟ କର୍ମବୀର, ପ୍ରତିଭାଶାଳୀ ଲୋକମାନଙ୍କୁ ଚିହ୍ନିପାରୁ ନାହାନ୍ତି । ଧର୍ମଶିକ୍ଷାର ଅଭାବ ଏହାର କାରଣ, ଧର୍ମଶିକ୍ଷା ବିଦ୍ୟାଳୟରେ ପ୍ରବେଶ କରିପାରେ ନାହିଁ । ଖଣ୍ଡେ ଟିକିଟ ସଂଗ୍ରହ କରିପାରିଲେ ଯେ କେହି ବ୍ୟବସ୍ଥାପକ ସଭାରେ ପ୍ରବେଶ କରିପାରେ କିନ୍ତୁ ଧର୍ମ ପ୍ରବେଶ କରିପାରେ ନାହିଁ । ପୁରୀ ଦେଉଳ ତୋଳାରେ କଚ୍ଛପମାନେ ପଥର ବୋହିଥିବାରୁ ସେମାନଙ୍କ

ପୃଷ୍ଠଦେଶ କଠିନ, ଏ କିମ୍ବଦନ୍ତୀରେ ସାରବତ୍ତା ଅଛି । କଷ୍ଟ ନ ସହିଲେ ଇଷ୍ଟ ସନ୍ଧାନ ଅସମ୍ଭବ । ସାମନ୍ତ ଦାରିଦ୍ର୍ୟର କଶାଘାତ ସହିଥିବାରୁ ସ୍ମରଣୀୟ ଗୌରବଜନକ କାର୍ଯ୍ୟ କରିପାରିଅଛନ୍ତି । ମୂର୍ତ୍ତି ପ୍ରତିଷ୍ଠାରେ ତାଙ୍କର ଉପକାର ହେବ ନାହିଁ, ହେବ ଆମ୍ଭମାନଙ୍କର । ଆମ୍ଭେମାନେ ତାଙ୍କୁ ଚକ୍ଷୁ ସମ୍ମୁଖରେ ଦେଖିବା; ରଖି [ଦେଖି] ତାଙ୍କର ଗୁଣର ଅନୁକରଣ କରିପାରିବା । ସେପରି କରିବାର ସୁବିଧା ପାଇଁ ତାଙ୍କର ଗ୍ରନ୍ଥର ପରିଚୟ ପାଇବା ଆବଶ୍ୟକ । ତାଙ୍କ ଗ୍ରନ୍ଥର ଟୀକା ବିଷୟରେ ନୀଳମଣିବାବୁ ଉପଯୁକ୍ତ ପ୍ରସ୍ତାବ କରିଅଛନ୍ତି । ତହିଁ ପାଇଁ ଅର୍ଥ ଆବଶ୍ୟକ । ଅର୍ଥ ଜଣେ ଦେଲେ ତାହା ଜାତୀୟ କାର୍ଯ୍ୟ ବୋଲି ଗଣନା କରାଯାଏ ନାହିଁ । ତହିଁ ପ୍ରତି ଲୋକସାଧାରଣଙ୍କର ମମତା ହୁଏ ନାହିଁ । ଧର୍ମ ବା କର୍ତ୍ତବ୍ୟଜ୍ଞାନରେ ଦାନ କରିବା ଉଚିତ । ବିଦେଶର ବାଳକମାନେ ନିଜ ନିଜର ଚା-ଖିଆ, ଜଳଖିଆ ଖରଚ ଊଣା କରି ପଇସା ଚାନ୍ଦା ଦେଇ ବଡ଼ ବଡ଼ ଗୀର୍ଜ୍ଜା ତୋଳାରେ ସାହାଯ୍ୟ କରିଥାନ୍ତି । ଏ ଦେଶର ପିଲାମାନେ ବା ବଡ଼ମାନେ ନିଜର ଖରଚ କମାଇ ନିଜେ କଷ୍ଟ ସହି ଚାନ୍ଦା ଦେଇ କେଉଁଠାରେ ଗୋଟାଏ ଜଗନ୍ନାଥ ମନ୍ଦିର ତୋଳିବା କଥା କେହି ଶୁଣିଛ କି ? ରାଜା ପ୍ରଜା ସ୍ପୃଶ୍ୟ ଅସ୍ପୃଶ୍ୟ ବିଚାର ନ କରି ଜାତୀୟ କାର୍ଯ୍ୟ ନିମନ୍ତେ ଚାନ୍ଦା ଆଦାୟର ବ୍ୟବସ୍ଥା କରିବା ଉଚିତ । ଆଶା କରେଁ, ବିଜ୍ଞାନ ସମିତି ଗ୍ରନ୍ଥର ଟୀକା ପାଇଁ ଅର୍ଥ ସଂଗ୍ରହର ଚେଷ୍ଟା କରିବେ । ...

***

## (୨୦)

## ଉତ୍କଳ ମହିଳା ସମିତିର ପ୍ରଥମ ଅଧିବେଶନରେ ପ୍ରଦତ୍ତ ବକ୍ତୃତା

ମା' ଶବ୍ଦଟି ବଡ଼ ମିଠା । ପିଲା ଯେତେବେଳେ [ସାମାନ୍ୟ ବଡ଼ ହୁଏ], ପ୍ରଥମେ ମା' ମା' ବୋଲି ଉଚ୍ଚାରଣ କରେ । ମା' ଶବ୍ଦଟି ଆମରି ରାଜ୍ୟରେ ଅଛି, ତାହା ନୁହେଁ; ଇଂରାଜୀ, ଲାଟିନ, ଜର୍ମାନ ପ୍ରଭୃତି ପ୍ରତ୍ୟେକ ଭାଷାରେ ମା' ଶବ୍ଦଟି ଅଛି । ମାତାର କାର୍ଯ୍ୟ କଣ ? ନିଜର ବକ୍ଷର ରକ୍ତକୁ ସ୍ନେହରେ ଧଳା କରି ଆଉ ଗୋଟିଏ ମନୁଷ୍ୟ ଗଢ଼ିବା । ଯେ ମା'କୁ ଭଲ ପାଇବାକୁ ଶିଖି ନାହିଁ, ସେ କଦାପି ମାତୃଭୂମିକୁ ଭଲ ପାଇବ ନାହିଁ । କାରଣ ପ୍ରଥମେ ମାତୃ, ପରେ ଭୂମି, ମା' ଉପରେ ପିଲାର ଯେତେ ବିଶ୍ୱାସ, ଅନ୍ୟ କାହା ଉପରେ ନାହିଁ । ମା' ଯେତେବେଳେ ଯାହା ଶିଖାଇବ, ପିଲା ତେତେବେଳେ ବିଶ୍ୱାସର ସହିତ ଶିଖିବ । ଯେ ମା' ନିଜର ପିଲାକୁ ନିଜେ ନ ଶିଖାଇ ପରର ଯତ୍ନରେ ଦିଏ, ସେ ପିଲା ମା'କୁ ସ୍ନେହ କରିବ କିପରି ? ...

## (୨୧)

## ସାର୍ ସୁରେନ୍ଦ୍ରନାଥ

... ସୁରେନ୍ଦ୍ରନାଥ ନ ଥିଲେ ବର୍ତ୍ତମାନ ବଙ୍ଗବାସିମାନେ ଯେ ରୂପ ଉନ୍ନତ ହୋଇଅଛନ୍ତି ତାହା କଦାପି ହୋଇପାରି ନ ଥାନ୍ତେ । ରାଜନୈତିକ କ୍ଷେତ୍ରରେ ବର୍ତ୍ତମାନ ଯେ ଉନ୍ନତି ସାଧିତ ହୋଇଅଛି ସେ ସମସ୍ତର ମୂଳକର୍ତ୍ତା ସ୍ୟାର ସୁରେନ୍ଦ୍ରନାଥ । ଶେଷ ସମୟକୁ ସେ ମନ୍ତ୍ରୀତ୍ୱ ଗ୍ରହଣ କରିବାରୁ ଅନେକେ ତାହାଙ୍କ ପ୍ରତି ଅସନ୍ତୁଷ୍ଟ ହୋଇଥିଲେ । ମାତ୍ର ସେ ମନ୍ତ୍ରୀତ୍ୱ ଗ୍ରହଣ କରି ନ ଥିଲେ କଲିକତାର କରପୋରେସନ୍‌ରେ ସି.ଆର୍.ଦାସ. ମେୟର ହୋଇ ନ ଥାନ୍ତେ । ସ୍ୟାର୍ ସୁରେନ୍ଦ୍ରନାଥ ମିନିଷ୍ଟର ହୋଇ ମ୍ୟୁନିସିପାଲ ଆକ୍ଟ ପରିବର୍ତ୍ତନ କରିଥିବାରୁ ଆଜି ତାହାରି ଫଳରେ କଲିକତା କରପୋରେସନରେ ଭାରତବାସୀ ମାଲିକ ହୋଇ ଯାଇଅଛନ୍ତି । ବାସ୍ତବିକ ଏ ରୂପ ଜଣେ ମହାପୁରୁଷଙ୍କର ଶୋକସଭା ସମୟରେ ଆମ୍ଭମାନଙ୍କ ଦେଶର ଭାବୀ ଆଶାଭରସା ଯୁବକସମାଜ – କଲେଜର ଛାତ୍ରବୃନ୍ଦ ଫୁଟ୍‌ବଲ୍ ଖେଳରେ ମାତି ଯୋଗ ନ ଦେବା ବଡ଼ ଦୁଃଖର ବିଷୟ ।

***

## (୨୨)

## ଟାଉନହଲ ସଭାରେ ସଭାପତି ଅଭିଭାଷଣ

ଉତ୍କଳ ଦେଶମିଶ୍ରଣ ଆନ୍ଦୋଳନ ପାଇଁ ମୁଁ ଜୀବନର ବହୁକାଳରୁ ବ୍ୟାକୁଳ । ଖାଲି ବ୍ୟାକୁଳ ନୁହେଁ, ମୋ ଅବସ୍ଥାକୁ ଚାହିଁ କାର୍ଯ୍ୟ କରିଛି । ଏଥିପାଇଁ ଧନ ଲୋଡ଼ା । ମୁଁ ମୋ ଅବସ୍ଥା ଦୃଷ୍ଟିରେ ବଦୁରର ଖୁଦ ଖଣ୍ଡିଏ ଦେଇଛି । ମୁଁ ପରଠାରୁ ମାଗି ଦେଶକାର୍ଯ୍ୟ କରିବା ଜାଣେ ନାହିଁ । ଅନେକେ ମତେ ଚାକିରି ଲୋଭରେ ମନ୍ତ୍ରୀ ହୋଇଥିଲି ବୋଲି ସମାଲୋଚନା କରନ୍ତି; କିନ୍ତୁ ମୁଁ କଣ ଚାକିରି କରିଥିଲି । ସେତେବେଳର ବିହାର ଲାଟ ଲର୍ଡ଼ ସତ୍ୟେନ୍ଦ୍ର ପ୍ରସନ୍ନ ସିଂହ ମତେ ବାରମ୍ବାର ମନ୍ତ୍ରୀ ହେବା ପାଇଁ ଅନୁରୋଧ କଲେ । ମୁଁ (ସ୍ୱର୍ଗୀୟ) ସାର୍ ଆଶୁତୋଷ ମୁଖାର୍ଜୀଙ୍କୁ ପଚାରିଲି । ସେ କହିଲେ –'ମନ୍ତ୍ରୀ ହୋଇ ଆଇନଗୁଡ଼ିକ ବଦଳାଇ ଲୋକଙ୍କୁ ହାତକୁ ଅଧିକାର ଆଣ,' ମୁଁ ତେଣୁ ମନ୍ତ୍ରୀ ହେଲି । ଯେଉଁ ମ୍ୟୁନିସିପାଲିଟିରେ ଆପଣମାନେ ଅଛନ୍ତି, ତାର ପରିଚାଳନା ପାଇଁ ମୁଁ ନୂଆ ଆଇନ କଲି । ଆଜି ତାରି ବଳରେ ଆପଣମାନେ ଜଣେ ଚେୟାରମ୍ୟାନଙ୍କୁ ତଡ଼ିପାରିଲେ । ମୁଁ ଚାକିରି ଲୋଭ କରି ରହି ନ ଥିଲି । ଲାଟ୍ ସାର୍ ହ୍ୱିଲର୍ ୧୯୨୭ ନଭେମ୍ବର ୧୧ ତାରିଖରେ ବିଲାତରେ ଗୋଟିଏ ବକ୍ତୃତାରେ ମୋର ସ୍ୱାଧୀନ ଭାବ ବିଷୟରେ ଅନେକ କଥା କହିଥିଲେ ।

... ଉତ୍କଳର ଅବସ୍ଥା ଏଇଆ–

ମା' ମା' ବୋଲି କେତେ ମୁଁ ଡାକିଲି
ନ ଶୁଣିଲି କଣ୍ଠସ୍ୱର,
ତୁଣ୍ଡ ଫିଟୁ ନାହିଁ ମୁଣ୍ଡ ହଲୁ ନାହିଁ
ନେତ୍ରୁ ବହେ ଅଶ୍ରୁଧାର ।

... ସରକାରଠାରେ ବହୁତ ଦିନ ଆବେଦନ ନିବେଦନ ହେଲାଣି । ଆଉ ଦରକାର ନାହିଁ । ଏଣିକି ପନ୍ଥା ପରମେଶ୍ୱରଙ୍କୁ ପ୍ରାର୍ଥନା ...

ଶୁଣରେ ଶୁଣରେ ଶୁଣ ଭାଇମାନେ
ଏ ଦୀନହୀନ ବିନତି,
ଆମ ପାପ ହେତୁ ମାତାଙ୍କ ଦୁର୍ଦ୍ଦଶା
ମୋ ଜାତିର ଅଧୋଗତି ।

ଆମର ପାପ ଦୂର ନ ହେଲେ ଜାତିର ଉନ୍ନତି ଓ ମା'ଙ୍କ ଦୁର୍ଦ୍ଦଶା ଦୂର ହେବ ନାହିଁ । ସମସ୍ତେ 'ତ୍ରାହି ଜଗନ୍ନାଥ' ବୋଲି ଡାକନ୍ତୁ ।

କୋଟିଏ ଓଡ଼ିଆ ଗୋଟିଏ ସ୍ୱରରେ
ଡାକ ତ୍ରାହି ଜଗନ୍ନାଥ,
ଅନ୍ଧାର ଘୁଞ୍ଚିବ ନିଶ୍ଚୟ ଦେଖିବ
ଜାତିର ଉନ୍ନତି ପଥ ।
ସୁଦର୍ଶନ ଚକ୍ର ଗରଜି ଉଠିବ
ବଳିୟାର ବାହୁ କରେ
ମାତାଙ୍କ ଶ୍ରୀଅଙ୍ଗ ପୂର୍ବବତ ହେବ
ଶତ୍ରୁ ପଳାଇବ ଡରେ ।

ସେହି ଭଗବାନଙ୍କୁ ସ୍ମରଣ କର । ଆଉ ସରକାରଠାରେ ଆଶା ରଖ ନାହିଁ । ...

ଦେଶମିଶ୍ରଣ ବିଷୟରେ ଅନେକେ ଅନେକ ପ୍ରକାର କହୁଛନ୍ତି – ଯାହା ଉତ୍କଳ ଆଗେ ଥିଲା ସେ ସବୁ ମିଳିଲେ ନବା, ନ ହେଲେ ନାହିଁ; ମାତ୍ର ମୁଁ କହେ, ଯାହା ପାଉଛ ନିଅ, ପୁଣି ଅନ୍ୟମାନଙ୍କୁ ଆଣିବାକୁ ଉଦ୍ୟମ କର । ...

***

## (୨୩)

## ତାଳଚେର ଗଡ଼ରେ ପ୍ରଦତ୍ତ ଭାଷଣ

ଭାଇମାନେ ମୁଁ ଜଣେ ପ୍ରଜା । ଯେଉଁଠାରେ ଥାଏ ନା କାହିଁକି ମୋତେ ପ୍ରଜା ହେବାକୁ ହେବ । ସୁତରାଂ ମୁଁ ତୁମ୍ଭଙ୍କୁ 'ଭାଇ' ବୋଲି ସମ୍ବୋଧନ କରୁଅଛି । ଯେଉଁଠାରେ ସମସ୍ତେ ରାଜା ସେହି ଦେଶ ଅରାଜକତା ପୂର୍ଣ୍ଣ ଥାଏ । ମୁଁ ଅନେକ ସ୍ଥାନ ଦେଖିଅଛି, କିନ୍ତୁ ଆଜି ଏଠାରେ ଯେ ଦୃଶ୍ୟ ଦେଖିଲି ତାହା ସମ୍ପୂର୍ଣ୍ଣ ନୂତନ ଏବଂ ଜଗତରେ ବୋଧହୁଏ ପ୍ରଥମ । ସିଂହାସନ ସମସ୍ତ ରାଜାଙ୍କର ଥାଇପାରେ ମାତ୍ର ତାହା ସାଧାରଣ ଟଙ୍କା (Public money)ରୁ ଖର୍ଚ୍ଚ ହୋଇଥାଏ । କିନ୍ତୁ ଏଠାରେ ଏହା ପ୍ରଜାଙ୍କର ଉପଢୌକନ । ଏହା ହିଁ ଏଥିର ବିଶେଷତ୍ୱ ...

ତୁମ୍ଭମାନଙ୍କ ଠାରୁ ଓ ତୁମ୍ଭମାନଙ୍କ କାର୍ଯ୍ୟକଳାପରୁ ମୁଁ ଅବଗତ ହୋଇଅଛି ଯେ ପ୍ରତି ଦଶବର୍ଷ ପରେ ରାଜା ପ୍ରଜା ଏକତ୍ର ହୋଇ ଗତ ସମୟର କାର୍ଯ୍ୟକଳାପର ଗୋଟିଏ ଆଲୋଚନା ହୁଏ । ରାଜାଙ୍କ କାର୍ଯ୍ୟରେ ପ୍ରଜାମାନେ କିପରି ସନ୍ତୋଷ ଲାଭ କରିଅଛନ୍ତି ଓ ରାଜକାର୍ଯ୍ୟ ଦ୍ୱାରା ରାଜା, ରାଜ୍ୟ ଓ ପ୍ରଜାର କି କି ସ୍ୱାର୍ଥ ସାଧିତ ହୋଇଅଛି ଏବଂ ଆଗାମୀ ଦଶବର୍ଷରେ ତାହାର କି ଉନ୍ନତି ସମ୍ଭବପର – ଆଲୋଚନା ହୋଇ କାର୍ଯ୍ୟ ହେବାକୁ ଦଶବର୍ଷ ଅନ୍ତେ ଯେ ଉତ୍ସବ ହେଉଛି, ଏହା ଅତି ସୁନ୍ଦର ବିଷୟ । ଏହାଦ୍ୱାରା ରାଜା ନିଜ କାର୍ଯ୍ୟରେ ଭଲମନ୍ଦ ଉତ୍ତମ ରୂପେ ବୁଝିପାରନ୍ତି ଏବଂ ପ୍ରଜା ଆପଣାର ମନୋଭାବ ଜଣାଇବାରେ ସୁବିଧା ଥାଏ । ଗତ ତ୍ରିଂଶବର୍ଷ ମଧ୍ୟରେ ତୁମ୍ଭେମାନେ ଯେ ପ୍ରକାରେ ରାଜା-ସରକାରଙ୍କ ଠାରୁ ଉପକୃତ ହୋଇଅଛି, ତାହା ତୁମ୍ଭମାନଙ୍କର ଅଭିନନ୍ଦନ-ପତ୍ର ଜଣାଇ ଦେଉଅଛି ଓ ରାଜା ମଧ୍ୟ ତୁମ୍ଭମାନଙ୍କୁ ଆଗାମୀ ବର୍ଷମାନଙ୍କରେ କିପରି ଭାବେ ପାଳନ କରିବାକୁ ଅଭିପ୍ରାୟ କରନ୍ତି ତାହା ତାହାଙ୍କର ଘୋଷଣା ଜଣାଉଛି । ଏ ସମ୍ବନ୍ଧେ ମୋର ବିଶେଷ କିଛି କହିବାର ନାହିଁ ।...

ମୋର ବୟସ ବର୍ତ୍ତମାନ ୮୫ ବର୍ଷ । ମୁଁ ଓଡ଼ିଶାର ପ୍ରଥମ ଗ୍ରାଜୁଏଟ, ସୁତରାଂ ଆଧୁନିକ ଶିକ୍ଷିତ ବ୍ୟକ୍ତିମାନଙ୍କ ଠାରୁ ବହୁତ ଅନୁନ୍ନତ କାଳର ଶିକ୍ଷାପ୍ରାପ୍ତ ବ୍ୟକ୍ତି ମୁଁ । ମୁଁ ମନେ କରେ ସେମାନଙ୍କ ତୁଳନାରେ ମୁଁ ଦୁଃଖୀ, କାରଣ ମୋର ବିଶେଷ ଜ୍ଞାନ ନାହିଁ । କେବଳ ମୋର ବୟସ କେତେଗୋଟି ଅନୁଭୂତି ମାତ୍ର ସଂଗ୍ରହ କରିଅଛି । ମୁଁ ବହୁତ ପୁସ୍ତକ ପାଠ କରିନାହିଁ ବା ପାଠ କରିବାକୁ ସୁବିଧା ପାଇନାହିଁ ।

ଲୋକେ ଯେତେବେଳେ ପରମସୁଖରେ ରାଜ୍ୟ ମଧ୍ୟରେ ଦିନାତିପାତ କରନ୍ତି, ସେତେବେଳେ କହନ୍ତି ଆମ୍ଭେମାନେ ରାମରାଜ୍ୟରେ ଅଛୁଁ । ରାମରାଜ୍ୟ କଣ ? ସେହି ରାମରାଜ୍ୟ କଣ ଆଉ ? ବୁଢ଼ା ବାଲ୍ମୀକି ରାମଚନ୍ଦ୍ର ସିଂହାସନ ପାଇବାର ଅଳ୍ପଦିନ ପରେ ରାମାୟଣ ଲେଖା ବନ୍ଦ କରିଦେଲେ । ସେଥିରେ ବର୍ଣ୍ଣନା କଲେ କେବଳ ବନବାସ,

ଯୁଦ୍ଧ ଓ ନାନା ପ୍ରକାର କଥା । କିନ୍ତୁ ତାଙ୍କର ଶାସନ ସମ୍ବନ୍ଧରେ ସେପରି କିଛି ବିସ୍ତାରିତ ବିବରଣୀ ରାମାୟଣ ଦେଇଛି କି ? କେବଳ ଦେଖାଇଛି, ରାମାୟଣର ଚରିତ୍ର । ଯାହା ଲୋକଙ୍କୁ ଚିର ସ୍ମରଣୀୟ କରି ରଖେ ଓ ସେହି ଚରିତ୍ରରେ ରାମଚନ୍ଦ୍ର ବଳୀୟାନ ହୋଇ ପ୍ରଜାରଞ୍ଜନରେ ସମର୍ଥ ହୋଇଥିଲେ । ଏହା ହିଁ ରାମରାଜ୍ୟର ଲକ୍ଷଣ ।

ତୁମ୍ଭେମାନେ ବହୁ ପୁସ୍ତକ ପାଠ କରିଥିବ, ମାତ୍ର ମୁଁ ପୁସ୍ତକ ସମ୍ବନ୍ଧରେ ନ କହି ମୋର ସମ୍ମୁଖରେ ଯେ ପୁସ୍ତକ ଅଛି ତାକୁ ଆଦର୍ଶ କରି ମୁଁ ତୁମ୍ଭମାନଙ୍କୁ ଏବଂ ରାଜା ସାହେବଙ୍କୁ ପଦେ ପଦେ କହିବି – ଦେଖ ମୋର ପୁସ୍ତକ(ନିଜର ଦକ୍ଷିଣ ହସ୍ତ ଦେଖାଇ) । ଏହା ଗୋଟିଏ ପ୍ରଧାନ ଶିକ୍ଷାର ସ୍ଥଳ । ତୁମ୍ଭର ଛୋଟ ପିଲା ତୁମ୍ଭେ ଖାଇଲାବେଳେ ଅଳି କରି ଖାଇବସିଲା ଏବଂ ତାର ପାଞ୍ଚ ଆଙ୍ଗୁଳିକୁ ପୃଥକ୍ ରଖି – ସାଧାରଣତଃ ପିଲାମାନେ ଯେପରି କରିଥାନ୍ତି, ଭାତ ଧରିଲା, ହାତ ଆଙ୍ଗୁଳିରେ ଆସିଲା ନାହିଁ, ସେ ଖାଇ ପାରିଲା ନାହିଁ । ତେଣୁ ବାପା ଦେଖାଇଦେଲେ, ନାଁରେ ପୁଅ ଆଙ୍ଗୁଳି ଯୋଡ଼ିକରି ଭାତ ଆଣ, ଖାଇପାରିବୁ; ମୁଁ ସେଥିପାଇଁ ଏହି ହାତକୁ ପୁସ୍ତକ କରିଅଛି – ଏହି ହାତର ଛୋଟ ଆଙ୍ଗୁଠିରେ ଗୋଟିଏ ହିରା ମୁଦି ଲାଗିବା ଦେଖି ଛୋଟ ଆଙ୍ଗୁଠିର ଧାରଣା, ମୁଁ ବଡ଼ । ମୋ ଠାରେ ବହୁ ମୂଲ୍ୟ ପଦାର୍ଥ ଲାଗେ । ତା'ପର ଆଙ୍ଗୁଠି କହିଲା, ଆରେ ଯା -- ମୋ ଠାରେ କୁଶବଟୁ ନ ଲାଗିଲେ କଣ ତୋର ବାପା ଜେଜେବାପା ପାଣି ପାଇବେ ? ପ୍ରାଧାନ୍ୟ-ପଟୁ ମଧମା କହିଲା, ମୋର ଆକାର ବଡ଼, ମୁଁ ମୋର ବଢ଼ାଇ କରଣି ଦେଖାଇବି, ମୋ ଫୁଟୁକିରେ ସବୁ ଉଡ଼ାଇ ଦେବି । ଏହା ଶୁଣି ତତ୍‌ପର ଆଙ୍ଗୁଠି କହିଲା, ଦେଖ ମୁଁ ଚିହ୍ନାଇ ନ ଦେଲେ ତୁମ୍ଭମାନଙ୍କର ସକଳ କରାମତି ଏକାବେଳକେ ଲୋପ ପାଇବ । ମୁଁ ବଡ଼ । ତା'ପରେ ବୁଢ଼ା କହିଲା – ସବୁ କର, ମୁଁ ନାହିଁ କଲେ (ବୁଢ଼ା ଆଙ୍ଗୁଠିକୁ ମଧୁସୂଦନ ଉକ୍ତ ଭଙ୍ଗିରେ ହଲାଇଥିଲେ) ସବୁ ଅକାରଣ ।

କୁହତ ଭାଇମାନେ, ଏଥିମଧ୍ୟରୁ କିଏ ବଡ଼, କିଏ ସାନ ? ଜଗତରେ ସାନ ବଡ଼ ସବୁଠାରେ ଅଛି । ଏହି କ୍ଷୁଦ୍ର ହସ୍ତରେ ଅଛି । କିନ୍ତୁ ସ୍ଥଳ ବିଶେଷରେ ବଡ଼ ସାନ ଓ ସାନ ବଡ଼ ଅଟେ । ସମସ୍ତେ ସମଭାବାପନ୍ନ ହେଲେ ଓ ଆପଣାର ମଧ୍ୟରେ ଅହମିକା ଘେନି ବଡ଼ ସାନ ହୋଇ ତକରାଳ କଲେ, କିଛି କାର୍ଯ୍ୟ ହେବ ନାହିଁ । ଆଚ୍ଛା ଘୁସି ମାରିବ । ଯଦ୍ୟପି ମଧମା ଏକୁଟିଆ ଆଗକୁ ଯାଏ, ତେବେ ଫଳ କଣ ହେବ ? ଘୁସି ମାରି ହେବ ନାହିଁ । କିଛି ଜିନିଷ ଧରିବ – ବୁଢ଼ା ସେଥିରେ ସହଯୋଗ କରିବ ନାହିଁ । ଜିନିଷଟିକୁ ବଜ୍ରମୁଷ୍ଟିରେ ଧରିପାରିବ ? ଧରିପାରିବ ନାହିଁ । କିନ୍ତୁ ସମସ୍ତ ଆଙ୍ଗୁଳି ଏକତ୍ର ହୋଇ ଚପେଟାଘାତ କରିବ – ଦେଖ ତାହାର ଫଳ !

ରାଜା କେହି ନିଜେ ହୁଏ ନାହିଁ । ଭଗବାନ ତାହାକୁ ନିଯୁକ୍ତ କରିଥାନ୍ତି । ସେଥିପାଇଁ ଆମ୍ଭେମାନେ ରାଜାଙ୍କୁ ଧର୍ମାବତାର ସମ୍ବୋଧନ କରିଥାଉଁ । ରାଜା ଧର୍ମ ଓ ଈଶ୍ୱରଙ୍କ

ଦ୍ୱାରା ନିଯୁକ୍ତ, ସେ ଆମ୍ଭମାନଙ୍କ ଦ୍ୱାରା ଦଣ୍ଡ ପାଇବା ବ୍ୟକ୍ତି ନୁହଁନ୍ତି । ତାଙ୍କର ଭଲମନ୍ଦ କଥା ତାଙ୍କର ନିଯୁକ୍ତି-କର୍ତ୍ତା ଭଗବାନ ବୁଝିବେ । ଅତଏବ ରାଜା ଅନ୍ୟାୟ କଲେ ତୁମ୍ଭେମାନେ ଜଣାଅ, ସେ ବୁଝିବେ, ଭଗବାନଙ୍କୁ ଜଣାଇଲେ ଯୋଡ଼ହସ୍ତ ହେବାକୁ ହେବ । ଏଥିପାଇଁ ସମସ୍ତ ଆଙ୍ଗୁଳି ଏକତ୍ର ହେବା ଦରକାର । ଗୋଟିଏ ସହଯୋଗ ନ କଲେ ଯୋଡ଼ହସ୍ତ ହେଲା ନାହିଁ ଏବଂ ଏହି ଯୋଡ଼ହସ୍ତ ମଧ୍ୟ ତୁମ୍ଭେ ଗ୍ରହଣ କରିବ ନାହିଁ – ଭଗବାନ ତ ଦୂରର କଥା ।

ତାଙ୍କର ପ୍ରତିନିଧି, କର୍ମଚାରୀମାନେ ତୁମ୍ଭପ୍ରତି ଅତ୍ୟାଚାର କରୁଅଛନ୍ତି । ତେବେ ସେମାନଙ୍କୁ ଚାପୁଡ଼ା ମାର – ଅର୍ଥାତ୍ ସମସ୍ତ ଆଙ୍ଗୁଳି ଏକତ୍ର କରି କାର୍ଯ୍ୟ କର – ଏହି ଏକତା କ'ଣ ? ତୁମ୍ଭେମାନେ ଏକାନ୍ତ ବସି ସମସ୍ତ ବିଷୟ ଉତ୍ତମରୂପେ ଆଲୋଚନା କର, ଦେଖିବ ଯେ ତୁମ୍ଭେମାନେ ସମସ୍ତେ ଏକମତ ହେଲ । ତା'ପରେ ଭଗବାନଙ୍କୁ ରାଜାଙ୍କ ସମ୍ବନ୍ଧେ, ରାଜାଙ୍କୁ ତାଙ୍କର କର୍ମଚାରୀଙ୍କ ସମ୍ବନ୍ଧେ ଜଣାଅ । ତାହାର ଫଳ ଅଚିରାତ ପାଇବ । ଏହି ଆଲୋଚନାରେ କେହି ଯଦ୍ୟପି ଅନ୍ୟ ମତ ହୁଅ, ତୁମ୍ଭେମାନେ ଭ୍ରମ ସଂଶୋଧନ କରି ପୁନରାଲୋଚନ କର । ଏପରି କଲେ ତୁମ ରାମରାଜ୍ୟ ତୁମ୍ଭେମାନେ ହାତେ ହାତେ ପାଇବ ।

ଆଉ ରାଜା ସାହେବ, ଆପଣଙ୍କୁ ମୁଁ କଣ ବେଶୀ କହିବି – ଆପଣ ରାଜା ପରିବାରରେ ଜନ୍ମ ହୋଇନଥିଲେ; ଆପଣଙ୍କୁ ଭଗବାନ ରାଜାପ୍ରାସାଦକୁ ଅଣାଇଛନ୍ତି । ରାଜ୍ୟର ଦାୟିତ୍ୱ ରାଜାଙ୍କର; ଆପଣ ସେହିପରି ପ୍ରଜାମାନଙ୍କ ପାଇଁ ଦାୟୀ । ପିତାର କର୍ତ୍ତବ୍ୟରେ ପିତା ଅବହେଳା କଲେ ପିଲାମାନେ ନାନାପ୍ରକାର କ୍ଳେଶ ପାଆନ୍ତି ଓ ପରିବାର ସୁଖ ଓ ସ୍ୱାଚ୍ଛନ୍ଦ୍ୟରେ ରହେ ନାହିଁ । ସେହିପରି ଆପଣ ପ୍ରତି ପ୍ରଜା ବିଷୟରେ ତତ୍ତ୍ୱ ନିଅନ୍ତୁ । ଆପଣଙ୍କର 'ରାମରାଜ୍ୟ' ହେବ । ଯେଉଁ ଭଗବାନ ଆପଣଙ୍କୁ ସାଧାରଣ ଗୃହରୁ ଟାଣି ଆଣି ସିଂହାସନରେ ବସାଇଅଛନ୍ତି ତାଙ୍କର ଉଦ୍ଦେଶ୍ୟ ସାଧନ ପାଇଁ ଆପଣ ଉପଯୁକ୍ତ ବ୍ୟକ୍ତି; ଏହା ତାଙ୍କର ଅଭିଳାଷ, ଏହି ବିଷୟ ବିଶ୍ୱାସ କରନ୍ତୁ ।

ମୋର ଆଉ ବେଶୀ କିଛି କହିବାକୁ ନାହିଁ । ମୁଁ ଏଥର ବିଦାୟ ନେଉଛି ।

***

# ପ୍ରାକ୍-କଥନ

ମଧୁସୂଦନ ଦାସଙ୍କ ଲେଖାର ମାଧ୍ୟମ ଥିଲା ଇଂରାଜୀ । **ଉତ୍କଳ ଦୀପିକା** ଓ ଇଂରାଜୀ ସମ୍ବାଦପତ୍ରଗୁଡ଼ିକରେ ନିଜ ନାମ ଓ ଛଦ୍ମନାମରେ ପ୍ରକାଶିତ ତାଙ୍କ ଇଂରାଜୀ ପତ୍ର ଓ ପ୍ରବନ୍ଧଗୁଡ଼ିକୁ ସଂକଳିତ କଲେ ଏକ ବୃହତ୍ ଗ୍ରନ୍ଥ ହେବ । ୧୯୦୩ ମସିହା ଜାନୁୟାରୀ ୨୪ ତାରିଖରୁ (୩୮ବର୍ଷ ୪ର୍ଥ ସଂଖ୍ୟାରୁ) **ଉତ୍କଳ ଦୀପିକା**ର ଇଂରାଜୀ ସ୍ତମ୍ଭ ଲେଖୁଥିଲେ ମଧୁସୂଦନ ଓ The Oriya ସମ୍ବାଦପତ୍ର ମଧ୍ୟ ସେ ବର୍ଷକ ପାଇଁ ସମ୍ପାଦନା କରୁଥିଲେ । ଓଡ଼ିଆ ଭାଷାରେ ଲିପିବଦ୍ଧ ମଧୁସୂଦନଙ୍କର ରଚନାବଳୀ ସ୍ୱଳ୍ପ । ଏହି ସ୍ୱଳ୍ପ ରଚନାବଳୀ ତିନୋଟି ଉପବିଭାଗରେ ବିଭକ୍ତ କରାଯାଇ ଉପସ୍ଥାପିତ – (କ) ପ୍ରବନ୍ଧ, ପତ୍ର ଓ ପ୍ରଚାରପତ୍ର ; (ଖ) ମନ୍ତବ୍ୟ ଓ ପ୍ରତିକ୍ରିୟା; (ଗ) ବିଜ୍ଞାପନ । ଏହା ବାହାରେ ଉତ୍କଳ ଟାନେରୀ ସମ୍ପର୍କିତ ଏକ ବିଜ୍ଞାପନ ଓ ଅନ୍ୟ ତିନୋଟି ରଚନା '**ପରିଶିଷ୍ଟ**' ଭାବରେ ସଂଯୋଜିତ ।

ପ୍ରଥମ ଉପବିଭାଗରେ ଦଶଟି ରଚନା ସଂକଳିତ । ସେଗୁଡ଼ିକ ନିମ୍ନଲିଖିତ ଉତ୍ସରୁ ସଂଗୃହୀତ । 'ବିଚାର ଓ ଶାସନର ଭାର ଏକ ହାତରେ ରହିବା ଉଚିତ ନୁହେଁ' ମଧୁସୂଦନ ଓ ଗୌରୀଶଙ୍କରଙ୍କର ଦ୍ୱାରା ମିଳିତ ଭାବେ ଲିଖିତ ଏକ ପ୍ରବନ୍ଧ । 'ଉତ୍କଳସଭା'ର ସଭାପତି ଓ ସମ୍ପାଦକ ଭାବରେ ଏମାନେ ସରକାରଙ୍କର ଏକ **ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି**କୁ ପ୍ରତିବାଦ କରିଛନ୍ତି । **ସମ୍ପୃକ୍ତ ପ୍ରବନ୍ଧ ଉତ୍କଳ ଦୀପିକା** - ୩୫।୨୭ (୦୭.୭.୧୯୦୦)ରେ ପ୍ରକାଶିତ । ବାଳକୃଷ୍ଣ ପଟ୍ଟନାୟକଙ୍କୁ ଲିଖିତପତ୍ରର ଏକ ପ୍ରତିଲିପି ପ୍ରଥମେ ପ୍ରକାଶିତ ହୋଇଥିଲା ସ୍ୱର୍ଗତ ନବକିଶୋର ଦାସଙ୍କ **ଉତ୍କଳ ଗୌରବ ମଧୁସୂଦନ** ପୁସ୍ତକରେ । ତୃତୀୟ ରଚନାଟି 'ଓଡ଼ିଆ' ଛଦ୍ମନାମରେ 'ସମ୍ପାଦକଙ୍କୁ ପତ୍ର' ସ୍ତମ୍ଭରେ ପ୍ରକାଶିତ । 'An Uriya' ତଥା 'ଓଡ଼ିଆ' ମଧୁସୂଦନଙ୍କର ଏକ ପରିଚିତ ଛଦ୍ମନାମ ଓ ଏଭଳି ଏକ ରଚନା ସେହି ସମୟରେ ମଧୁସୂଦନଙ୍କ ବ୍ୟତୀତ ଅନ୍ୟ କାହାରି ପକ୍ଷରେ ଲେଖିବା ସମ୍ଭବପର ନୁହେଁ । ଏହା **ଉତ୍କଳ ଦୀପିକା** - ୪୧ । ୨ (୧୩.୦୧.୧୯୦୬)ରେ ପ୍ରକାଶିତ ହୋଇଥିଲା । ଚତୁର୍ଥ ରଚନାଟି ମଧ୍ୟ 'ସମ୍ପାଦକଙ୍କୁ ପତ୍ର' ଆକାରରେ ପ୍ରଥମେ **ଉତ୍କଳ-ଦୀପିକା**ରେ ପ୍ରକାଶିତ । ସମକାଳରେ ଏହା ତାଳଚେରରୁ ପ୍ରକାଶିତ **ଗଡ଼ଜାତ ବାସିନୀ**-୬।୩(୧୮.୦୧.୧୯୦୮)ରେ ପୁନଃମୁଦ୍ରିତ ହୋଇଥିଲା । **ଉତ୍କଳ ଦୀପିକା** ୧୯୦୮ର ଫାଇଲ୍ ଆଜି ଉପଲବ୍ଧ ନୁହେଁ । ତେଣୁ **ଗଡ଼ଜାତ ବାସିନୀ**ରେ ପୁନଃମୁଦ୍ରିତ ଲେଖାକୁ ଏଠାରେ ପତ୍ରସ୍ଥ କରାଯାଇଛି । **ଗଡ଼ଜାତବାସିନୀ**ରେ ପ୍ରକାଶିତ ଲେଖାର କେତେକ ଅଂଶ ନଷ୍ଟ ହୋଇଯାଇଛି । ସେହି ଅଂଶର ପାଠ '...' ଚିହ୍ନ ଦ୍ୱାରା ସୂଚୀତ । ପଞ୍ଚମ ରଚନାଟି ଏକ ପ୍ରଚାରପତ୍ର ଓ ପ୍ରଥମ ମହାଯୁଦ୍ଧ ବେଳେ ବ୍ରିଟିଶ୍ ସରକାରଙ୍କୁ ସହାୟତା କରିବା ଉଦ୍ଦେଶ୍ୟରେ ଯୁଦ୍ଧ ପାଣ୍ଠିକୁ

ମୁକ୍ତ ହସ୍ତରେ ଦାନ କରିବା ପାଇଁ ଜନସାଧାରଣଙ୍କୁ ପ୍ରଚୋଦିତ କରିବା ଲକ୍ଷ୍ୟ ନେଇ ଲିଖିତ। ଏହି ପ୍ରଚାରପତ୍ର ଓଡ଼ିଶା ମିଶନ ପ୍ରେସ୍‌ରେ ତା୨୨.୪.୧୯୧୭ରିଖରେ ମୁଦ୍ରିତ । ଷଷ୍ଠ ରଚନାଟି 'ସମ୍ପାଦକଙ୍କୁ ପତ୍ର' ଆକାରରେ ବେନାମୀରେ ଲିଖିତ ଓ **ଉତ୍କଳ ଦୀପିକା ୫୫** । ୩୧ (୩୧.୭.୧୯୨୦) ସଂଖ୍ୟାରେ ପ୍ରକାଶିତ । ସପ୍ତମ ରଚନା 'ଜମିଦାରୀରେ ଲାଭ କେତେ ?' କୌଣସି ନାମ ନ ଥାଇ **ଉତ୍କଳ-ଦୀପିକା-**୫୯।୨୯(୧୯.୭.୧୯୨୪)ରେ ପ୍ରକାଶିତ ହୋଇଥିଲା । ନାମ ନ ଥିଲେ ମଧ୍ୟ ଏହା ଯେ ମଧୁବାବୁଙ୍କର ରଚନା – ତାହା ବିଷୟବସ୍ତୁ, ଯୁକ୍ତି, ଭାଷା ତଥା ଅନ୍ୟାନ୍ୟ ପାରିପାର୍ଶ୍ୱିକ କାରଣରୁ ସ୍ପଷ୍ଟ ହୁଏ । ନବମ ରଚନାଟି 'ସମ୍ପାଦକଙ୍କ ପତ୍ର' ଭାବରେ ଲିଖିତ ଓ **ଉତ୍କଳ-ଦୀପିକା-**୫୯।୩୧(୦୨.୮.୧୯୨୪)ରେ ପ୍ରଥମେ ପ୍ରକାଶିତ । ପଣ୍ଡିତ ଗୋପବନ୍ଧୁଙ୍କର ଏକ ପତ୍ର ଏହା ସହ ମଧ ସଂଯୁକ୍ତ ହୋଇଥିଲା । ଏହି ପତ୍ର ଦୁଇଟି ସମକାଳରେ ଗୋପବନ୍ଧୁଙ୍କ **ସମାଜ** (୨୨.୮.୧୯୨୪)ରେ ପୁନଃମୁଦ୍ରିତ । ପଣ୍ଡିତ ସୂର୍ଯ୍ୟନାରାୟଣ ଏହି ପତ୍ରଟିରେ ସାମାନ୍ୟ ପରିବର୍ତ୍ତନ କରି **ଦେଶପ୍ରାଣ ମଧୁସୂଦନ** (ପୃ.୨୧୩-୨୧୬)ରେ ପୁନଃମୁଦ୍ରିତ କରିଥିଲେ । ବର୍ତ୍ତମାନ ସଂକଳନରେ **ଉତ୍କଳ-ଦୀପିକାର** ପାଠ ଉଦ୍ଧୃତ । ନବମ ଲେଖାଟି 'ଓଡ଼ିଶାର ବର୍ତ୍ତମାନ ଶୋଚନୀୟ ଅବସ୍ଥା' ଏକ ପ୍ରବନ୍ଧରୂପରେ ମଧୁସୂଦନଙ୍କ ନାମ ଥାଇ **ଉତ୍କଳ-ଦୀପିକା-**୫୯।୪୪(୧୫.୧୧.୧୯୨୪)ରେ ପ୍ରକାଶିତ । ସମ୍ପାଦକୀୟ ସ୍ତମ୍ଭ ତଥା ପାଠକମାନଙ୍କ ଦ୍ୱାରା ପ୍ରେରିତପତ୍ରରେ ଏହି ଲେଖାଟିକୁ ଖୁବ୍ ତାରିଫ କରାଯାଇଥିଲା । ଦଶମ ରଚନାଟି ଏକ ପ୍ରଚାରପତ୍ର ଓ ଜାମସେଦପୁର ତଥା ବିଚ୍ଛିନ୍ନାଞ୍ଚଳର ଓଡ଼ିଆମାନଙ୍କ ମଧ୍ୟରେ ଓଡ଼ିଆତ୍ୱ ଜାଗ୍ରତ କରିବା ଉଦ୍ଦେଶ୍ୟରେ ଲିଖିତ । ଏହି ପ୍ରଚାରପତ୍ରଟି **ଓଡ଼ିଶାର ଜନକ ମଧୁସୂଦନ**ରେ ସ୍ଥାନିତ ଶ୍ରୀ ଶରତଚନ୍ଦ୍ର ଜେନାଙ୍କ ଦ୍ୱାରା ଲିଖିତ 'ଓଡ଼ିଶା ପ୍ରଦେଶ ଗଠନ ଓ ଉପାନ୍ତ ଅଞ୍ଚଳରେ ଶ୍ରମିକ ସଂଗଠନ: ମଧୁବାବୁଙ୍କ ଭୂମିକା' ପ୍ରବନ୍ଧରେ ପ୍ରଥମେ ସ୍ଥାନିତ ହୋଇଥିଲା (ପୃ.୭୨-୭୪) । ପ୍ରସ୍ତୁତ ସଂକଳନରେ ସ୍ଥାନିତ ରଚନା ଶ୍ରୀ ଜେନାଙ୍କ ପ୍ରବନ୍ଧରୁ ଗୃହୀତ ।

ଦ୍ୱିତୀୟ ଉପବିଭାଗରେ ତିନୋଟି ପ୍ରତିକ୍ରିୟା /ବିବୃତି ସ୍ଥାନିତ । ଭିନ୍ନ ଭିନ୍ନ ପ୍ରସଙ୍ଗରେ ମଧୁସୂଦନ ଯେଉଁ ଭାଷାରେ ପ୍ରତିକ୍ରିୟା ପ୍ରକାଶ କରିଛନ୍ତି ଓ ତାହାର ଲିଖିତ ରୂପ ଉପଲବ୍ଧ,ସେହିଭଳି ଗୁରୁତ୍ୱପୂର୍ଣ୍ଣ ତିନୋଟି ପ୍ରତିକ୍ରିୟା ଏଠାରେ ଉପସ୍ଥାପିତ । ୧୯୨୧ ମସିହାରେ ସମଗ୍ର ଭାରତ ଯେତେବେଳେ ଗାନ୍ଧିଜୀଙ୍କ ଅସହଯୋଗ ଡାକରା ପାଇଁ ଉଦ୍‌କର୍ଣ୍ଣ, ସେତେବେଳେ ମଧୁସୂଦନ ଇଂରେଜ ସରକାରଙ୍କର ମନ୍ତ୍ରୀ ହୋଇ ସହଯୋଗର ହାତ ବଢ଼ାଇଥିଲେ । ତେଣୁ ଅସହଯୋଗ ଆନ୍ଦୋଳନରେ ଯୋଗ ନ ଦେବାର କାରଣ ପ୍ରଥମ ପ୍ରତିକ୍ରିୟାରେ ବ୍ୟକ୍ତ । ସମ୍ପୃକ୍ତ ବିବୃତି/ ପ୍ରତିକ୍ରିୟା ପଣ୍ଡିତ

ସୂର୍ଯ୍ୟନାରାୟଣ ଦାଶଙ୍କର **ଦେଶପ୍ରାଣ ମଧୁସୂଦନ** (ପୃ.୫୧୯)ରୁ ଗୃହୀତ । ମତପାର୍ଥକ୍ୟ ଥିଲେ ବି ମଧୁସୂଦନ ଗୋପବନ୍ଧୁଙ୍କୁ ଗଭୀର ଶ୍ରଦ୍ଧା କରୁଥିଲେ ଓ ଗୋପବନ୍ଧୁଙ୍କର ମଧ ମଧୁସୂଦନଙ୍କ ପ୍ରତି ଅନୁରୂପ ସମ୍ମାନ ଥିଲା । ୧୯୨୮ ମସିହା ଜୁନ୍ ମାସ ୧୭ ତାରିଖରେ ଗୋପବନ୍ଧୁଙ୍କର ଅକାଳ ବିୟୋଗ ମଧୁବାବୁଙ୍କୁ ଗଭୀର ଭାବେ ମ୍ରିୟମାଣ କରିଥିଲା । ଗୋପବନ୍ଧୁଙ୍କ ଦେହାନ୍ତ ପରେ ମଧୁସୂଦନ ପ୍ରେରଣ କରିଥିବା ଶୋକବାର୍ତ୍ତା ଏଠାରେ ଦ୍ୱିତୀୟ ଉପାଦାନ ଭାବରେ ଉପସ୍ଥାପିତ ଓ ଏହା ପଣ୍ଡିତ ଦାର୍ଶଙ୍କ **ଦେଶପ୍ରାଣ ମଧୁସୂଦନ** (ପୃ.୪୪୩) ପୁସ୍ତକରୁ ଉଦ୍ଧୃତ । ୧୯୩୧ ମସିହାରେ କଟକରେ ମଧୁସୂଦନ ଓକିଲାତି କରିବାର ପଚାଶବର୍ଷ ପୂର୍ଣ୍ଣ ହୋଇଥିଲା । ସେହି ଉପଲକ୍ଷେ କଟକ ଓକିଲ ସଂଘ ତାଙ୍କୁ ସମ୍ବର୍ଦ୍ଧିତ କରିବା ପାଇଁ ଅନୁମତି ମାଗିଥିଲେ । ଏହାର ଉତ୍ତରରେ ମଧୁସୂଦନ ଯାହା କହିଥିଲେ, ଏହି ଉପବିଭାଗର ତାହା ତୃତୀୟ ଉପାଦାନ । ସମ୍ପୃକ୍ତ ପ୍ରତିକ୍ରିୟା ସ୍ୱର୍ଗତ ସୂର୍ଯ୍ୟନାରାୟଣ ଦାଶଙ୍କ **ଦେଶପ୍ରାଣ ମଧୁସୂଦନ** (ପୃ.୪୫୪-୪୫୫)ରୁ ଗୃହୀତ ।

ତୃତୀୟ ଉପବିଭାଗରେ ମଧୁସୂଦନଙ୍କ ଦ୍ୱାରା ବିଭିନ୍ନ ସମୟରେ ଓଡ଼ିଆ ଭାଷାରେ ଦିଆଯାଇଥିବା ଚଉଦଟି ବିଜ୍ଞାପନ ସ୍ଥାନିତ । ସମସ୍ତ ବିଜ୍ଞାପନ **ଉତ୍କଳ ଦୀପିକା** ପୃଷ୍ଠାରୁ ସଂଗୃହୀତ । କେତେକ ବିଜ୍ଞାପନ ଏକାଧିକ ସଂଖ୍ୟାରେ ମଧ ପ୍ରକାଶିତ । ଏଗୁଡ଼ିକ ନିମ୍ନ କ୍ରମରେ ପ୍ରକାଶିତ : (୧) ୨୫ ବର୍ଷ ୪୬ ସଂଖ୍ୟା (୨୯.୧୧.୧୮୯୦); (୨) ୨୫ ବର୍ଷ ୪୮ ସଂଖ୍ୟା (୧୩.୧୨.୧୮୯୦); (୩) ୨୯ ବର୍ଷ ୧୨ଶ ସଂଖ୍ୟା (୨୪.୩.୧୮୯୪); (୪) ୩୨ ବର୍ଷ ୫ମ ସଂଖ୍ୟା (୩୦.୦୧.୧୮୯୭); (୫) ୩୩ ବର୍ଷ ୧୭ଶ ସଂଖ୍ୟା (୨୩.୪.୧୮୯୮); (୬) ୩୩ ବର୍ଷ ୧୮ଶ ସଂଖ୍ୟା (୩୦.୪.୧୮୯୮); (୭) ୩୩ ବର୍ଷ ୨୭ଶ ସଂଖ୍ୟା (୦୨.୭.୧୮୯୮); (୮) ୩୫ ବର୍ଷ ୪୪ ସଂଖ୍ୟା (୧୭.୧୧.୧୯୦୦); (୯) ୩୯ବର୍ଷ ୪୫ ଶ ସଂଖ୍ୟା(୧୯.୧୧.୧୯୦୪); (୧୦) ୪୧ବର୍ଷ ୨ୟ ସଂଖ୍ୟା (୧୩.୦୧.୧୯୦୬); (୧୧) ୪୯ବର୍ଷ ୪୫ଶ ସଂଖ୍ୟା (୨୧.୧୧.୧୯୧୪); (୧୨) ୫୨ବର୍ଷ ୨୬ଶ ସଂଖ୍ୟା(୦୨.୬.୧୯୧୭);(୧୩) ୫୯ବର୍ଷ ୨୭ଶ ସଂଖ୍ୟା(୦୫.୭.୧୯୨୪); (୧୪) ୫୯ ବର୍ଷ ୨୯ଶ ସଂଖ୍ୟା(୧୯.୭.୧୯୨୪) । ଏହି ବିଜ୍ଞାପନଗୁଡ଼ିକରୁ ଓକିଲ, ସଂଗଠକ ଓ ଶିଳ୍ପୋଦ୍ୟୋଗୀ ମଧୁସୂଦନଙ୍କର ଏକ ସ୍ଥୂଳ ପରିଚୟ ମିଳିପାରିବ ।

ପୂର୍ବୋକ୍ତ ତିନୋଟି ଉପବିଭାଗ ବ୍ୟତୀତ ଏଇ ବିଭାଗରେ ରହିଛି ଚାରୋଟି ପରିଶିଷ୍ଟ । ସମ୍ପୃକ୍ତ ପରିଶିଷ୍ଟଗୁଡ଼ିକରେ ଉତ୍କଳ ଟାନେରୀର ଗୋଟିଏ ବିଜ୍ଞାପନ, ଦୁଇଟି ବିବରଣୀ ଓ ଉତ୍କଳ ଟାନେରୀର ଶ୍ରମିକମାନଙ୍କ ଦ୍ୱାରା ପ୍ରଦତ୍ତ ଏକ ମାନପତ୍ର ମୁଦ୍ରିତ । ଉକ୍ତ ବିଜ୍ଞାପନ, ବିବରଣୀ ଓ ମାନପତ୍ର – ସମସ୍ତ ଉତ୍କଳ ଟାନେରୀ ସମ୍ପର୍କିତ । ସମ୍ପୃକ୍ତ

ବିଜ୍ଞାପନ ପ୍ରକାଶିତ ହୋଇଥିଲା **ଉତ୍କଳ ଦୀପିକା**- ୪୪ । ୧୬ (୧୭.୪.୧୯୦୯) ସଂଖ୍ୟାରେ । ପ୍ରଥମ ବିବରଣୀ ପ୍ରକାଶିତ ହୋଇଥିଲା **ଉତ୍କଳ ଦୀପିକାର** – ୫୮ବର୍ଷ ୩୯ମ ସଂଖ୍ୟାରେ (୨୯.୯.୧୯୨୩) । ସେହି ସଂଖ୍ୟାର ଅତିରିକ୍ତ ପୃଷ୍ଠାରେ ଉତ୍କଳ ଟାନେରୀର ଆଉ ଏକ ବିଜ୍ଞାପନ ପ୍ରକାଶିତ । ସମ୍ପୃକ୍ତ ବିଜ୍ଞାପନ ପ୍ରଥମ ବିଜ୍ଞାନ ଅନୁରୂପ (ଅଳ୍ପ କେତେକ ବ୍ୟତିକ୍ରମ ବ୍ୟତୀତ) ହୋଇଥିବାରୁ ତାହାକୁ ବର୍ତ୍ତମାନର ସଂକଳନରେ ପୁନଃମୁଦ୍ରଣ କରାଯାଇନାହିଁ । ଦ୍ୱିତୀୟ ବିବରଣୀ ପ୍ରକାଶିତ ହୋଇଥିଲା **ଉତ୍କଳ-ଦୀପିକାର** ୫୯ ବର୍ଷ ୨୭ଶ ସଂଖ୍ୟା (୦୫.୭.୧୯୨୪)ରେ। ମାନପତ୍ରଟି **ଉତ୍କଳ ଦୀପିକା**–୬୦।୩୪(୨୨.୮.୧୯୨୫)ରେ ପ୍ରକାଶିତ । ବିଜ୍ଞାପନ, ବିବରଣୀ ଓ ମାନପତ୍ର – ନାମ ନ ଥିଲେ ମଧ – ଏସବୁଗୁଡ଼ିକର ଲେଖକ ଯେ ମଧୁସୂଦନ ଏଥିରେ ସନ୍ଦେହ ନାହିଁ ।

**ଦେବେନ୍ଦ୍ର କୁମାର ଦାଶ**

***

# କ. ପ୍ରବନ୍ଧ ଓ ପତ୍ରାବଳୀ

## (୧)

## ବିଚାର ଓ ଶାସନର ଭାର ଏକ ହାତରେ ରହିବା ଉଚିତ ନୁହେଁ

ପୃଥିବୀର କୌଣସି ସୁଶାସିତ ରାଜ୍ୟରେ ବିଚାର ଓ ଶାସନର ଭାର ଏକ ବ୍ୟକ୍ତିର ହାତରେ ନାହିଁ । ସୁଶାସନ ଏବଂ ସଭ୍ୟତାରେ ଇଂଲଣ୍ଡ ଜଗଦ୍‌ବିଖ୍ୟାତ । ଭାରତ ସେହି ଇଂଲଣ୍ଡର ଶାସନାଧୀନ ଏବଂ ଇଂଲଣ୍ଡର ଅନେକାନେକ ହିତକର ରାଜନୀତି ଏ ଦେଶର ଉନ୍ନତି ନିମନ୍ତେ ଏଠାରେ ପ୍ରଚଳିତ ହୋଇଥିଲେ ହେଁ ବଡ଼ ଦୁଃଖର ବିଷୟ ଯେ ଅବଧି ବିଚାର ଓ ଶାସନର ଭାର ଏକ କର୍ମଚାରୀ ହାତରେ ରହିଅଛି । ଅର୍ଥାତ୍ ଏଠାରେ ଅନେକ ସ୍ଥଳେ ଯେ ବିଚାରକର୍ତ୍ତା ସେଇ ପୁଣି ଶାସନକର୍ତ୍ତା । ଏଥିରେ ପ୍ରଧାନ ଉଦାହରଣ ଜିଲ୍ଲାର କଲେକ୍‌ଟର ମାଜିଷ୍ଟ୍ରେଟ୍ । ଏହି ଜିଲ୍ଲା ହାକିମ କଲେକ୍‌ଟର ସ୍ୱରୂପ ମାଲଗୁଜାରି ପଥ ପ୍ରଦେଶୀୟ କର, ଇନକମ୍ ଟିକସ, ଲବଣ ଅବକାରି ଇତ୍ୟାଦି ସମସ୍ତ ସରକାରୀ ପାଉଣା ଆଦାୟ ଓ ତତ୍‌ସମ୍ପର୍କୀୟ ବିଷୟମାନ ବୁଝାସୁଝା କରିବେ ଏବଂ ମାଜିଷ୍ଟ୍ରେଟ୍ ସ୍ୱରୂପ ଦେଶର ଧନ, ପ୍ରାଣ ଓ ଶାନ୍ତିରକ୍ଷା, ଅତ୍ୟାଚାର ଉତ୍ପୀଡ଼ନ ନିବାରଣ ଏବଂ ଅପରାଧିର ସନ୍ଧାନ ଓ ଦଣ୍ଡ ନିମନ୍ତେ ଗବର୍ଣ୍ଣମେଣ୍ଟଙ୍କ ଠାରେ ଦାୟୀ ଅଟନ୍ତି । ଅପରାଧ ନିବାରଣ ଏବଂ ଅନୁସନ୍ଧାନ ପୁଲିସର କାର୍ଯ୍ୟ ସତ୍ୟ । ମାତ୍ର ପୁଲିସ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କର ଆଦେଶ ଓ ପରାମର୍ଶରେ କାର୍ଯ୍ୟ କରିବାକୁ ବାଧ ଏବଂ ନ କଲେ ନ ଚଳେ । କୌଣସି ପ୍ରକାର ଅଶାନ୍ତି ବା ଗୁରୁତର ଅପରାଧ ଘଟିଲେ ତହିଁର କିପରି ଅନୁସନ୍ଧାନ ହେଲା ଓ ପୁଲିସ ଯାହାକୁ ଅପରାଧୀ ବୋଲି ସନ୍ଦେହ କଲେ ତାହା ବିରୁଦ୍ଧରେ କି କି ପ୍ରମାଣ ମିଳିଲା ଇତ୍ୟାଦି ସମସ୍ତ ବିଷୟ ପୁଲିସଠାରୁ ମାଜିଷ୍ଟ୍ରେଟ୍ ଅବଗତ ହୁଅନ୍ତି ଏବଂ ଏପରି ଭାବରେ ଅନେକ ମିଥ୍ୟା ଓ ସତ୍ୟ କଥା ତାହାଙ୍କର କର୍ଣ୍ଣଗୋଚର ହୁଏ । ଅତଃପର ତାହାଙ୍କ ହାତରେ ଫଉଜଦାରୀ ମୋକଦ୍ଦମାର ବିଚାର ଭାର ଥିବାରୁ ପୁଲିସ ଯାହାକୁ ଅପରାଧୀ ବୋଲି ସନ୍ଦେହ କରି ତାହାଙ୍କ ସମ୍ମୁଖରେ ଉପସ୍ଥିତ କରନ୍ତି ସେ ମିସଲରେ ବସି ତାହାର ବିଚାର କରନ୍ତି । ପୁଲିସ କର୍ମଚାରିମାନେ ତାହାଙ୍କର ଅଧୀନସ୍ଥ ଥିବାରୁ ପୁଲିସର କାର୍ଯ୍ୟ ପ୍ରକାରାନ୍ତରେ ତାହାଙ୍କର କାର୍ଯ୍ୟ ବୋଲିବାକୁ ହେବ । ସୁତରାଂ ଫଳ

ଏହି ହେଲା ଯେ ମାଜିଷ୍ଟ୍ରେଟ୍ ଯାହାକୁ ଅପରାଧୀ ବୋଲି ବିଚରାର୍ଥେ ପଠାଇଲେ ନିଜେ ତାହାର ବିଚାର କଲେ । ସବୁ ମୋକଦ୍ଦମାର ବିଚାର ସେ ନିଜେ କରନ୍ତି ନାହିଁ ତାହାଙ୍କର ଅଧୀନସ୍ଥ ଆସିଷ୍ଟାଣ୍ଟ ବା ଡେପୁଟୀ ମାଜିଷ୍ଟ୍ରେଟଙ୍କୁ ଅନେକ ମୋକଦ୍ଦମାର ବିଚାର ଭାର ଦିଅନ୍ତି । ମାତ୍ର ସେମାନେ ତାହାଙ୍କର ଅଧୀନ ଓ ସେମାନଙ୍କର ସୁଖ୍ୟାତି ଓ ଉନ୍ନତି ତାହାଙ୍କ ହାତରେ ଥିବାରୁ ଅନେକ ସମୟରେ ତାହାଙ୍କର ଆଦେଶ ଓ ଇଙ୍ଗିତ ଅନୁସାରେ ବିଚାର କରିବା ଅସ୍ୱାଭାବିକ ନୁହେଁ । ସୁତରାଂ ସେ ନିଜେ ବିଚାର କରନ୍ତୁ ବା ଡେପୁଟୀ ପ୍ରଭୃତି କରନ୍ତୁ ଅନେକ ସ୍ଥଳେ କାର୍ଯ୍ୟତଃ ସେ ନିଜେ କଲା ପ୍ରାୟ ହୁଅଇ । ଏଥିରେ ଅନେକ ସ୍ଥଳେ ସୁବିଚାର ନ ହୋଇ ଅବିଚାର ହୁଅଇ । ଆଇନ ମତେ ଅଦାଲତରେ ଯେ ବିଚାର କରିବେ ସେ ନିରପେକ୍ଷ ଓ ଅବିଚଳିତ ଚିତ୍ତ ହେବା ଆବଶ୍ୟକ । ଅଦାଲତରେ ଯେଉଁ ପ୍ରମାଣ ଉପସ୍ଥିତ ହେବ କେବଳ ତାହା ଦେଖି ବିଚାର କର୍ତ୍ତା ବିଚାର କରିବେ । ମାତ୍ର ମାଜିଷ୍ଟ୍ରେଟ୍ ପୂର୍ବରୁ ମୋକଦ୍ଦମା ସମ୍ବନ୍ଧରେ ଅନେକ କଥା ଶୁଣିଥିବାରୁ ତାହାଙ୍କର ଗୋଟିଏ ଧାରଣା ହୋଇଥାଏ । ସୁତରାଂ ସେ ଯେତେ ପକ୍ଷପାତଶୂନ୍ୟ ଓ ନ୍ୟାୟପରାୟଣ ହେଉନ୍ତୁ ବା ଯେତେ ଠିକ୍ ବିଚାର କରିବାକୁ ଚେଷ୍ଟା କରନ୍ତୁ ପଛକେ ଅଭିଯୁକ୍ତ ବ୍ୟକ୍ତି ପ୍ରତି ସର୍ବସଂସ୍କାରଶୂନ୍ୟ ହୋଇ ବିଚାର କରିବା ସର୍ବଦା ତାହାଙ୍କ ପକ୍ଷରେ ସମ୍ଭବ ହୁଅଇ ନାହିଁ । ଏପରି ଯେଉଁ ମାଜିଷ୍ଟ୍ରେଟ୍ ବଡ଼ କ୍ଷମତାପ୍ରିୟ, ଯେ କୌଣସି କାରଣରୁ କାହାରି ପ୍ରତି ଅସନ୍ତୁଷ୍ଟ ଥାନ୍ତି ଏବଂ ଯେ ଆପଣା ଅଧୀନସ୍ଥ ପୁଲିସ କର୍ମଚାରିର ପକ୍ଷ ସମର୍ଥନ କରିବାକୁ ସ୍ୱଭାବତଃ ବ୍ୟସ୍ତ ତାହାଙ୍କ ହାତରେ ସୁବିଚାରର ଆଶା ନିତାନ୍ତ ଊଣା । ଯେବେ ଏ ଦେଶର ପୁଲିସ ଭଲ ହୋଇଥାନ୍ତା ତେବେ ଗୋଟାଏ କଥା ଥିଲା । ମାତ୍ର ପୁଲିସର ଯେପରି [ସେପରି] ସୁଖ୍ୟାତି ନାହିଁ ବରଂ ଅଧିକାଂଶ ଲୋକର ବିଶ୍ୱାସ ଯେ ପୁଲିସବାଲାଙ୍କ ଅସାଧ କିଛି ନାହିଁ । ସେହି ହେତୁ ପୁଲିସର ନାମକୁ ଅନେକ ଡରନ୍ତି । ଅନେକ ସମୟରେ ପୁଲିସ ନିର୍ଦ୍ଦୋଷକୁ ଦୋଷୀ ବୋଲି ଏକରାର କରାଇବାର ମଧ ଦେଖାଯାଇଅଛି । ପ୍ରକୃତରେ ପ୍ରାୟ ପ୍ରତିବର୍ଷ ପ୍ରତି ଜିଲ୍ଲାରେ ସେପରି ଘଟିବାର ଉଦାହରଣ ପ୍ରତ୍ୟକ୍ଷ ହୋଇଅଛି ଏବଂ ନିକଟରେ ଛପରା ଜିଲ୍ଲାର ନରସିଂହ ସିଂହର ମୋକଦ୍ଦମାରେ ପୁଲିସ ଓ ମାଜିଷ୍ଟ୍ରେଟ୍ [ଙ୍କର] ଯେ ସମସ୍ତ ଅନ୍ୟାୟ କାର୍ଯ୍ୟ ପ୍ରକାଶ ପାଇଅଛି ଏବଂ ଯହିଁ ନିମନ୍ତେ ସେମାନେ ବଙ୍ଗୀୟ ଏବଂ ଇଣ୍ଡିୟା ଉଭୟ ଗବର୍ଣ୍ଣମେଣ୍ଟଙ୍କ ଠାରୁ ଯଥୋଚିତ ରୂପେ ତିରସ୍କୃତ ହୋଇଅଛନ୍ତି ତହିଁରୁ ଶାସନ ଓ ବିଚାର କାର୍ଯ୍ୟ ଏକ ହାତରେ ରହିବାର ଅପକାରିତାର ଗୁରୁତର ପ୍ରମାଣ ଆଉ କି ହୋଇପାରେ ।

ଉପରଲିଖିତ ନରସିଂହର ମୋକଦ୍ଦମା ସମାଲୋଚନାରେ ମାହାମାନ୍ୟ ବଡ଼ଲାଟ ବାହାଦୁର କହିଅଛନ୍ତି ଶାସନ ଓ ବିଚାରଭାର ପୃଥକ କରିବା ବିଷୟ ତାହାଙ୍କ ବିଚାରାଧୀନରେ ଅଛି । ତାହାଙ୍କର ଏହି ଉକ୍ତିରେ ଭାରତବାସୀଙ୍କର ବଡ଼ ସନ୍ତୋଷ

—

ଜାତ ହୋଇଅଛି ଏଥିରେ ସନ୍ଦେହ ନାହିଁ, ମାତ୍ର କାଳେ ଅନ୍ୟାନ୍ୟ ଅନେକ ଗୁରୁତର ବିଷୟ ସର୍ବଦା ତାହାଙ୍କର ଗାଢ଼ ମନୋଯୋଗ ଆକର୍ଷଣ କରୁଥିବାରୁ ଏ ବିଷୟଟି ପଛକୁ ପଡ଼ିଯାଏ ଏଥିପାଇଁ ତାହାଙ୍କୁ ବିନୀତ ଆବେଦନ ପତ୍ର ଦ୍ୱାରା ସ୍ମରଣ କରାଇଦେବା ଉଚିତ ଏବଂ ତାହାଙ୍କୁ ଜଣାଇବାର ଆବଶ୍ୟକ ଯେ ଜନସାଧାରଣ ଏ ବିଷୟରେ ଶୀଘ୍ର ପ୍ରତିକାର ଲୋଡ଼ୁ ଅଛନ୍ତି ।

ଶାସନ ଓ ବିଚାର କାର୍ଯ୍ୟ ପୃଥକ୍ ବ୍ୟକ୍ତି ହସ୍ତରେ ରଖିବାର ପ୍ରୟୋଜନ ଆମ୍ଭମାନଙ୍କର ନ୍ୟାୟବାନ ବ୍ରିଟିସ ଗବର୍ଣ୍ଣମେଣ୍ଟ ଆଜିକାଲି ବୁଝିନାହାନ୍ତି । ସନ ୧୭୯୨ ସାଲରେ ଲର୍ଡ଼ କର୍ଣ୍ଣୱାଲିସ ତହିଁର ଆବଶ୍ୟକତା ସ୍ୱୀକାର କରିଥିଲେ । ସନ୍ ୧୮୬୧ ସାଲରେ ପୁଲିସ ଆଇନ ବିଧିବଦ୍ଧ ହେବା କାଳରେ ବ୍ୟବସ୍ଥାପକ ସଭା ଶୀଘ୍ର ତହିଁର ବନ୍ଦୋବସ୍ତ ହେବାର ଆଶା ଦେଇଥିଲେ । ଏପରି ଡଫରିନ ପ୍ରଭୃତି ବଡ଼ଲାଟମାନେ, ସାର୍ ଜନ ଗ୍ରାଣ୍ଟ, ସାର ସିସିଲ ବଡ଼ିନି, ସାର ଷ୍ଟୁବାର୍ଟ ବେଲି ପ୍ରଭୃତି ଛୋଟଲାଟମାନେ, ସାର ବାରନ୍ସ ପିକକ, ସାର ରିଚାର୍ଡ଼ କାଉଚ, ସାର ଜନ ଫିୟର ପ୍ରଭୃତି ବିଖ୍ୟାତ ହାଇକୋର୍ଟ ଜଜ୍‌ମାନେ ଏବଂ ଅନ୍ୟାନ୍ୟ ଅନେକ ଇଂରାଜ ଏବଂ ଦେଶୀୟ ବିଚକ୍ଷଣ ଉଚ୍ଚପଦସ୍ଥ ବିଚାରପତି ଓ ଅନ୍ୟ କର୍ମଚାରିମାନେ ସମୟ ସମୟରେ ସେହି ମତର ପୋଷକତା କରି ବିଚାର ଓ ଶାସନ କ୍ଷମତା ପୃଥକ୍ ହସ୍ତରେ ନ୍ୟସ୍ତ କରିବା କାରଣ ପରାମର୍ଶ ଦେଇଅଛନ୍ତି । ତଥାଚ ଏ ପର୍ଯ୍ୟନ୍ତ ସେହି ହିତକର ପ୍ରସ୍ତାବଟି କାର୍ଯ୍ୟରେ ପରିଣତ ହୋଇନାହିଁ ତହିଁର କାରଣ ଏହି କି କେତେକ ରାଜକର୍ମଚାରୀ ମନେ କରନ୍ତି ଯେ ତଦ୍ୱାରା ଜିଲ୍ଲା ମାଜିଷ୍ଟ୍ରେଟଙ୍କର ଆଧିପତ୍ୟ ଖର୍ବ ହେବ ଏବଂ ସରକାରଙ୍କର ବ୍ୟୟ ବୃଦ୍ଧି ହେବ ।

ବିବେଚନା କରି ଦେଖିଲେ ଉପରଲିଖିତ ଦୁଇକାରଣ ମଧ୍ୟରୁ କୌଣସିଟି ପ୍ରବଳ ନୁହେଁ । ଜିଲ୍ଲାର କଲେକ୍‌ଟର ମାଜିଷ୍ଟ୍ରେଟ୍ ଜିଲ୍ଲାର ହର୍ତ୍ତାକର୍ତ୍ତା ବୋଲି ଲୋକସମାଜରେ ପରିଚିତ । କାରଣ ସୁଶାସନର ଭାର ତାହାଙ୍କ ହସ୍ତରେ । ଲୋକଙ୍କର ଧନ ପ୍ରାଣରକ୍ଷା, ଅଶାନ୍ତି ଅତ୍ୟାଚାର ନିବାରଣ, ଅପରାଧର ଅନୁସନ୍ଧାନ ଓ ଅପରାଧିକୁ ଉଚିତ ଦଣ୍ଡରେ ପହୁଞ୍ଚାଇବା ଇତ୍ୟାଦି ସକଳ ଅଧିକାର ତାହାଙ୍କ ହାତରେ ରହିବା ସ୍ଥଳେ କେବଳ ବିଚାରାସନରେ ବସି ଦଣ୍ଡଦେବା ଅଧିକାରଟି କଟିଗଲେ ତାହାଙ୍କର ଆଧିପତ୍ୟ ଊଣା ହେବ ଏହା କେଉଁ ବୁଦ୍ଧିମାନ ବ୍ୟକ୍ତି କହିବ ? ବର୍ତ୍ତମାନ ପ୍ରଣାଳୀରେ ସେ ଅଳ୍ପ ଫଉଜଦାରୀ ମୋକଦ୍ଦମା ବୁଝନ୍ତି ଏବଂ ଅଧିକାଂଶ ମୋକଦ୍ଦମାର ବିଚାର ତାହାଙ୍କର ଅଧୀନସ୍ଥ ଡେପୁଟିମାନଙ୍କ ଦ୍ୱାରା ହୁଅଇ । ଏହା ବୋଲି ମାଜିଷ୍ଟ୍ରେଟ୍‌ଙ୍କ ଠାରୁ ଡେପୁଟିଙ୍କର ଆଧିପତ୍ୟ ଅଧିକ ବୋଲି କେହି କହନ୍ତି କି ? ଗବର୍ଣ୍ଣମେଣ୍ଟ ଯେଉଁ ଉଚ୍ଚକର୍ମଚାରିକି ଯେ କ୍ଷମତା

ଦେବେ ତାହାକୁ ସେ ଉତ୍ତମ ଜ୍ଞାନ ଏବଂ ନ୍ୟାୟ ଭାବରେ ଚଳାଇଲେ ତହିଁରେ ତାହାର ଗୌରବ ବଢ଼ିବ । ଯହିଁରେ କ୍ଷମତାର ଅପଳାପ ଘଟିବ ସେ ରୂପ ଭାର ଲଦି ଲଣ୍ଡ ଭଣ୍ଡ କଲେ ଗୌରବ ନଷ୍ଟ ବିନା ଆଉ କିଛି ଫଳ ନାହିଁ । ବ୍ୟୟ ବୃଦ୍ଧିର ଯୁକ୍ତି ସମ୍ବନ୍ଧରେ ବକ୍ତବ୍ୟ ଏତିକି [ଏହିକି] କଲେକ୍ଟର୍ ମାଜିଷ୍ଟ୍ରେଟ୍ ଓ ତାହାଙ୍କର ଅଧୀନସ୍ଥ ଜଏଣ୍ଟ ଆସିଷ୍ଟାଣ୍ଟ ଏବଂ ଡେପୁଟି କଲେକ୍ଟର ମାଜିଷ୍ଟ୍ରେଟ୍‌ମାନେ ବର୍ତ୍ତମାନ ଯେତେ କାର୍ଯ୍ୟ କରୁଅଛନ୍ତି କାର୍ଯ୍ୟ ବିଭାଗର ପ୍ରସ୍ତାବ ଦ୍ୱାରା ତାହା କିଛି ବଢ଼ିବ ନାହିଁ, ସୁତରାଂ ଅଧିକା କର୍ମଚାରୀର ପ୍ରୟୋଜନ ନାହିଁ କେବଳ ସେହି କାର୍ଯ୍ୟମାନ ଭିନ୍ନରୂପେ ଏମନ୍ତ ବଣ୍ଟାଯିବ ଯେଉଁ କର୍ମଚାରିମାନେ ଶାସନ କାର୍ଯ୍ୟର ଭାର ପାଇବେ କଲେକ୍ଟରଙ୍କର ଏବଂ ଯେଉଁମାନେ ବିଚାର କାର୍ଯ୍ୟର ଭାର ପାଇବେ ସେମାନେ ଜିଲାଜଜଙ୍କର ଅଧୀନ ହେବେ । ସୁତରାଂ ବ୍ୟୟବୃଦ୍ଧିର ସମ୍ଭାବନା ନାହିଁ । ଯେବେ ନିତାନ୍ତରେ କିଛି ଅଧିକା ବ୍ୟୟର ପ୍ରୟୋଜନ ହେବ ତାହା ବିଚାର ବିଭାଗର ବାର୍ଷିକ ଉଦବର୍ତ୍ତ ଟଙ୍କାରୁ ଅନାୟାସରେ ଦିଆଯାଇପାରିବ । ଅଥବା ସାଧାରଣ ରାଜସ୍ୱରୁ ବିଚାର ଅଦାଲତର ଏପରି ପ୍ରୟୋଜନୀୟ ସଂସ୍କାର ନିମନ୍ତେ ଗବର୍ଣ୍ଣମେଣ୍ଟ ପ୍ରଦାନ କରିବାକୁ ଅକ୍ଷମ ନୁହନ୍ତି । ଇଂରାଜ ଗବର୍ଣ୍ଣମେଣ୍ଟ ପକ୍ଷପାତଶୂନ୍ୟ ନ୍ୟାୟ ବିଚାର ବିତରଣ ଦ୍ୱାରା ଭାରତବାସିଙ୍କର ରାଜଭକ୍ତି ବିଶେଷ ପରିମାଣରେ ଆକର୍ଷଣ କରିଅଛନ୍ତି ଏବଂ ବିଚାର ପ୍ରଣାଳୀର ବିଶୁଦ୍ଧତା ରକ୍ଷା ନିମନ୍ତେ ଅଧିକା ବ୍ୟୟ ପଡ଼ିଲେ ତହିଁରେ ପରାଂମୁଖ ହେବା ସୁନୀତି ବୋଲାଯାଇ ନ ପାରେ । ଅତଏବ ଏହି ସୁସଂସ୍କାର ନିମନ୍ତେ ପ୍ରତ୍ୟେକ ଜିଲ୍ଲା ଓ ନଗରରୁ ଗବର୍ଣ୍ଣମେଣ୍ଟ ନିକଟକୁ ଆବେଦନପତ୍ରମାନ ପଠାଯିବା ଓ ଯେତେବେଳେ ଯେଉଁଠାରେ ବିଚାର ବିଭ୍ରାଟ ଘଟିବ ସମ୍ବାଦପତ୍ରମାନଙ୍କ ଯୋଗେ ତାହା ପ୍ରକାଶ କରିବା ଓ ତହିଁ ପ୍ରତି କର୍ତ୍ତୃପକ୍ଷଙ୍କର ମନୋଯୋଗ ଆକର୍ଷଣ କରିବା ବିଷୟରେ ସମସ୍ତଙ୍କର ଚେଷ୍ଟା କରିବା ଉଚିତ୍ ।

ଏ ନଗରରେ ବହୁକାଳରୁ ପ୍ରତିଷ୍ଠିତ 'ଉତ୍କଳସଭା'ର ଆହ୍ୱାନ ମତେ ଚଳିତମାସ ତା୭ରିଖ ସନ୍ଧ୍ୟା ସମୟରେ କଟକ ପ୍ରିଣ୍ଟିଂ କମ୍ପାନିଙ୍କ କୋଠାରେ ଗୋଟିଏ ସାଧାରଣ ସଭା ହୋଇଥିଲା । ସଭାରେ ଉପରଲିଖିତ ବିଷୟ ଆଲୋଚିତ ହୋଇ ଗବର୍ଣ୍ଣମେଣ୍ଟଙ୍କ ନିକଟକୁ ଖଣ୍ଡିଏ ଆବେଦନପତ୍ର ପଠାଯିବାର ଏକମତରେ ଧାର୍ଯ୍ୟ ହୋଇଅଛି ଏବଂ ସେହି ଆବେଦନପତ୍ର ଓଡ଼ିଶାବାସୀ ଜନସାଧାରଣଙ୍କ ଦ୍ୱାରା ସ୍ୱାକ୍ଷରିତ ହୋଇଅଛି । ଯେଉଁମାନେ ଉପରଲିଖିତ ବିବରଣ ପଢ଼ି ସେହି ଆବେଦନ ପତ୍ର ପଠାଇବା ଉଚିତ ବିବେଚନା କରନ୍ତି ସେମାନେ ତହିଁରେ ସ୍ୱାକ୍ଷର କରିବାକୁ ଅଗ୍ରସର ହେବେ ଏତିକି ଆମ୍ଭମାନଙ୍କର ପ୍ରାର୍ଥନା ।

***

## (୨)

## ବାଳକୃଷ୍ଣ ପଟ୍ଟନାୟକଙ୍କୁ ଲିଖିତ ପତ୍ର

**କଟକ**

**୨୧।୨।୧୯୦୪**

ଭାଇ ବାଳକୃଷ୍ଣ,

ତୁମ୍ଭେ ଏଥିପୂର୍ବେ ଯେଉଁ ପତ୍ର ଲେଖିଥିଲ ଓ ତହିଁ ସଙ୍ଗେ ଯେ ଟ ୧/[ଏକଟଙ୍କା ଏକ ଅଣା]ର ଷ୍ଟାମ୍ପ ପଠାଇଥିଲ ତାହା ମୁଁ ପାଇଅଛି । ତୁମ୍ଭର ପତ୍ର ଖଣ୍ଡି ପାଠକରି ମୁଁ ରୋଦନ କରିଥିଲି । ମୁଁ ଉତ୍କଳଜନନୀଙ୍କର ଏକ ଅଯୋଗ୍ୟ ସନ୍ତାନ ଭାଇମାନଙ୍କର ସ୍ନେହ ପାଇବାର ଭାଜନ ନୁହଁଇ କିନ୍ତୁ ତଥାପି ତୁମ୍ଭେମାନେ ଯେ ଏତେଦୂର ସ୍ନେହ ପ୍ରକାଶ କରିଅଛ ଏଥିରେ ପ୍ରକାଶ ଯେ ଭବିଷ୍ୟତରେ ଉତ୍କଳରେ କେହି ସଯୋଗ୍ୟ [ସୁଯୋଗ୍ୟ] ସନ୍ତାନ ଜନ୍ମିଲେ ତାଙ୍କର ହତାଦର ହେବନାହିଁ ଯେଉଁ ଦେଶରେ ସୁଯୋଗ୍ୟ ସନ୍ତାନର ମର୍ଯ୍ୟାଦା ହୁଅଇ ସେ ଦେଶ ଶୀଘ୍ର ଉନ୍ନତି ପଥରେ ଅଗ୍ରସର ହୁଅଇ । ତୁମ୍ଭର ପ୍ରେରିତ ଟ୩୦ଙ୍କା ମୁଁ ଉତ୍କଳସମ୍ମୀଳନୀ [ସମ୍ମିଳନୀ] ଫଣ୍ଡରେ ଜମା ଦେଇଅଛି ତୁମ୍ଭର ଯେ ପ୍ରକାର ହୃଦୟ ସମସ୍ତ ଉତ୍କଳସନ୍ତାନଙ୍କର ସେହି ପ୍ରକାର ହୃଦୟ ହେଲେ ଉତ୍କଳର ଉନ୍ନତିସାଧନ ଅତି ସହଜ ହୋଇଥାନ୍ତା । ଭାଇ ନିସ୍ୱାର୍ଥ [ନିଃସ୍ୱାର୍ଥ] ଭାବରେ ମାତୃଭୂମି ପ୍ରତି ଓ ଭାଇମାନଙ୍କ ପ୍ରତି ଆପଣାର କର୍ତବ୍ୟ[କର୍ତ୍ତବ୍ୟ] କର୍ମ କର ମନୁଷ୍ୟ ଠାର[ଠାରୁ] କୌଣସି ପୁରସ୍କାର ଆଶା ନ ରଖ, ଈଶ୍ୱର ଆଶୀର୍ବାଦ କରିବେ – ମୁଁ ପୁଣି ଗଲେ ତୁମ୍ଭ ସଙ୍ଗେ ଦେଖାକରିବି ।

**ଇତୀ[ଇତି]**

**ତୁମ୍ଭର ଶୁଭାକାଙ୍କ୍ଷୀ**

**ମଧୁସୂଦନ ଦାସ**

***

## (୩)

## ସମ୍ପାଦକଙ୍କୁ ପ୍ରେରିତ ପତ୍ର(୧)

ମହାଶୟ,

ଓଡ଼ିଶାବାସିଏ ବର୍ତ୍ତମାନ ଝୋଟଚାଷ ଲାଭବାନ [ଲାଭଜନକ] ଦେଖି ତହିଁରେ ମନ ବଳାଇଅଛନ୍ତି । ସେ ଦିନ ଶୁଣିଲୁଁ ଯେ ଦଶହରା ଉତାରୁ ଏହି ମାସ ଦୁଇ ମଧ୍ୟରେ

ଜଣେ ପରିଚିତ ଲୋକ କ୍ଷତିଗ୍ରସ୍ତ ହୋଇ ସୁଦ୍ଧା ଦୁଇହଜାର ଟଙ୍କା ଲାଭ କରିଅଛନ୍ତି । ଆହୁରି ମଧ୍ଯ ଶୁଣିଲୁଁ ଯେ ଝୋଟର ଦର ଏଥି ମଧ୍ଯରେ ଅନେକ ପରିମାଣରରେ– ୨୦ ଟଙ୍କା ପର୍ଯ୍ୟନ୍ତ–କମ୍ ହୋଇଗଲାଣି । ଏହି ସମ୍ବାଦ ସଙ୍ଗେ ସଙ୍ଗେ ଲଣ୍ଡନ ଆର୍ଟ ସୋସାଇଟିଙ୍କ ୧୫.୧୨.୦୫ ଜର୍ଣ୍ଣାଲର ୧୩୯ ପୃଷ୍ଠାରେ ପଢ଼ିଲୁଁ ଯେ "The jute mills in India have decided upon running short time for lack of fibre."

ଏଥିରୁ ଆପଣ ଓ ବ୍ୟବସାୟିମାନେ ଯାହା ବୁଝିବାର ବୁଝନ୍ତୁ; କିନ୍ତୁ ଭବିଷ୍ୟତ ପାଇଁ ନିମ୍ନଲିଖିତ ଅଂଶ ଉଦ୍ଧାର କଲୁଁ ।

The importance of the jute industry to India may be gathered from the fact that last year the value of the exports amounted to 11, 96, 56, 462 rupees, 40.1 percent of the total shipments coming to the United Kingdom, nearly half of it being re-exported. But India will do well to remember that *if cultivators do not take adequate account of the manufacturer's needs there is plenty of suitable grounds for the cultivation of jute in other countries.* There is a large area in the lacustrine of Nicaragua, up in the Orinoco and the Amazons, and even Mississipi, said to be quite equal to that of Bengal, and almost identical in climate, soil and rain fall. (The italic size are mine)

ଏହାର ଭାବାର୍ଥ ଏହି ଯେ ଗତବର୍ଷ ୧୧, ୯୬, ୫୬, ୪୬୨ ଟଙ୍କାର ମାଲ ରପ୍ତାନି ହୋଇଥିବା ଓ ତହିଁ ମଧ୍ୟରୁ ଶତକଡ଼ା ୪୦.୧ ବିଲାତକୁ ଯାଇଥିଲା । ଏଥିରୁ ଭାରତବର୍ଷର ଝୋଟ କାରବାରର ମୂଲ୍ୟ ଦେଖା ଯାଉଅଛି । କିନ୍ତୁ ଭାରତବାସିମାନେ ଏକଥା ମନେ ରଖିଲେ ଭଲ ହେବ ଯେ ଝୋଟରୁ ଯେଉଁମାନେ ଜିନିସ ତୟାର କରନ୍ତି ସେମାନଙ୍କର ଯାହା ଆବଶ୍ୟକ ତହିଁ ପ୍ରତି ଝୋଟ ଚାଷିମାନେ ଦୃଷ୍ଟି ନ ରଖିଲେ, ଅନ୍ୟ ଦେଶରେ ଝୋଟ ଚାଷ ପାଇଁ ଯଥେଷ୍ଟ ଜମି ଅଛି । ନିକାରଗୋୟା, ଓରିନିକି ପ୍ରଭୃତି କେତେକ ସ୍ଥାନରେ ଝୋଟଚାଷ ହୋଇପାରେ ଓ ସେ ସବୁ ସ୍ଥାନର ଜଳବାୟୁ ପ୍ରଭୃତି ତହିଁ ପାଇଁ ବଙ୍ଗଳାର ଜଳବାୟୁ ପ୍ରଭୃତି ପରି ଅନୁକୂଳ ଅଟେ ।

ଆମ୍ଭର ମତାମତ ଦେବା ବା କୌଣସି ପ୍ରସ୍ତାବ ଆଗତ କରିବା ପୂର୍ବେ ଆପଣଙ୍କ, ଆପଣଙ୍କ ପାଠକମାନଙ୍କର ଓ ଅନ୍ୟମାନଙ୍କର ମନ୍ତବ୍ୟ ଓ ପ୍ରସ୍ତାବମାନ ଜାଣିବା

ବାଞ୍ଛନୀୟ ଓ ଆବଶ୍ୟକ ମନେ କରୁଁ ।

ଏ ସମ୍ବନ୍ଧରେ ବିଶେଷ ସମ୍ବାଦ ଜାଣିବାର ହେଲେ ସ୍ୱର୍ଗୀୟ ରାୟ ନନ୍ଦକିଶୋର ଦାସ ବାହାଦୁରଙ୍କ କନିଷ୍ଠପୁତ୍ର ବାବୁ ଶ୍ରୀ ବୀରେନ୍ଦ୍ର କିଶୋର ଦାସ, ବାଙ୍କାବଜାର, କଟକଙ୍କଠାରେ ମିଳିପାରିବ ।

। ଇତି ।

ବଶମ୍ବଦ

୦୬.୧.୦୬ ଓଡ଼ିଆ

***

## (୪)
## ସମ୍ପାଦକଙ୍କୁ ପ୍ରେରିତପତ୍ର(୨)

ମହାଶୟ,

ନିମ୍ନଲିଖିତ କତିପୟ ପଂକ୍ତି ଆପଣଙ୍କ ପତ୍ରିକାରେ ପ୍ରକାଶ କରି ବାଧିତ କରିବା ହେବେ ।

କିଛିଦିନ ପୂର୍ବେ ବଙ୍ଗଳାର ଛୋଟଲାଟ ବାହାଦୁର ମତେ ଅପମାନ କରିଥିବା ବିଷୟ ଯାହା ରାଷ୍ଟ୍ର ହୋଇଅଛି ସେ ସମ୍ବନ୍ଧୀୟ ଘଟନାମାନ ପ୍ରକାଶିତ ହେବା ଆବଶ୍ୟକ ବୋଧ ହେଉଅଛି । ଏ ଘଟନା ଗତ ଡିସେମ୍ବର ମାସ ୪ ତାରିଖ ସନ୍ଧ୍ୟା ସମୟରେ ଘଟିଥିଲା । ମତଭେଦ ଓ ଅପମାନ ଏ ଦୁହିଙ୍କ ମଧ୍ୟରେ ପାର୍ଥକ୍ୟ ବୁଝିପାରିବା ଭଳି ବୟସ ମୋର ହୋଇଅଛି । ସେଦିନ ଛୋଟଲାଟ ମତେ ଯାହା କରିଥିଲେ ତହିଁରେ ଅପମାନର ଲକ୍ଷଣ ମୁଁ କିଛି ଦେଖିପାରି ନ ଥିଲି । ପରଦିନ ଅର୍ଥାତ୍ ୫ ।୧୨।୦୭ ତାରିଖରେ କଟକରେ ସରକାରୀ ଓକିଲ ବାବୁ ଜାନକୀନାଥ ବୋଷ ମତେ ପ୍ରକାଶ୍ୟ ଭାବରେ କହିଲେ ଯେ ଛୋଟଲାଟ ସାହେବ ମତେ ଯେଉଁ ଅପମାନ ଦେଇଥିଲେ ମୁଁ ସେ ଅପମାନକୁ ନତ ମସ୍ତକରେ ସହ୍ୟ କରିଥିବାରୁ ସେ [ଜାନକୀ ବାବୁ] ମୋ ଯୋଗୁଁ ବିଶେଷ ଲଜ୍ଜିତ ହୋଇଅଛନ୍ତି । ଏହା ଶୁଣି ତତ୍ ପୂର୍ବଦିନର କଥାବାର୍ତ୍ତାକୁ ସାଧାରଣରେ ପ୍ରକାଶ କରିବା ପାଇଁ ମତେ ଅନୁମତି ଦେବାଲାଗି ମୁଁ ଛୋଟଲାଟ ସାହେବଙ୍କୁ ତତ୍କ୍ଷଣାତ୍ ପତ୍ର ଲେଖିଲି ।

ମତେ ଛୋଟଲାଟ ସାହେବ ଯେଉଁଦିନ ଯେଉଁ ସମୟରେ ଅପମାନ କରିଥିବା ବିଷୟ ରଟନା ହୋଇଅଛି ସେହି ଦିନ ସେହି ସମୟରେ ସାହେବ ମହୋଦୟ ଦୁର୍ଭିକ୍ଷ ଦମନ ପାଇଁ ଯେଉଁ ଉପାୟମାନ ପ୍ରସ୍ତାବ କରି ସହାନୁଭୂତି ପ୍ରକାଶ କରିଥିଲେ ସେଥିଯୋଗୁଁ ତାଙ୍କୁ ଧନ୍ୟବାଦ ଦେବାଲାଗି ତତ୍‌ପର ଦିନ ଅର୍ଥାତ୍ ୫ ।୧୨ ।୧୯୦୭ରେ କଟକ ଟାଉନ୍‌ହଲ୍‌ଠାରେ ଗୋଟିଏ ସାଧାରଣ ସଭା ହୋଇଥିଲା । ଉକ୍ତ ସଭାର କାର୍ଯ୍ୟାବଳୀ ଏଥିପୂର୍ବେ ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହୋଇଅଛି ଓ ତାହା ଏଠାରେ ଉଲ୍ଲେଖ

କରିବା ଅନାବଶ୍ୟକ। ସେଦିନ ସଭାରୁ ଘରକୁ ଫେରିବା ସମୟରେ ବାଟରେ ଛୋଟଲାଟ ସାହେବଙ୍କଠାରୁ ମୋ ପତ୍ରର ଉତ୍ତର ପାଇଥିଲି ।

ଯେଉଁ ବ୍ୟକ୍ତିଙ୍କ ଯୋଗୁଁ ପ୍ରକୃତ ଘଟଣା ଅସମ୍ପୂର୍ଣ୍ଣ ଓ ବିକୃତ ଭାବରେ ସର୍ବସାଧାରଣରେ ପ୍ରକାଶିତ ହୋଇଅଛି ଓ ସେଥିରେ ମହାମାନ୍ୟ ଛୋଟଲାଟ ସାହେବଙ୍କୁ ଅକାରଣ ଅନେକ ... ସମାଲୋଚନା ସହ୍ୟ କରିବାକୁ... କହିଥିଲି ଯେ ସେହି .... ହଠକାରିତାର ଫଳ ବୁଝିପାରି ନିଜ କାର୍ଯ୍ୟରେ ପରିଣାମ ପାଇଁ ସାଧାରଣରେ ଦୁଃଖପ୍ରକାଶ କରିଥାନ୍ତେ । କିନ୍ତୁ ସେ ମହାଶୟ ଆଜି ପର୍ଯ୍ୟନ୍ତ ନିଜ ତ୍ରୁଟିର କୌଣସି ସଂଶୋଧନ କରିବାର ଉଚିତ ବୋଧ କରି ନ ଥିବାରୁ ଅଗତ୍ୟା ଛୋଟଲାଟ ସାହେବଙ୍କ ଇଂରାଜୀପତ୍ର ଓ ତହିଁର ଓଡ଼ିଆ ଅନୁବାଦ ମୁଁ ସାଧାରଣରେ ପ୍ରକାଶ କରିବାକୁ ବାଧ ହେଲି ।

ଛୋଟଲାଟ ସାହେବ ମତେ ଅପମାନ କରିଅଛନ୍ତି, କିମ୍ବା ମୁଁ ସେ ଅପମାନକୁ ନତମସ୍ତକରେ ଗ୍ରହଣ କରିଅଛି, ଅଥବା ପ୍ରକୃତ ଘଟନାକୁ ଗୋପନ କରି ଅନ୍ୟ କେହି ତୃତୀୟ ବ୍ୟକ୍ତି ଗୁରୁତର ଅପରାଧ କରିଅଛନ୍ତି, ସେଥିରୁ କେଉଁ କଥା ସତ୍ୟ ତାହା ଛୋଟଲାଟଙ୍କ ପତ୍ରରୁ ସର୍ବସାଧାରଣ ସ୍ଥିର କରିବେ । ମୋର ଅଧିକ କିଛି କହିବାର ନାହିଁ । ସର୍ବସାଧାରଣଙ୍କ ମନରୁ ଅମୂଳକ କୁଷା ଓ ଭ୍ରାନ୍ତ ଧାରଣା ଦୂର କରିବା ଉଦ୍ଦେଶ୍ୟରେ ମୁଁ ପତ୍ର ଖଣ୍ଡିକ ପ୍ରକାଶ କଲି ।

କଟକ — ବଶମ୍ବଦ

୮।୦୧।୦୮ — ଶ୍ରୀ ମଧୁସୂଦନ ଦାସ

ଛୋଟଲାଟ ସାହେବଙ୍କ ଇଂରାଜୀ ପତ୍ର ଏହି:-

BENGAL GOVERNMENT CAMP,

5th December, 1907

Dear Mr. Das,

I am very sorry to receive your letter of this date. My remarks to you last night were of truly friendly character. There was nothing of "insult" in then; and I am sorry to think that anyone should have associated such a word with anything that I said to you.

I talked to you friendly and I urged on you for the sake of the people in their time of trouble to work on friendly terms with the local officers. Unless there is friendly cooperation,

the work will be far more difficult.

I cannot possibly allow you to publish an account of our conversation. Such conversations are confidential. When I want an account to be published of any conversation in my private room I shall (with the consent of the other parties to it) provide for a short-hand writer. I must therefore refuse permission in this case.

I am.

Yours sincerely

A.H.L.Fraser

p.s.

I again "beseech" you as I did last night, to work shoulder to shoulder, for the people's good, with the officers of the government.

(Sd) A.H.L.Fraser

ଉକ୍ତ ପତ୍ରର ଓଡ଼ିଆ ଅନୁବାଦ ଏହିଃ –

ପ୍ରିୟ ମିଷ୍ଟର ଦାସ !

ତୁମ୍ଭର ଆଜି ତାରିଖର ପତ୍ର ପାଇଁ ମୁଁ ବିଶେଷ ଦୁଃଖିତ ହେଲି । କାଲି ରାତିରେ ମୁଁ ତୁମ୍ଭଙ୍କୁ ଯାହା କହିଥିଲି ସେଗୁଡ଼ିକ ବିଶେଷ ବନ୍ଧୁ ଭାବରେ କହିଥିଲି । ସେଥିରେ ଅପମାନର କଥା କିଛି ନ ଥିଲା । ମୁଁ ତୁମ୍ଭଙ୍କୁ କାଲି ଯାହା କହିଥିଲି ତହିଁରେ କେହି ଅପମାନର ଆରୋପ କରୁଅଛନ୍ତି, ଏକଥା ଭାବିଲେ ମୋ ମନରେ ଦୁଃଖ ଜାତ ହେଉଅଛି ।

ମୁଁ ତୁମ୍ଭ ସଙ୍ଗେ ହୃଦୟ ଖୋଲି ସରଳ ଭାବରେ କଥାବାର୍ତ୍ତା ହୋଇଥିଲି ଏବଂ ଏହି ବିପତ୍ତି କାଳରେ ଲୋକମାନଙ୍କ ଉପକାର ଉଦ୍ଦେଶ୍ୟରେ ତୁମ୍ଭେ ସ୍ଥାନୀୟ କର୍ମଚାରୀମାନଙ୍କ ସଙ୍ଗେ ବନ୍ଧୁଭାବରେ ମିଳିମିଶି କାର୍ଯ୍ୟ କରିବା ପାଇଁ ମୁଁ ତୁମ୍ଭଙ୍କୁ ଦୃଢ଼ଭାବେ ଅନୁରୋଧ କରିଥିଲି । କାରଣ ବନ୍ଧୁଭାବରେ ପରସ୍ପର ପରସ୍ପରଙ୍କୁ ସାହାଯ୍ୟ ନ କଲେ ଏ କାର୍ଯ୍ୟ ଆହୁରି ବିଶେଷ କଷ୍ଟକର ହେବ ।

ତୁମ୍ଭମାନଙ୍କ କଥାବାର୍ତ୍ତାର ବିବରଣ ପ୍ରକାଶ କରିବା ପାଇଁ ମୁଁ ତୁମ୍ଭଙ୍କୁ ଅନୁମତି ଦେଇ ପାରୁନାହିଁ । ଏପ୍ରକାର କଥାବାର୍ତ୍ତା ବିଶ୍ୱସ୍ତ ଅଟେ । ମୋର ନିଜ କୋଠରିରେ ମୁଁ

ଯେଉଁମାନଙ୍କ ସଙ୍ଗେ କଥାଭାଷା ହୁଏ ସେ କଥାଗୁଡ଼ାକ ପ୍ରକାଶ କରିବାକୁ ମୋର ଇଚ୍ଛା ଥିଲେ ସେମାନଙ୍କ ସମ୍ମତିକ୍ରମେ ଏପରି କଥାବାର୍ତ୍ତାର ବିବରଣ ଟିପି ରଖିବାପାଇଁ ମୁଁ ଭବିଷ୍ୟତରେ ଜଣେ ଲେଖକଙ୍କୁ ଉପସ୍ଥିତ ରଖାଇବାର ବନ୍ଦୋବସ୍ତ କରିବି । ଅତଏବ ଉପସ୍ଥିତ ଘଟନାରେ ମୁଁ କଦାପି ଅନୁମତି ଦେଇ ନ ପାରେ । ଇତି ।

ତୁମ୍ଭର ବନ୍ଧୁ

ସ୍ୱାକ୍ଷର ଏ.ଏଚ.ଏଲ୍.ଫ୍ରେଜର

ପୁନଶ୍ଚ

ଲୋକମାନଙ୍କ ମଙ୍ଗଳ ନିମନ୍ତେ ସରକାରୀ କର୍ମଚାରୀମାନଙ୍କ ସଙ୍ଗେ ଅଣ୍ଟାବାନ୍ଧି ଏକମେଳ ହୋଇ କାର୍ଯ୍ୟ କରିବା ଲାଗି ମୁଁ କାଲି ଯେପରି ତୁମ୍ଭଙ୍କୁ 'ପ୍ରାର୍ଥନା' କରିଥିଲି ଆଜିମଧ୍ଯ ପୁନର୍ବାର ସେହିପରି ପ୍ରାର୍ଥନା କରୁଅଛି ।

ସ୍ୱାକ୍ଷର ଏ.ଏଲ.ଏଚ.ଫ୍ରେଜର ।

***

## (୫)

## ପ୍ରଚାରପତ୍ର(୧)

ଭାଇମାନେ !

ପ୍ରାୟ ତିନିବର୍ଷ ହେବାକୁ ଚାଲିଲା ଜର୍ମାନ ଦେଶର ସମ୍ରାଟଙ୍କ ସହିତ ଆମ୍ଭମାନଙ୍କ ସମ୍ରାଟ ଏବଂ ଅନ୍ୟ କେତେକ ଜାତିମାନଙ୍କର ଘୋର ଯୁଦ୍ଧ ଲାଗିଅଛି । ଅର୍ଥାତ୍ ଏକ ପକ୍ଷରେ ଇଂରେଜ, ଫରାସି, ଇଟାଲି, ଋଷିୟା, ବେଲଜିୟମ, ଭାରତବର୍ଷ ଏବଂ ଆଉ କେତୋଟି କ୍ଷୁଦ୍ର ରାଜ୍ୟ; ଅନ୍ୟପକ୍ଷରେ ଜର୍ମାନୀ, ଅଷ୍ଟ୍ରିୟା, ତୁର୍କୀ ଏବଂ ବୁଲଗେରିଆ । ଜର୍ମାନୀ ପ୍ରାୟ ଚାଳିଶ ବର୍ଷ ହେବ ଗୋପନ ଭାବେ ଏହି ଯୁଦ୍ଧ ନିମନ୍ତେ ପ୍ରସ୍ତୁତ ହେଉଥିଲା । ସେ ଏଯାବତ୍‌କାଳ ମନୁଷ୍ୟ ମାରିବାର ନାନାପ୍ରକାର ଯନ୍ତ୍ର ଆବିଷ୍କାରକରି ଏ ଯୁଦ୍ଧରେ ବ୍ୟବହାର କରୁଅଛି ଏବଂ ତଦ୍ଦ୍ୱାରା ଅସଂଖ୍ୟ ଲୋକ ପ୍ରାଣତ୍ୟାଗ କରିଅଛନ୍ତି । ଆହୁରି ଅନେକ ଲୋକ ଅଙ୍ଗହୀନ ହୋଇ ଅକର୍ମଣ୍ୟ ହୋଇଅଛନ୍ତି । ଏକ ସ୍ଥାନରେ ଏକ ଦିନରେ ଯୁଦ୍ଧରେ ଏତେ ରକ୍ତପାତ ହୋଇଥିଲା ଯେ, ସେହି ସ୍ଥାନର ଗୋଟିଏ ନଦୀର ଜଳ ରକ୍ତବର୍ଣ୍ଣ ହୋଇ ପାଣିର ପରିମାଣ ବଢ଼ି କୂଳ ଉଛୁଳି ପଡ଼ିଥିଲା । ଅନେକ ସ୍ଥାନରେ ଲୋକମାନେ ବହୁକାଳ ବ୍ୟାପି ଯେଉଁ ପୁସ୍ତକାଳୟ ନିର୍ମାଣ କରି ବହୁମୂଲ୍ୟ ପୁସ୍ତକ ଇତ୍ୟାଦି ସଂଗ୍ରହ କରିଥିଲେ, ଜର୍ମାନୀ

ତାହା ସବୁ ତୋପ ଦ୍ୱାରା ନଷ୍ଟ କରିଅଛି । ଏଥିରୁ ବୁଝାଯାଏ ଯେ ଜର୍ମାନୀର ଉଦ୍ଦେଶ୍ୟ ମନୁଷ୍ୟଜାତି, ଧର୍ମ ଓ ଜ୍ଞାନପଥରେ ଅଗ୍ରସର ନ ହୋଇ ପଶୁପରି ବାହୁବଳର ଅଧୀନ ରହିବା । ମନୁଷ୍ୟ ପଶୁର ପ୍ରଭେଦ ଏହି ଯେ ଦେହର ବଳଦ୍ୱାରା ପଶୁ [ଅନ୍ୟକୁ] ପରାଜୟ କରିପାରେ, ମାତ୍ର ମନୁଷ୍ୟ ଜ୍ଞାନ ଓ ନୈତିକ ବଳ ଦ୍ୱାରା ଅନ୍ୟକୁ ବଶ କରିପାରେ । ଜର୍ମାନୀର ଅନେକ ସିପାହୀ ଅଛନ୍ତି; ମନୁଷ୍ୟ ମାରିବାର ଅନେକ ଯନ୍ତ୍ର ଅଛି । ଅତଏବ ତାହାର ଉଦ୍ଦେଶ୍ୟ ହେଉଛି ଏହି ଯେ, ସେ ସମସ୍ତ ପୃଥିବୀରେ ବାହୁବଳ ଦ୍ୱାରା ରାଜତ୍ୱ କରିବ । ଏହି ପ୍ରକାର ରାଜନୀତି ପୃଥିବୀରେ ପ୍ରଚଳିତ ହେଲେ ଆମ୍ଭମାନଙ୍କ ପରି ଦୁର୍ବଳ ଜାତିର କି ଅନିଷ୍ଟ ହେବ, ତାହା କହିବା ବାହୁଲ୍ୟ ।

ବହୁକାଳ ପୂର୍ବେ ରାମ-ରାବଣଙ୍କର ଯେ ଯୁଦ୍ଧ ହୋଇଥିଲା, ତାହା ରାମାୟଣରେ ଲେଖା ଅଛି । ରାବଣ ତାହାର ନିଜର ଦେହ-ବଳଦ୍ୱାରା ଏବଂ ଅସୁର ସୈନ୍ୟର ବଳଦ୍ୱାରା ସମସ୍ତଙ୍କୁ ପରାଜୟ କରି, ଦେବତାମାନଙ୍କୁ ପରାସ୍ତ କରି ସର୍ବତ୍ର ତାହାର ରାଜତ୍ୱ ସ୍ଥାପନ କରିବାକୁ ଚେଷ୍ଟା କରିଥିଲା । ନିରାଶ୍ରୟ, ଅବଳା ସୀତାଙ୍କୁ ଅପହରଣ କରି ନେଇଥିଲା । ରାମାୟଣର ଯେ ଯୁଦ୍ଧ ତାହା ଏକ ପକ୍ଷରେ ପ୍ରବଳ ଦେହବଳ ଓ ଅନ୍ୟ ପକ୍ଷରେ ଧର୍ମ ଓ ନ୍ୟାୟବଳ ମଧ୍ୟରେ ଘଟିଥିଲା । ଆଜି ପର୍ଯ୍ୟନ୍ତ ଓଡ଼ିଶାର ସର୍ବସ୍ଥାନରେ ରାମଲୀଳା ଓ ରାମନବମୀ ହେଉଅଛି ଓ ରାବଣବଧ ଦିନ ଲୋକ କିପରି ବିଶେଷ ରୂପେ ଆହ୍ଲାଦିତ ହୁଅନ୍ତି, ତାହା ସମସ୍ତଙ୍କୁ ଜଣା । ବହୁକାଳ ଏହି ପ୍ରକାର ଯାତ୍ରାରେ ପାପର ଅବତାର ରାବଣର ବଧ ଦେଖିବାରେ ଓଡ଼ିଶାର ଲୋକେ କେତେ ଅର୍ଥ ବ୍ୟୟ କରିନାହାନ୍ତି ? କି ଆଗ୍ରହରେ ଲୋକେ 'ରାମରାଜ୍ୟ' ପାଇବାକୁ ଇଚ୍ଛା କରନ୍ତି ? ରାମନାମ ସ୍ମରଣକରି ଲୋକେ ପ୍ରାଣତ୍ୟାଗ କରିବାକୁ କିପରି ଇଚ୍ଛା କରିଥାନ୍ତି ? ଅଯୋଧ୍ୟାରେ ରାମଚନ୍ଦ୍ରଙ୍କ ପରେ ଅନେକ ରାଜା ରାଜତ୍ୱ କରିଅଛନ୍ତି । ରାମ-ରାବଣ ଯୁଦ୍ଧ ପରେ ଏହି ପୃଥିବୀରେ ଅନେକ ଯୁଦ୍ଧ ହୋଇଅଛି । କିନ୍ତୁ ଅଯୋଧ୍ୟାର ଅନ୍ୟ କୌଣସି ରାଜାର ନାମ କେହି ସ୍ମରଣ କରନ୍ତି ନାହିଁ; କିମ୍ବା ପୃଥିବୀର ଅନ୍ୟ କୌଣସି ଯୁଦ୍ଧକୁ ସ୍ମରଣ ରଖିବା ପାଇଁ କୌଣସି ଯାତ୍ରା ହୁଏନାହିଁ । ରାମାୟଣ ଯୁଦ୍ଧକୁ ସ୍ମରଣ ରଖିବାର କାରଣ ଏହି ଯେ, ଆମ୍ଭେମାନେ ନ୍ୟାୟ ଓ ଧର୍ମସଙ୍ଗତ ଶାସନାଧୀନରେ ରହିବାକୁ ଇଚ୍ଛା କରୁଁ ।

ଆପଣମାନଙ୍କୁ ବୁଝିବାକୁ ହେବ ଯେ ବର୍ତ୍ତମାନ ଇଉରୋପରେ ଯେପରି ରାମ-ରାବଣର ଯୁଦ୍ଧ ଲାଗିଅଛି । ରାମାୟଣ ଯୁଦ୍ଧ ହେଉଥିବା ସମୟେ ମର୍କଟମାନେ ସୁଦ୍ଧା ନ୍ୟାୟପକ୍ଷ ଦେଖି ରାମଚନ୍ଦ୍ରଙ୍କୁ ସାହାଯ୍ୟ କରିଥିଲେ ଏବଂ ସେହି ହେତୁରୁ ମାଙ୍କଡ଼ମାନେ ଅନେକ ଅନିଷ୍ଟ କଲେ ସୁଦ୍ଧା କେହି ମାଙ୍କଡ଼ ମାରିବାକୁ ଇଚ୍ଛା କରନ୍ତି ନାହିଁ । ଆମ୍ଭମାନଙ୍କ ଦେଶର ଇତର ପ୍ରାଣୀମାନେ ମଧ୍ୟ କିପରି ନ୍ୟାୟର ପକ୍ଷପାତୀ ତାହା ଆପଣମାନେ ଏଥିରୁ ବୁଝିପାରିବେ ।

ଏହି ଯୁଦ୍ଧର ପ୍ରାରମ୍ଭରେ ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭାରେ ଯେଉଁମାନେ ଭାରତର ଭିନ୍ନ ଭିନ୍ନ ପ୍ରଦେଶରୁ ପ୍ରତିନିଧି ସ୍ୱରୂପ ଉପସ୍ଥିତ ଥିଲେ, ସେମାନେ ଏ ଯୁଦ୍ଧରେ ଆମ୍ଭମାନଙ୍କ ସମ୍ରାଟଙ୍କୁ ସାହାଯ୍ୟ କରିବାକୁ ସ୍ୱୀକାର କରିଥିଲେ । ଯେଉଁମାନେ ଏ ପ୍ରକାର ସ୍ୱୀକାର କରିଥିଲେ ତାହା ମଧ୍ୟରୁ ମୁଁ ଜାଣେ । ଯୁଦ୍ଧର ଆରମ୍ଭରେ ଭାରତବର୍ଷରୁ ଅନେକ ଆମ୍ଭର ଦେଶୀ ସୈନ୍ୟ ଇଉରୋପକୁ ଯାଇଥିଲେ ଏବଂ ସେମାନେ ପ୍ରଥମେ ଜର୍ମାନୀର ଅଗ୍ରସର ହେବା ବନ୍ଦ କରିଥିଲେ । ଏହା ଆମ୍ଭମାନଙ୍କ ପକ୍ଷରେ ବଡ଼ ଗୌରବର କଥା । ପ୍ରାୟ ତିନିବର୍ଷକାଳ ସମ୍ରାଟ ଯୁଦ୍ଧର ଖର୍ଚ୍ଚ ଚଳାଇଅଛନ୍ତି । ଆଜିକାଲି ପ୍ରତିଦିନ ଆଠ କୋଟି ଟଙ୍କା ଖର୍ଚ୍ଚ ହେଉଅଛି । ତେଣୁକରି ଆମ୍ଭର ସମ୍ରାଟ ଭାରତବାସୀଙ୍କ ଠାରୁ ସାହାଯ୍ୟ ଚାହିଁଅଛନ୍ତି । ଏ ସମୟରେ ଆମ୍ଭମାନଙ୍କର ସାହାଯ୍ୟ କରିବା ନିତାନ୍ତ ଆବଶ୍ୟକ । ଯଦି ଆମ୍ଭେମାନେ ଏଥିରେ ସାହାଯ୍ୟ ନ କରୁଁ ତାହାହେଲେ ଇଂରେଜ ଜାତି ଓ ଅନ୍ୟାନ୍ୟ ସଭ୍ୟ ଜାତିମାନେ ଭାବିବେ ଯେ ଭାରତବାସୀମାନେ ନ୍ୟାୟ ରାଜ୍ୟର ମର୍ଯ୍ୟାଦା ବୁଝନ୍ତି ନାହିଁ । ଯେଉଁ ଦେଶର ଇତର ପ୍ରାଣୀମାନେ ନ୍ୟାୟଯୁଦ୍ଧରେ ରାମଚନ୍ଦ୍ରଙ୍କୁ ସାହାଯ୍ୟ କରିଥିବାର ପୁରାଣରେ ଲେଖା ଅଛି ସେ ଦେଶର ଲୋକମାନଙ୍କ ପକ୍ଷରେ ଏହା କ'ଣ ନିନ୍ଦାର ବିଷୟ ହେବ ନାହିଁ ? ଆମ୍ଭେମାନେ 'ରାମରାଜ୍ୟ' ଚାହୁଁ । ଅତଏବ ଏ ସମୟରେ ସମ୍ରାଟଙ୍କୁ ସାହାଯ୍ୟ କରିବା ଆମ୍ଭମାନଙ୍କର ନିତାନ୍ତ କର୍ତ୍ତବ୍ୟ । ଏ ପତ୍ର ମୁଁ ଯେଉଁମାନଙ୍କୁ ଲେଖୁଅଛି ସେମାନେ କେହି ଧନୀ କି ରାଜା ଜମିଦାର ନୁହଁନ୍ତି । ଅତଏବ ସେମାନେ କହିପାରନ୍ତି କି ଆମ୍ଭେମାନେ କି ସାହାଯ୍ୟ କରିପାରିବୁ ? କିନ୍ତୁ ସେମାନେ ମନେ ରଖିବା ଉଚିତ ଯେ ଭାରତବର୍ଷରେ ରାଜା ମହାରାଜା କେତେଜଣ ଅଛନ୍ତି ? ଅଧିକାଂଶ ଗରିବ । ଆହୁରି ମଧ୍ୟ ସେମାନଙ୍କର ମନେ ରଖିବା ଉଚିତ ଯେ ଅନେକ ରାଜା ମହାରାଜା ଦେବାଳୟ ନିର୍ମାଣ କରିଅଛନ୍ତି । ଧର୍ମାର୍ଥ କାର୍ଯ୍ୟରେ କୋଟି କୋଟି ଟଙ୍କା ଦାନ କରିଅଛନ୍ତି । କିନ୍ତୁ ବିଦୁରର ଖୁଦ ମୁଠାକର କଥା ସମସ୍ତେ ଜାଣନ୍ତି । ରାଜା ମହାରାଜାଙ୍କର ନାମ ମଧ୍ୟ କେହି ଜାଣନ୍ତି ନାହିଁ । ଗୁଣ୍ଡୁଚିମୂଷା ସେତୁବନ୍ଧ-ନିର୍ମାଣ ସମୟରେ କିଞ୍ଚିତ ବାଲି ମାତ୍ର ପକାଇଥିଲା । ଆଜି ପର୍ଯ୍ୟନ୍ତ ରାମଚନ୍ଦ୍ରଙ୍କର ଆଶୀର୍ବାଦ ଆଙ୍ଗୁଳି ଚିହ୍ନ ତାହା ପିଠିରେ ରହିଅଛି । ଆହୁରି ମଧ୍ୟ ମୋହୋର ଏହା କହିବା ଉଚିତ ଯେ, ରାଜା ଜମିଦାର ଯେ ପ୍ରକାର ମାଗଣ କରନ୍ତି, ସେ ପ୍ରକାର ମାଗଣ ସମ୍ରାଟ କରିନାହାନ୍ତି । ସେ ଭାରତବର୍ଷର ଲୋକମାନଙ୍କଠାରୁ ଉଧାର ମାଗି ଅଛନ୍ତି । ରାଜା, ମହାରାଜା, ଧନୀ ଲୋକମାନଙ୍କଠାରୁ ଯେ ନିୟମରେ ଉଧାର ମାଗି ଅଛନ୍ତି ତାହା ଏଠାରେ ଲେଖିବାର ଆବଶ୍ୟକ ନାହିଁ । ଗରିବ ଲୋକମାନେ ଯେ ନିୟମରେ ଉଧାର ଦେଇପାରିବେ ସେ ବିଷୟ ଲେଖାଗଲା, ତାହା ଏହି – ସାତଟଙ୍କା ବାରଅଣା ଡାକଘରେ ଦାଖଲ କଲେ ପାଞ୍ଚବର୍ଷ ପରେ ଦଶଟଙ୍କା ପାଇବ । ପୋଷ୍ଟ ଅଫିସ୍‌ରେ ଟଙ୍କା ଦାଖଲ କଲେ ସେଠାରୁ

ଖଣ୍ଡିଏ ସାର୍ଟିଫିକେଟ୍ ମିଳିବ । ପାଞ୍ଚବର୍ଷ ପର୍ଯ୍ୟନ୍ତ ଯେ ଅପେକ୍ଷା କରିବାକୁ ହେବ ତାହା ନୁହେଁ, ପାଞ୍ଚବର୍ଷ ଅପେକ୍ଷା କଲେ ଦଶଟଙ୍କା ପାଇବେ, ତା' ପୂର୍ବରୁ ଟଙ୍କା ଓଆପସ ନେବାକୁ ଚାହିଁଲେ ନିମ୍ନଲିଖିତ ଦରରେ ପାଇବେ ।

| | | |
|---|---|---|
| ଜମାଦେବା ତାରିଖରୁ | ଏକବର୍ଷ ମଧ୍ୟରେ ଚାହିଁଲେ | ... ସାତଟଙ୍କା ବାରଅଣା |
| | ଏକବର୍ଷ ପରେ ଚାହିଁଲେ | ... ଆଠଟଙ୍କା ଏକ ଅଣା |
| | ପନ୍ଦରମାସ ପରେ ଚାହିଁଲେ | ... ଆଠଟଙ୍କା ଦୁଇଅଣା ଛଅ ପାହୁଲା |
| | ଅଠର ମାସ ପରେ ଚାହିଁଲେ | ... ଆଠଟଙ୍କା ଚାରି ଅଣା |
| | ଏକୋଇଶ ମାସ ପରେ ଚାହିଁଲେ | ... ଆଠଟଙ୍କା ପାଞ୍ଚ ଅଣା ଛଅ ପାହୁଲା |
| | ଦୁଇବର୍ଷ ପରେ ଚାହିଁଲେ | ... ଆଠ ଟଙ୍କା ସାତ ଅଣା |
| | ସତେଇଶମାସ ପରେ ଚାହିଁଲେ | ... ଆଠଟଙ୍କା ଆଠ ଅଣା ନଅ ପାହୁଲା |
| | ତିରିଶ ମାସ ପରେ ଚାହିଁଲେ | ... ଆଠଟଙ୍କା ଦଶ ଅଣା ଛଅ ପାହୁଲା |
| | ତେତିଶ ମାସ ପରେ ଚାହିଁଲେ | ... ଆଠଟଙ୍କା ବାର ଅଣା ତିନି ପାହୁଲା |
| | ତିନିବର୍ଷ ପରେ ଚାହିଁଲେ | ... ଆଠଟଙ୍କା ଚଉଦ ଅଣା |
| | ଅଣଚାଳିଶ ମାସ ପରେ ଚାହିଁଲେ | ... ନଅ ଟଙ୍କା |
| | ବୟାଳିଶ ମାସ ପରେ ଚାହିଁଲେ | ... ନଅ ଟଙ୍କା ଦୁଇ ଅଣା |
| | ପଇଁଚାଳିଶ ମାସ ପରେ ଚାହିଁଲେ | ... ନଅ ଟଙ୍କା ଚାରି ଅଣା |
| | ଚାରିବର୍ଷ ପରେ ଚାହିଁଲେ | ... ନଅ ଟଙ୍କା ଛଅ ଅଣା |
| | ଏକାବନ ମାସ ପରେ ଚାହିଁଲେ | ... ନଅ ଟଙ୍କା ଆଠ ଅଣା |
| | ଚଉବନ ମାସ ପରେ ଚାହିଁଲେ | ... ନଅ ଟଙ୍କା ଏଗାର ଅଣା |
| | ସତାବନ ମାସ ପରେ ଚାହିଁଲେ | ... ନଅ ଟଙ୍କା ତେର ଅଣା |
| | ପାଞ୍ଚବର୍ଷ ମାସ ପରେ ଚାହିଁଲେ | ... ଦଶଟଙ୍କା |

ମୋହୋର ଏକମାତ୍ର ଇଚ୍ଛା ଯେ ଓଡ଼ିୟା ଗରିବମାନଙ୍କ ମଧ୍ୟରୁ ଅନେକ ଲୋକ ଏ ବିଷୟରେ ସାହାଯ୍ୟ କରିବାକୁ ପ୍ରସ୍ତୁତ ହୁଅନ୍ତୁ । ତାଙ୍କର ଏ ବିଷୟରେ ବିଶ୍ୱାସ ଓ ଆଗ୍ରହ ଜନ୍ମାଇବା ନିମନ୍ତେ ମୁଁ ତାହାଙ୍କୁ ସାହାଯ୍ୟ କରିବାକୁ ପ୍ରସ୍ତୁତ । ସାତଟଙ୍କା ବାରଅଣା ଦେଲେ ଦଶଟଙ୍କାର ସାର୍ଟିଫିକେଟ୍ ପାଇବ, ଏହା ହେଉଛି ସରକାରଙ୍କର ନିୟମ –

ସାତ ଟଙ୍କା ବାର ଅଣା ମଧ୍ୟରୁ ମୁଁ ନିଜ ହାତରୁ ଏକ ଟଙ୍କା ବାର ଅଣା ଦେବାକୁ ସ୍ୱୀକାର କରିଅଛି । ଏହାର ଅର୍ଥ ଏହି କି କେହି ବ୍ୟକ୍ତି ଛଅ ଟଙ୍କା ଦେଲେ ଦଶଟଙ୍କାର ସାର୍ଟିଫିକେଟ ପାଇବ – ଅର୍ଥାତ୍ ଛଅଟଙ୍କାରେ ଫି ବର୍ଷକୁ ବାର ଅଣା ନଅ ପାହୁଲା ପାଇବ । ମୋ ସାଙ୍ଗରେ ସାର୍ଟିଫିକେଟର ଆଉ କୌଣସି ସମ୍ପର୍କ ରହିଲା ନାହିଁ । ମୁଁ କେବଳ ଗରିବ ଭାଇମାନଙ୍କୁ ସାହାଯ୍ୟ କରିବା ସକାଶେ ଏକ ଟଙ୍କା ବାରଅଣା ଦେବି ।

ବର୍ତ୍ତମାନ ଦୁଇ ହଜାର ସାର୍ଟିଫିକେଟ ନିମନ୍ତେ ଏକ ଟଙ୍କା ବାର ଅଣା ହିସାବେ ଯାହା ହେଉଅଛି ତାହା ମୁଁ ପୋଷ୍ଟ ଅଫିସ୍‌ରେ ଜମା କରିଦେଇଅଛି । ସବୁ ପୋଷ୍ଟ ଅଫିସ୍‌ରେ ସାର୍ଟିଫିକେଟ ମିଳିବ ନାହିଁ କି ଟଙ୍କା ଜମାନେବେ ନାହିଁ । ଯେଉଁ ପୋଷ୍ଟ ଅଫିସ୍‌ରେ ସେଭିଂସ ବ୍ୟାଙ୍କ ଅଛି ସେହି ପୋଷ୍ଟ ଅଫିସରେ ଦରଖାସ୍ତ କରିବାକୁ ହେବ ।

ତୁମ୍ଭେମାନେ ପଚାରିପାର ଏ ଟଙ୍କା କାହିଁରେ ଖରଚ ହେବ ? ଆମ୍ଭମାନଙ୍କର ଭାରତବର୍ଷ-ନିବାସୀ ବହୁସଂଖ୍ୟକ ସୈନ୍ୟ ଯୁଦ୍ଧ-କ୍ଷେତ୍ରରେ ଉପସ୍ଥିତ ଅଛନ୍ତି ଓ ପୃଥିବୀରେ 'ରାମରାଜ୍ୟ' ସ୍ଥାପନ ନିମନ୍ତେ ନିଜର ପ୍ରାଣ ଦେବାକୁ ପ୍ରସ୍ତୁତ ଅଛନ୍ତି । ଆମ୍ଭର ବହୁସଂଖ୍ୟକ ଭାଇମାନେ ଏଥିପୂର୍ବେ ପ୍ରାଣ ଦେଇଅଛନ୍ତି । ଆମ୍ଭମାନଙ୍କର ଯେଉଁ ଭାଇମାନେ ପ୍ରାଣ ଉତ୍ସର୍ଗ କରି ଆମ୍ଭମାନଙ୍କର ଭଲ ନିମନ୍ତେ ଚେଷ୍ଟା କରୁଅଛନ୍ତି ସେମାନଙ୍କର ଆହାର ଇତ୍ୟାଦି ଖର୍ଚ୍ଚ ନିମନ୍ତେ ଟଙ୍କାର ଆବଶ୍ୟକ । ଆଉ ସମସ୍ତ କଥା ଛାଡ଼ି ଏହି କାରଣରୁ ଆମ୍ଭମାନଙ୍କର ଏଥିରେ ସାହାଯ୍ୟ କରିବା ଉଚିତ । ସେମାନେ କି ପ୍ରକାର କଷ୍ଟ ଭୋଗ କରୁଅଛନ୍ତି ତାହା ଆମ୍ଭେମାନେ କଳ୍ପନା ସୁଦ୍ଧା କରିପାରୁ ନାହୁଁ ।

କଟକ — ॥ ଇତି ॥

ତା.୨.୪.୧୯୧୭ — ଶ୍ରୀ ମଧୁସୂଦନ ଦାସ

(ଡାକନାମ ମଧୁବାବୁ)

***

## (୬)

## ସମ୍ପାଦକଙ୍କୁ ପ୍ରେରିତ ପତ୍ର (୩)

ମହାଶୟ,

ଗତକାଲି ଗୋଟିଏ ବିଶେଷ ଘଟଣା ଘଟିଅଛି । ମୁଁ ମନେ କରେଁ ତାହା ସର୍ବସାଧାରଣଙ୍କର ଜାଣିବା ଉଚିତ । ମୁଁ ମଧ ବିଶ୍ୱାସ କରେଁ ଏହା ଦ୍ୱାରା ଓଡ଼ିଶାର ସାଧାରଣଙ୍କର ଗୋଟାଏ ବିଶେଷ ଭ୍ରାନ୍ତି ଦୂର ହେବ ।

ଏ ସପ୍ତାହରେ ବ୍ରାହ୍ମଣୀ ନଦୀରେ ବନ୍ୟା ହେତୁରୁ ଅନେକଗୁଡ଼ିଏ ଗ୍ରାମ ଜଳମଗ୍ନ

ହୋଇଥିବାର ଟେଲିଗ୍ରାଫ୍ କଟକର କେତେକ ଭଦ୍ରବ୍ୟକ୍ତିଙ୍କ ନିକଟ ଆସିଲା । ତା ୨୨ରିଖ ଗୁରୁବାର ଦିନ କଟକ ସହରର ଲାଲବାଗରେ ଅବସ୍ଥିତ ଦେୱାନୀ ଅଦାଲତ କଚେରିର କେତେକ ଓକିଲ ବନ୍ୟା ପ୍ରପୀଡ଼ିତ ବ୍ୟକ୍ତିମାନଙ୍କ ସାହାଯ୍ୟ ସକାଶ କଟକ ଓକିଲଖାନାରୁ ଓ ଅଦାଲତରେ ଅନ୍ୟାନ୍ୟ ଭଦ୍ରବ୍ୟକ୍ତିଙ୍କ ଠାରୁ ଚାନ୍ଦା ସଂଗ୍ରହ ବ୍ୟବସ୍ଥା କରିଥିଲେ ।

ଅନେକ ଓକିଲ (ବଙ୍ଗାଳି ଓଡ଼ିଆ ମାନ୍ଦ୍ରାଜୀ ନିର୍ବିଶେଷରେ) ଚାନ୍ଦା ଦେବାକୁ ପ୍ରତିଶ୍ରୁତ ହେଲେ । କେହି କେହି ମଧ୍ୟ ନଗଦ ଦେଲେ, କେହି କେହି କିଛି ନ ଦେଲେ । କିନ୍ତୁ ଯେଉଁମାନେ ଚାନ୍ଦା ସଂଗ୍ରହ କରୁଥିଲେ ସେମାନେ ଶ୍ରୀଯୁକ୍ତ ରାମଶଙ୍କର ରାୟ ଓକିଲ ମହାଶୟଙ୍କୁ ଚାନ୍ଦା ମାଗନ୍ତେ ସେ କହିଲେ ‘‘ଆମେ ଦେବା ନାହିଁ; କାରଣ this is a movement of Oriyas; I won't pay in that Oriya movement.’’ ଉକ୍ତ ମହାଶୟ ଉକ୍ତରୂପ କହିବା ବେଳେ ଶ୍ରୀଯୁକ୍ତ ବ୍ରଜରାଜ ଚଉଧୁରୀ ଓକିଲ ମହାଶୟ ସେଠାରେ ଉପସ୍ଥିତ ଥିଲେ । ସେ ମହାଶୟ ଅବଶ୍ୟ ଜଣେ ବଙ୍ଗାଳି କିନ୍ତୁ ସେ ମହାଶୟ ତହିଁର ପ୍ରତିବାଦ କରି କହିଲେ – ‘‘ଏତେ ଆର ଉଡ଼େ ବଙ୍ଗାଲି କି ଆଛେ; ଏ for saving humanity କରା ହଚେ ।’’ ତହୁଁ ରାମଶଙ୍କର ବାବୁ ମହାଶୟ କହିଲେ, ‘‘ଆମି ଓଦେର କହଚି, ତୁମି କେନ ପ୍ରତିବାଦ କରଚ । ଜାନ ଯଖନ ରଜନୀ ଡାକ୍ତର ଆମାଦେର under trial ଛିଲ ତଖନ ଆମି ଓର୍ କେସଟା defend କର୍‌ତେ Mr. Das କେ ବଲେ ଛିଲୁମ । ତିନି ବଲ୍‌ଲେନ ଓ ବାଙ୍ଗାଲୀ, ଆମି defend କରବନା । ଆମି କେନେ ଏ ଓଡ଼ିଆ movement ତେ ଚାନ୍ଦା ଦିବୋ ।’’ ତହୁଁ ଜଣେ ଚାନ୍ଦା ସଂଗ୍ରାହକ କହିଲେ – ‘‘Mr. Das ତ ବୋଧହୁଏ ରଜନୀକୁ defend କରିଥିଲେ’’ । ତହୁଁ ରାମଶଙ୍କର ବାବୁ ମହାଶୟ କହିଲେ – ‘‘ମୁଁ ତ asides ବ୍ରଜରାଜଙ୍କୁ କହୁଚି, ତୁମେ କାହିଁକି କହୁଚ ।’’

ରାମଶଙ୍କର ବାବୁଙ୍କୁ ଉକ୍ରଳସାହିତ୍ୟ ସମାଜର ସ୍ଥାୟୀ ସଭାପତି କରାଯାଇଅଛି । ତାଙ୍କର ବଡ଼ ଭାଇଙ୍କୁ ଓ ତାଙ୍କୁ ଓଡ଼ିଆମାନେ ଅଗ୍ରଣୀ କରି ଯେ ନାଚି ଆସୁଅଛନ୍ତି ସେମାନଙ୍କର ତାହା ଭ୍ରାନ୍ତି କି ରାମଶଙ୍କର ବାବୁଙ୍କର ଭ୍ରାନ୍ତି ତାହା ସ୍ଥିର ହେବା ଦରକାର । ବୋଧହୁଏ ଏଣିକି ରାମଶଙ୍କରବାବୁ ଓଡ଼ିଆ ମକ୍କେଲ ରାଜାଙ୍କର ଓକିଲାତି ଗ୍ରହଣ ନ କରିବାକୁ ପ୍ରତିଜ୍ଞା କରିବେ,that's litigation started by Oriyas । ନା, ସେତେବେଳକୁ ନୀତିଟା ବଦଳିଯିବ ।

ଆମ୍ଭେମାନେ ବଡ଼ ଦୁଃଖିତ ଯେ ରାମଶଙ୍କର ବାବୁଙ୍କ ସମ୍ବନ୍ଧେ ଆମ୍ଭେମାନେ ଆଜି ପର୍ଯ୍ୟନ୍ତ ଅନେକ ଭ୍ରାନ୍ତି ପୋଷଣ କରିଥିଲୁଁ । ଯେ ହେଉ ଆଜି ବହୁକାଳ ପରେ ରାମଶଙ୍କର ବାବୁ ବଙ୍ଗାଳି ହେବାକୁ ବସିଛନ୍ତି, କିନ୍ତୁ ପୁଅ କଲେଜରେ ଅଧ୍ୟାପକତ୍ୱ ପାଇଲାବେଳେ ବଙ୍ଗାଳୀ ହୋଇଥିଲେ କି ?

ଜଣେ ଓଡ଼ିଆ

## (୭)

# ଜମିଦାରୀରେ କେତେ ଲାଭ ?

ଭାରତର ଅନ୍ୟାନ୍ୟ ପ୍ରଦେଶ ଅପେକ୍ଷା ଓଡ଼ିଶା ଗରିବ । ଶିଳ୍ପ ଓ ବାଣିଜ୍ୟ ଧନାଗମର ପ୍ରଧାନ ବାଟ । ଓଡ଼ିଶାରେ ତାହା ନାହିଁ କହିଲେ ଚଳେ । ଯେଉଁ କେତେକ ଜଣଙ୍କ ହାତରେ କିଛି କିଛି ଟଙ୍କା ଅଛି ସେମାନଙ୍କ ମଧ୍ୟରୁ କେହି କେହି ମହାଜନୀ କରନ୍ତି । କେହି ଜମିଦାରୀ କିମ୍ବା ଜମି କିଣିଥାନ୍ତି । ଏହା ମଧ୍ୟରୁ ଜମିଦାରୀ କିଣିବାରେ କିପରି ଦେଶର ଅର୍ଥହାନି ହେଉଅଛି ତାହା ଆଜି ଆମ୍ଭେମାନେ ଆଲୋଚନା କରିବୁଁ ।

ଅଳ୍ପ କେତେଗୋଟି ମାହାଲ ଛାଡ଼ିଦେଲେ ଓଡ଼ିଶାର ସମସ୍ତ ବ୍ରିଟିଶ୍ଶାସନାଧୀନ ସ୍ଥାନ ସାନି ବନ୍ଦୋବସ୍ତର ଅଧୀନ ଅଟେ । ୧୮୯୭ ମସିହା ପୂର୍ବେ ଜମିଦାରମାନଙ୍କର ଯାହା ଲାଭ ଥିଲା, ବନ୍ଦୋବସ୍ତପରେ ସେ ଲାଭ ଆଉ ରହିଲା ନାହିଁ । ବନ୍ଦୋବସ୍ତ ରିପୋର୍ଟରୁ ଦେଖାଯାଏ ୧୮୯୭ ମସିହା ପୂର୍ବେ ଓଡ଼ିଶା ବନ୍ଦୋବସ୍ତ ମାହାଲ ଜମିଦାରମାନଙ୍କର ଆୟ ପ୍ରାୟ କୋଡ଼ିଏ ଲକ୍ଷ ଟଙ୍କା ଥିଲା । ବନ୍ଦୋବସ୍ତରେ ରାଜସ୍ୱ ବୃଦ୍ଧି ହେବାରୁ ସେମାନଙ୍କର ଆୟ ସତର ଲକ୍ଷ ଅଠେଇଶ ହଜାର ଟଙ୍କା ହେଲା ଏବଂ ଏହି ବନ୍ଦୋବସ୍ତ ତିରିଶ ବର୍ଷ ସକାଶ କାଏମ ରହିଲା । ସେହି ତିରିଶ ବର୍ଷ ପୂରିବାକୁ ଆଉ ତିନିବର୍ଷ ଅଛି । ସେହି ହେତୁ ପୁନର୍ବାର ବନ୍ଦୋବସ୍ତ ଆରମ୍ଭ ହେଲାଣି । ବନ୍ଦୋବସ୍ତପରେ ଦେଖାଯିବ ଯେ ଜମିଦାରଙ୍କ ଆୟ ଆହୁରି କମିଛି । ଏହିପରି ପ୍ରତି ତିରିଶ ବର୍ଷରେ ରାଜସ୍ୱ ପରିମାଣ ବେଶି ହୋଇ ଜମିଦାରଙ୍କର ଆୟ କମିବ । ଯେଉଁମାନେ ଜମିଦାରୀର ବର୍ତ୍ତମାନ ଆୟ ଦେଖି ଜରସମନ ଟଙ୍କା ଦେଉଅଛନ୍ତି ସେମାନେ ବନ୍ଦୋବସ୍ତପରେ ସେ ଜମିଦାରୀକୁ ବିକିବାକୁ ବସିଲେ ଆଉ ସେ ଟଙ୍କା ପାଇବେ ନାହିଁ । କାରଣ ସେତେବେଳେ ଜମିଦାରୀରେ ଯେ ଆୟ ଥିବ ତାହା ବନ୍ଦୋବସ୍ତରେ କମିଥିବ । ସୁତରାଂ କମ୍ ଆୟ ହେତୁ ଜମିଦାରୀର ଆଗ ଦାମ ଉଠିବ ନାହିଁ । ଏଥିର ଫଳ ହେବ ଏହି – ଯେ ପଚାଶ ହଜାର ଟଙ୍କା ଦେଇ ଜମିଦାରୀ କିଣିଥିବେ ସେ ତାକୁ ହୁଏତ ତିରିଶ ହଜାର ଟଙ୍କାରେ ବିକିବେ; ଅର୍ଥାତ୍ ତାହାଙ୍କର ମୂଳଧନ ପଚାଶ ହଜାରରୁ କମିଯାଇ ତିରିଶ ହଜାର ଟଙ୍କା ହେବ । ସେ ଟଙ୍କା ଦେଇ ଯେ ସମ୍ପତ୍ତି କିଣିବେ ତହିଁର ମୂଲ୍ୟ ଗଭର୍ଣ୍ଣମେଣ୍ଟଙ୍କ ଇଚ୍ଛା ଉପରେ ନିର୍ଭର କରିବ । ଗଭର୍ଣ୍ଣମେଣ୍ଟ ପ୍ରତି ବନ୍ଦୋବସ୍ତରେ ରାଜସ୍ୱ ବଢ଼ାଇ ବଢ଼ାଇ ଯାଉଥିବେ । ତଦନୁସାରେ ଜମିଦାରୀର ମୂଲ୍ୟ କମିଯାଉଥିବ ।

ଜମିଦାରୀରେ ଆଉ ଗୋଟିଏ ଅସୁବିଧା ଅଛି । ସର୍କାରୀ ରିପୋର୍ଟମାନଙ୍କରେ ଯାହା ବାହାରୁ ଥାଉ, ଆମ୍ଭେମାନେ ଦେଖୁଥାଉଁ ଯେ ଓଡ଼ିଶା ରୟତମାନଙ୍କର ଅବସ୍ଥା ଦିନକୁ ଦିନ ଅବନତି ଆଡ଼କୁ ଯାଉଛି । ଯେଉଁମାନେ କୃଷିଜୀବୀ ସେମାନେ ଚାଷ ଦ୍ୱାରା

ପୋଷିହୋଇ ନ ପାରିବାରୁ ଅନେକ ଲୋକ କଲିକତା ପ୍ରଭୃତି ଅଞ୍ଚଳକୁ ଯାଇ କୁଲି ମଜୁରି ଖଟୁଅଛନ୍ତି । ଯେଉଁମାନେ ଚାଷରେ ଲାଗିଅଛନ୍ତି ସେମାନଙ୍କ ଅବସ୍ଥା ମଧ୍ୟ ଭଲ ନୁହେଁ । ଜମିର ଉତ୍ପନ୍ନରୁ ଯାହା ଆମଦାନି ହେଉଛି ତଦ୍ଵାରା କୁଟୁମ୍ବ ପୋଷି ଜମିଦାରଙ୍କ ଖଜଣା ସହଜରେ ଦେଇପାରୁନାହାନ୍ତି । ଓଡ଼ିଶାର ଗତ ବନ୍ଦୋବସ୍ତରେ ଯେ ପରିମାଣରେ ଖଜଣା ନାଲିସ ହେଉଅଛି ତହିଁରୁ ପ୍ରଜାମାନଙ୍କର ଅବସ୍ଥାର ପରିଚୟ ମିଳିବ । ସୁତରାଂ ଉପସ୍ଥିତ ଖଜଣା ଲୋକେ ସହଜରେ ଦେଇପାରୁ ନଥିବା ସ୍ଥଳେ ଗଭର୍ଣ୍ଣମେଣ୍ଟ ସେହି ଖଜଣାକୁ ବଢ଼ାଇଦେଇ ଅସୁଲ କରିବା ସକାଶ ଜମିଦାରଙ୍କ ଜିମା ଦେଇଦେବେ । ଏଥିରେ କେତେ ସହଜରେ ଖଜଣା ଆଦାୟ ହେବ ତାହା ପାଠକମାନେ ବୁଝିପାରୁଥିବେ । ଏଣେ ପ୍ରଜାଙ୍କ ପେଟରୁ କାଟି ତାଙ୍କ ଉପରେ ଯେପରି ଯୋଲମ ନ ହୁଏ ସେଥିସକାଶ ଆଇନ କରିଅଛନ୍ତି । ଯେବେ କୌଣସି ଜମିଦାର ଖଜଣା ଅସୁଲ କରିବାକୁ ପ୍ରଜାଙ୍କ ଉପରେ ଅତ୍ୟାଚାର କରେ ତାହାହେଲେ ଗୋଟିଏ ଫୌଜଦାରୀ ମୋକଦ୍ଦମାରେ ତାହାଙ୍କୁ ସର୍ବସ୍ୱାନ୍ତ ହେବାକୁ ହୋଇପାରେ । ଗଭର୍ଣ୍ଣମେଣ୍ଟଙ୍କର ପ୍ରଜାଙ୍କ ଉପରେ ଯେ ସୁଦୃଷ୍ଟି, ତାହା ଗଛର ଚେରକାଟି ଉପରେ ପାଣି ଢାଳିବା ପରି ଅଟେ । ପ୍ରଜାମାନେ ଦରିଦ୍ରତାହେତୁ ଯେଉଁ କର ଦେଇପାରୁନାହାନ୍ତି ସେ କରକୁ ବୃଦ୍ଧି କରିବାରେ [ସରକାର] କୁଣ୍ଠିତ ହେଲେ ନାହିଁ । ଅର୍ଥାତ୍ ଭାତରେ ମାରି ହାତରେ ଆଉଁସିଲେ । ଏଥିନେଇ ପ୍ରଜାଙ୍କ ଆଖିରେ ଦୋଷୀ ହେବେ ଜମିଦାର । ଏପରି ଜମିଦାରୀରେ ଯାହା ଲାଭ ତାହା ସହଜରେ ଅନୁମାନ କରାଯାଇପାରେ । ଆମ୍ଭ ଏ ପ୍ରଦେଶରେ ଅତ୍ୟଳ୍ପ ଲୋକଙ୍କ ହାତରେ ଟଙ୍କା ଅଛି । ସେ ଟଙ୍କାକୁ ଯେବେ ସେମାନେ ଜମିଦାରୀ କିଣିବାରେ ଲଗାନ୍ତି ତାହାହେଲେ ମୂଳଧନ ଟଙ୍କା ଆଉ ସେମାନଙ୍କ ହାତକୁ ଫେରିଆସିବ ନାହିଁ । ସେ ଟଙ୍କା ମାଟିରେ ପଡ଼ି ମାଟି ହୋଇଯିବ । ରାଜସ୍ୱ ନିଲାମରେ ଜମିଦାରୀମାନ ଯେପରି ମୂଲ୍ୟରେ ଆମ୍ଭ ଏ ପ୍ରଦେଶରେ ବିକ୍ରୟ ହେଉଛି ତହିଁରୁ ତାହାର ଲାଭ ସହଜରେ ଜଣାପଡୁଅଛି । ଏଣିକି ଆମ୍ଭ ଦେଶର ଧନିମାନେ ଯେବେ ଟଙ୍କାକୁ ମାଟିରେ ପରିଣତ ନ କରି ଦେଶରେ କମ୍ପାନୀ ସ୍ଥାପନପୂର୍ବକ କଳକାରଖାନା ଦ୍ୱାରା ଶିଳ୍ପର ଉନ୍ନତି କରନ୍ତି ତାହା ହେଲେ ସେମାନେ ଯେ ମୂଳଧନ ଟଙ୍କାର ଲାଭ ପାଇବେ ତାହା ନୁହେଁ, ତଦ୍ଵାରା ଦେଶର ସହସ୍ର ସହସ୍ର ଲୋକଙ୍କୁ ଜୀବିକା ଯୋଗାଇପାରିବେ ଏବଂ ସେମାନଙ୍କ ନିଜର ଉନ୍ନତି ହେବା ସଙ୍ଗେ ସଙ୍ଗେ ଦେଶର ଉନ୍ନତି ହେବ । କଳକାରଖାନା ନିର୍ମିତ ଦ୍ରବ୍ୟମାନ ଦେଶବିଦେଶରୁ ଟଙ୍କା ଆଣି ଜାତିର ଧନ ବଢ଼ାଇବ ।

***

## (୮)

## ସମ୍ପାଦକଙ୍କୁ ପ୍ରେରିତ ପତ୍ର(୪)

ଶ୍ରୀଯୁକ୍ତ ଉତ୍କଳ ଦୀପିକାର ସମ୍ପାଦକ ମହାଶୟ ସମୀପେଷୁ

ଉତ୍କଳ ଟାନେରୀ ସମ୍ବନ୍ଧେ ଅନେକ ଧନୀଲୋକଙ୍କର ମୋ ସହିତ କଥାବାର୍ତ୍ତା ହୋଇଅଛି । ସମସ୍ତଙ୍କର ମତ ଯେ, ଏ କାରଖାନା ଓଡ଼ିଆଜାତିର ସମ୍ପତ୍ତି ସ୍ୱରୂପ ରହିବା ଉଚିତ । ଯେଉଁ ବ୍ୟକ୍ତିମାନେ କାରଖାନାକୁ ଯାଇଅଛନ୍ତି, ସେମାନଙ୍କ ମଧ୍ୟରୁ କେହି କେହି କହିଅଛନ୍ତି, ଏ କାରଖାନା ଅନ୍ୟ ଜାତିର ସମ୍ପତ୍ତି ହେଲେ ଓଡ଼ିଶାବାସୀମାନଙ୍କ ପକ୍ଷେ ଅତିଶୟ ନିନ୍ଦାର କଥା ହେବ । କେହି କେହି ଇଚ୍ଛା ପ୍ରକାଶ କରିଅଛନ୍ତି ଯେ ଜଣେ ନିର୍ଦ୍ଦିଷ୍ଟ ଲୋକ ଉପରେ ଏହାର ପରିଚାଳନାର ଭାର ରହିଲେ, ଲୋକେ ଅଂଶ କ୍ରୟ କରିବେ । ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଉପରେ ଏ କାରଖାନାର କାର୍ଯ୍ୟପ୍ରଣାଳୀର କୌଣସି ପ୍ରକାର ଭାର ରହିବ କି ନା ? — ଏହି ପ୍ରକାର ପ୍ରଶ୍ନ ମୋତେ କେହି କେହି ପଚାରିଥିଲେ । ସେହି ସମ୍ବନ୍ଧେ ମୁଁ ଉକ୍ତ ମହାଶୟଙ୍କ ସହିତ କଥାବାର୍ତ୍ତା କରିଥିଲି । ତାଙ୍କର ଯାହା ଉତ୍ତର ଏଥିସଙ୍ଗେ ପଠାଇଲି । ଏ ପତ୍ର ଏବଂ ପଣ୍ଡିତ ଗୋପବନ୍ଧୁଙ୍କର ମତ ସର୍ବସାଧାରଣଙ୍କ ଜାଣିବା ନିମନ୍ତେ ପ୍ରକାଶ କରିଲେ ବାଧିତ ହେବି ।

ଓଡ଼ିଶାରେ କମ୍ପାନୀଦ୍ୱାରା କାରଖାନା ଚଳାଇବାର ଏ ପ୍ରଥମ ଚେଷ୍ଟା । ଯେ ପ୍ରକାର ପ୍ରଶ୍ନମାନେ ମତେ କରା ହୋଇଅଛି, ସେଥିରୁ ସ୍ପଷ୍ଟ ଜଣାହେଉଛି ଯେ କମ୍ପାନୀଦ୍ୱାରା କାର୍ଯ୍ୟ ପରିଚାଳନା ନିମନ୍ତେ ଯେ ଗୋଟିଏ ଆଇନ ଅଛି, ତାହା ଲୋକେ ଜାଣନ୍ତି ନାହିଁ । ସେ ଆଇନ ସନ ୧୯୧୩ ମସିହାର ୭ ଆଇନ । ଆଜିକାଲି ଦୁଇ ଚାରିଜଣ ମିଶି ଗୋଟିଏ ଦୋକାନ ବା କାରବାର କରନ୍ତି । ସେମାନଙ୍କୁ ମଧ୍ୟ ସାଧାରଣ ଲୋକମାନେ କମ୍ପାନୀ ବୋଲି କହନ୍ତି । ଏ ପ୍ରକାର ଲୋକମାନେ କୌଣସି ଆଇନର ନିୟମଦ୍ୱାରା ବାଧ୍ୟ ନୁହନ୍ତି, କିମ୍ବା ତାଙ୍କର କାର୍ଯ୍ୟ ପ୍ରଣାଳୀ ସମ୍ବନ୍ଧେ କୌଣସି ଆଇନରେ କିଛି ନିୟମ ନାହିଁ । ଉତ୍କଳ ଟାନେରୀ କମ୍ପାନୀ ସନ ୧୯୧୩ ମସିହାର ୭ ଆଇନ ମତେ ରେଜେଷ୍ଟରୀ ହୋଇଅଛି । ଏକଥା କମ୍ପାନୀର ପ୍ରସ୍‌ପେକ୍ଟସ ଓ ନିୟମାବଳୀ ଓ ବିଜ୍ଞାପନମାନଙ୍କରେ ସ୍ପଷ୍ଟ ପ୍ରକାଶ କରାଯାଇଅଛି । ଅନୁମାନ ହୁଏ, ଏ ବିଷୟ ସାଧାରଣ ଲୋକେ ଲକ୍ଷ୍ୟ କରିନାହାନ୍ତି । ଏ କମ୍ପାନୀର କାର୍ଯ୍ୟ ଉପରୋକ୍ତ ଆଇନମତେ କରିବାକୁ ହେବ । କାର୍ଯ୍ୟ ପରିଚାଳନାର ଭାର କାହା ଉପରେ ରହିବ ତାହା ଅଂଶୀଦାରମାନେ ନିର୍ଣ୍ଣୟ କରିବେ । କମ୍ପାନୀର ପ୍ରଥମ କାର୍ଯ୍ୟ ହେଉଛି, ଚାଳିଶ ହଜାର ଅଂଶ ବିକ୍ରୟ କରିବା । ବିକ୍ରୟ କରିବାର ଅର୍ଥ ଏହି ଯେ,ଚାଳିଶ ହଜାର ଅଂଶ ନେବା ନିମନ୍ତେ

ଦରଖାସ୍ତ ଓ ପ୍ରତ୍ୟେକ ଅଂଶ ସମ୍ବନ୍ଧେ ଆଠ ଟଙ୍କା କିମ୍ବା ଚାରିଟଙ୍କା ବ୍ୟାଙ୍କରେ ଦାଖଲ ହେବ । ଯେଉଁମାନେ ଫାଉଣ୍ଡେସନ ସେୟାର ନେବେ, ସେମାନେ ପ୍ରତ୍ୟେକ ଅଂଶ ସମ୍ବନ୍ଧେ ଆଠ ଟଙ୍କା ଦାଖଲ କରିବେ ଓ ସାଧାରଣ ଅଂଶ ନେବାର ପ୍ରାର୍ଥୀମାନେ ଚାରି ଟଙ୍କା ଦାଖଲ କରିବେ । ଯେତେବେଳେ ପର୍ଯ୍ୟନ୍ତ ସମସ୍ତ ୪୦ ହଜାର ଅଂଶର ଦରଖାସ୍ତ ଓ ଟଙ୍କା ବ୍ୟାଙ୍କରେ ଦାଖଲ ହୋଇନାହିଁ, ସେତେବେଳେ ପର୍ଯ୍ୟନ୍ତ ଦରଖାସ୍ତକାରୀର ଟଙ୍କା ବ୍ୟାଙ୍କରେ ଜମା ରହିବ ଏବଂ କମ୍ପାନୀର ଡାଇରେକ୍ଟରମାନେ ସେ ଟଙ୍କା ନେଇ କୌଣସି କାର୍ଯ୍ୟ କରିପାରିବେ ନାହିଁ ।

ଚାଳିଶ ହଜାର ଅଂଶ ସମ୍ବନ୍ଧେ ଉପରୋକ୍ତ ପ୍ରକାର ଗ୍ରାହକ ନିର୍ଣ୍ଣୟ ହେଲେ ବର୍ତ୍ତମାନ ଡାଇରେକ୍ଟରମାନେ ଆଇନ ଅନୁସାରେ ସରକାରଙ୍କୁ ଜଣାଇ ସେୟାର ବଣ୍ଟନ କରିବେ; ଅର୍ଥାତ୍ ପ୍ରତ୍ୟେକ ଦରଖାସ୍ତକାରୀଙ୍କୁ ତାଙ୍କ ପ୍ରାର୍ଥନାମତେ ଅଂଶଦେଇ ତାଙ୍କଠାରେ ଥିବା ବ୍ୟାଙ୍କର ରସିଦ ଫେରାଇ ନେଇ [ଅଂଶ] ସାର୍ଟିଫିକେଟ ଦେବେ । ବର୍ତ୍ତମାନ ଯେଉଁମାନେ ଡାଇରେକ୍ଟର ଅଛନ୍ତି, ସେମାନଙ୍କର କାର୍ଯ୍ୟ କେବଳ ଅଂଶ ବିକ୍ରୟ କରିବା ଓ ଦରଖାସ୍ତକାରୀମାନଙ୍କୁ ସେମାନଙ୍କର ଅଂଶ ସାର୍ଟିଫିକେଟ ଦେବା । ଆହୁରି ମଧ ତାଙ୍କୁ ଅନ୍ୟ କେତେକ କାର୍ଯ୍ୟ କରିବାକୁ ହେବ; କିନ୍ତୁ ପରିଚାଳନାର ଭାର ଅର୍ଥାତ କିଏ ମ୍ୟାନେଜର ରହିବ, କି କେତେଜଣ ମ୍ୟାନେଜର ରହିବେ, କାହା ଉପରେ କି ଭାର ଦିଆଯିବ, ଏସବୁ ବିଷୟ ଅଂଶକ୍ରେତାମାନଙ୍କ ମତାନୁସାରେ ସ୍ଥିର କରାଯିବ । ଏଥିରୁ ସ୍ପଷ୍ଟ ପ୍ରକାଶ ହେବ, କାହା ଉପରେ ପରିଚାଳନାର ଭାର ରହିବ, ତାହା ଅଂଶୀଦାର ଯେଉଁମାନେ ହେଲେ ସେମାନଙ୍କୁ ପଚାରିବାର ଉଚିତ । ପ୍ରକୃତରେ ଯଦ୍ୟପି ଓଡ଼ିଶାବାସୀମାନେ ଏ କାରଖାନାର ଲାଭ ପାଇବାକୁ ଇଚ୍ଛା କରନ୍ତି, ତାହାହେଲେ ସେମାନଙ୍କର ଅନ୍ୟାନ୍ୟ ସ୍ଥଳରେ ଯେ ପ୍ରକାର କାର୍ଯ୍ୟ ହୁଏ, ସେହି ପ୍ରଣାଳୀ ଅବଲମ୍ବନ କରିବା ଉଚିତ ।

ବର୍ତ୍ତମାନ ୩୦ ହଜାର ସେୟାର ବିକ୍ରୀ ନ ହେବା ପର୍ଯ୍ୟନ୍ତ କୌଣସି କାର୍ଯ୍ୟ ହୋଇପାରେନାହିଁ । ଏ ଅଂଶମାନ ଶୀଘ୍ର ବିକ୍ରୟ ନ ହେଲେ ବର୍ତ୍ତମାନ ଡାଇରେକ୍ଟରମାନେ ଗଭର୍ଣ୍ଣମେଣ୍ଟଙ୍କୁ ଜଣାଇବେ ଯେ କମ୍ପାନୀ ଆଇନାନୁସାରେ ଗଠିତ ହୋଇପାରିଲା ନାହିଁ, ଅତଏବ ଆମ୍ଭେମାନେ ବ୍ୟାଙ୍କରେ ଅମାନତ ଥିବା ଟଙ୍କା ଦରଖାସ୍ତକାରୀମାନଙ୍କୁ ଫେରିଦେବା ନିମନ୍ତେ ଆଦେଶ ଦେଲୁ ଏବଂ ଯେଉଁମାନେ ଟଙ୍କା ଜମା ଦେଇଥିଲେ ସେମାନଙ୍କୁ ଟଙ୍କା ଫେରସ୍ତ ନେବା ନିମନ୍ତେ ନୋଟିସ୍ ଦେଲୁ । ଏ କାର୍ଯ୍ୟ ଯେ ପ୍ରକାର ଅଳ୍ପ ସମୟ ମଧରେ ହୋଇପାରେ ତାହା ନିମ୍ନରେ ବାଖ୍ୟା କଲି ।

୩୦ଜଣ ଧନୀ, ଯେ ପ୍ରତ୍ୟେକେ ଆଠହଜାର ଟଙ୍କା ଦେଇପାରନ୍ତେ, ସେମାନେ ପ୍ରତ୍ୟେକେ ହଜାର ଅଂଶ କ୍ରୟ କରନ୍ତୁ । ଏ ହଜାର ଅଂଶ ମଧରୁ ଯାହା ସେମାନେ

ନିଜେ ରଖିବାକୁ ନ ଚାହାନ୍ତି ତାହା ଆପଣାର ବନ୍ଧୁବାନ୍ଧବମାନଙ୍କୁ ପଶ୍ଚାତ୍ ବିକ୍ରୟ କରିପାରନ୍ତି । ଉକ୍ତ ପ୍ରକାର ୩୦ ଜଣ ଏକତ୍ର ହୋଇ ପରିଚାଳନାର ସମ୍ବନ୍ଧେ ସମସ୍ତ ବିଷୟ ସ୍ଥିର କରିପାରନ୍ତି । ମୁଁ ବିଶ୍ୱାସ କରେ, ଆଠ ହଜାର ଟଙ୍କା ଦେବାର ଶକ୍ତି ଅଛି, ଏ ପ୍ରକାର ୩୦ଜଣ ଲୋକ ଓଡ଼ିଶାରେ ଅଛନ୍ତି ଏବଂ ସେମାନେ ଇଚ୍ଛା କଲେ ସମସ୍ତ ଅଂଶ ଆଠଦିନ ମଧ୍ୟରେ ବିକ୍ରୟ ହୋଇପାରେ । କେବଳ ଏ ପ୍ରକାର ଲୋକମାନଙ୍କର ସନ୍ଦେହ ଯେ – ଆଠହଜାର ଟଙ୍କା ମୋର ବୁଡ଼ିଯିବ କି ନା ? କିନ୍ତୁ ଏ ସମ୍ବନ୍ଧେ ତାଙ୍କର ସ୍ମରଣ ରଖିବା ଉଚିତ, ସେମାନଙ୍କ ନିଜ ହସ୍ତରେ ପରିଚାଳନାର ଭାର ନ୍ୟସ୍ତ ହେଲା । ସେମାନେ ଆପଣା ମଧ୍ୟରେ ଡାଇରେକ୍ଟର ଇତ୍ୟାଦି ନିଯୁକ୍ତ କରିପାରନ୍ତି କିମ୍ବା ବାହାରର ଲୋକ ନିଯୁକ୍ତ କରିପାରନ୍ତି । ମୁଁ ଜାଣେ ଯେ ମକଦ୍ଦମା ଚଳାଇବା ନିମନ୍ତେ ଲୋକେ ମୁରବିଗିରି କରି ଲକ୍ଷ ଲକ୍ଷ ଟଙ୍କା ଖରଚ କରିଅଛନ୍ତି । ଏପରି ସ୍ଥଳେ କି କାରଣରୁ ଟଙ୍କା ଦିଅନ୍ତି, ତାହା ବୁଝାଯାଏ ନାହିଁ । ଗୋଟିଏ ସମ୍ପତ୍ତିକୁ ସେ ସମ୍ପତ୍ତିର ମାଲିକ ଏକ ଜଣକୁ ବିକ୍ରୟ କରି, କବଲା ଲେଖିଦେଇ, ପୁନରାୟ ସେହି ସମ୍ପତ୍ତି ଅନ୍ୟ ଜଣକୁ ବିକ୍ରି କରିବାକୁ ପ୍ରସ୍ତୁତ ହେଲେ, ସେଥିରେ ମଧ୍ୟ ଲୋକେ ଟଙ୍କା ଦେଉଅଛନ୍ତି । ସାଧାରଣତଃ ଲୋକଙ୍କର ବିଶ୍ୱାସ ଯେ, କୋର୍ଟ ଅଫ୍ ୱାର୍ଡ଼ସ୍‌ରେ ସମ୍ପତ୍ତି ରହିଲେ ଉତ୍ତମ ପ୍ରଣାଳୀରେ ପରିଚାଳନା ହୁଏ ଏବଂ ଜମିଦାରୀର ମୁନାଫାରୁ ଟଙ୍କା ଜମାହୁଏ । ମୁଁ ଜାଣେ ଏହି ଓଡ଼ିଶାରେ ଅନେକ ଜମିଦାରୀର ସଂଚିତ ଧନରେ କୋର୍ଟ ଅଫ୍ ୱାର୍ଡସ୍ କମ୍ପାନୀ-କାଗଜ କିଣିଥିଲେ । କେହି କେହି ଲକ୍ଷ ଲକ୍ଷ ଟଙ୍କାର କମ୍ପାନୀ-କାଗଜ କୋର୍ଟ ଅଫ୍ ୱାର୍ଡ଼ସ୍ ହାତରୁ ପାଇଥିଲେ । ବର୍ତ୍ତମାନ ଲକ୍ଷେ ଟଙ୍କା କାଗଜର ମୂଲ୍ୟ ଷାଠିଏ ହଜାରରୁ ଅଧିକ ନୁହେଁ, ଏକ ସମୟରେ ୫୦ ହଜାର ହୋଇଯାଇଥିଲା । ବର୍ତ୍ତମାନ ଗଭର୍ଣ୍ଣମେଣ୍ଟ ୧୫କ୍ରୋଡ଼ ଟଙ୍କା କରଜ କରିବା ନିମନ୍ତେ ପ୍ରସ୍ତୁତ ହୋଇ ବିଜ୍ଞାପନ ଦେଇଅଛନ୍ତି । ମୁଁ ନିଶ୍ଚୟ ଜାଣେ ଯେ ଏ ଟଙ୍କା ସମସ୍ତ ସାଧାରଣ ଲୋକେ ଦେଇ କମ୍ପାନୀ-କାଗଜ କିଣିବେ । ଏ ଟଙ୍କା ଓ ଏଥିର ସୁଧ କିଏ ଦେବ ? ଲୋକମାନଙ୍କଠାରୁ ଗଭର୍ଣ୍ଣମେଣ୍ଟ ଆଦାୟ କରି ସୁଧ ଦେବେ ଏବଂ ଅବଶେଷରେ ଅସଲ ପରିଶୋଧ କରିବେ । ଏଥିରେ ଲୋକଙ୍କର ବିଶ୍ୱାସ ପାଉଅଛି, କିନ୍ତୁ ଆଠହଜାର ଟଙ୍କା ଦେଇ ନିଜ ହାତରେ ସେ ଟଙ୍କାର ବ୍ୟବହାର କରିବାର କ୍ଷମତା ଥିଲେ ମଧ୍ୟ ଅବିଶ୍ୱାସ ହେଉଅଛି । ନିଜର ପ୍ରତି ଯାହାର ଅବିଶ୍ୱାସ ତାହାର ଅନ୍ୟ କାହାର ପ୍ରତି ବିଶ୍ୱାସ ହେବାର ସମ୍ଭବ ନୁହେଁ ।

କଟକ — ବଶମ୍ବଦ,

୩୦ । ୭ ।୨୪ — ମଧୁସୂଦନ ଦାସ

***

(୯)

## ଓଡ଼ିଶାର ବର୍ତ୍ତମାନ ଶୋଚନୀୟ ଅବସ୍ଥା

ବର୍ତ୍ତମାନ ଦଶ ଲକ୍ଷରୁ ଅଧିକ ଓଡ଼ିଶାର ଲୋକେ ବିଦେଶରେ କଳାକାରଖାନାରେ କାମ କରୁଅଛନ୍ତି । ସେ କଳକାରଖାନାର ମାଲିକ ଅର୍ଥାତ୍ ଯେଉଁମାନେ ଧନ ଦେଇ କାରଖାନା ନିର୍ମାଣ କରିଅଛନ୍ତି ଓ ଚଳାଉଅଛନ୍ତି ସେମାନେ ଅନ୍ୟ ଜାତି ଲୋକ, ଓଡ଼ିଆ ନୁହନ୍ତି । ସେମାନଙ୍କର କାରଖାନାରେ ଦେଇଥିବା ଧନ ଲାଭଦ୍ୱାରା ବୃଦ୍ଧି ପାଉଅଛି । ସେହି ହେତୁରୁ ତାଙ୍କ କାରଖାନାରେ କାର୍ଯ୍ୟ କରୁଥିବା ଓଡ଼ିଆମାନଙ୍କୁ ବେଶି ମଜୁରି ଦେଉଅଛନ୍ତି ।

ଓଡ଼ିଶାର ଧନିମାନେ ନିଜର ଧନରେ ଜମିକ୍ରୟ ଓ ଜମିବନ୍ଧକ ନେଇ କରଜ ଦେଉଅଛନ୍ତି । ଜମିର ଉର୍ବରାଶକ୍ତି କ୍ରମେ ହ୍ରାସ ପାଉଅଛି । ଏ ହେତୁରୁ ଜମି କର୍ଷଣରେ ପିଡ଼ିଆ ଖତ ଓ କେନାଲର ପାଣି ଏ ସମସ୍ତ ଅଧିକ ବ୍ୟୟ ହେଉଅଛି । ଗଭର୍ଣ୍ଣମେଣ୍ଟଙ୍କର ରାଜ୍ୟ ଚଳାଇବାର ଖରଚ କ୍ରମେ ବଢୁଅଛି । ଏ ହେତୁରୁ ସମୟେ ସମୟେ ବନ୍ଦୋବସ୍ତ କାର୍ଯ୍ୟ ହୋଇ ଜମିର ଖଜଣା ବୃଦ୍ଧି ହେଉଅଛି । ଗୋଟିଏ ମୌଜାରେ ଯେଉଁ ପରିମାଣ ଜମି ଅର୍ଥାତ୍ ଯେତେ ମାଣ ଜମି ପଚାଶବର୍ଷ ପୂର୍ବେ ଥିଲା ବର୍ତ୍ତମାନ ମଧ ସେତିକି ମାଣ ଜମିଅଛି । ଜମିର ପରିମାଣ ବୃଦ୍ଧି ହୋଇନାହିଁ କିମ୍ବା ବୃଦ୍ଧି କରିବାର କୌଣସି ଉପାୟ ନାହିଁ। ପଚାଶବର୍ଷ ପୂର୍ବେ ଗୋଟିଏ ଚାଷିର ଘରେ ପାଞ୍ଚଜଣ ଖାଇବାକୁ ଥିଲେ । ବର୍ତ୍ତମାନ ସେହି ଘରେ ଦଶଜଣ କି ପନ୍ଦରଜଣ ହେଲେଣି । ଜମି ବଢ଼ିନାହିଁ, ଖାଇବାବାଲା ବଢ଼ିଲେ । ଲୋକମାନଙ୍କର ଅଭାବ ମଧ ବଢ଼ିଅଛି । ବିଦେଶରୁ ଆସୁଥିବା ଦ୍ରବ୍ୟମାନ ଲୋକେ ବ୍ୟବହାର କରିବାକୁ ଶିକ୍ଷା କରିଅଛନ୍ତି । ଉଦାହରଣସ୍ୱରୂପ ମନେ କରି ଦେଖନ୍ତୁ ତାଳପତ୍ର ଛତାର ବ୍ୟବହାର ଉଠିଗଲାଣି । ତାହା ପରିବର୍ତ୍ତେ କପଡ଼ା ଛତା ସମସ୍ତେ ବ୍ୟବହାର କରୁଅଛନ୍ତି । ତାଳପତ୍ର ଛତା ଓ କପଡ଼ା ଛତା, ଏଇ ଦୁଇ ପଦାର୍ଥର ମୂଲ୍ୟ ତୁଳନା କଲେ କି ପରିମାଣେ ଖରଚ ବଢ଼ିଅଛି, ତାହା ଜାଣିପାରିବେ । ଏ ଅଭାବ ଘୁଞ୍ଚାଇବା ନିମନ୍ତେ ଶ୍ରମଜୀବୀମାନଙ୍କର ଉପାର୍ଜନ-ଶକ୍ତି ବଢ଼ାଇବାକୁ ହେବ । ଅର୍ଥାତ୍ ସେମାନେ ଯେପ୍ରକାର ଅଧିକ ଉପାର୍ଜନ କରିବେ ସେ ପ୍ରକାର କାର୍ଯ୍ୟମାନ ତାଙ୍କୁ ଦେବାକୁ ହେବ । କଳଦ୍ୱାରା ଉପାର୍ଜନ ଶକ୍ତି ବଢ଼େ । ଜଣେ ମନୁଷ୍ୟ କଳ ସାହାଯ୍ୟ ଦ୍ୱାରା ପଚାଶଜଣ ମନୁଷ୍ୟଙ୍କର କାର୍ଯ୍ୟ କରିପାରେ । ଏହି ହେତୁରୁ ପୃଥିବୀରେ ସର୍ବତ୍ର କଳର ବ୍ୟବହାର ହେଉଅଛି ।

ମନୁଷ୍ୟ ଅର୍ଥ ଉପାର୍ଜନ ତିନୋଟି ଶକ୍ତି ଦ୍ୱାରା କରେ । ସେ ତିନୋଟି ଶକ୍ତି — ଧନ, ମନ, ଜନ । ଯେଉଁ ବ୍ୟକ୍ତିର ଧନ ଅଛି, ସେ ତାହାର ଧନର ବ୍ୟବହାର ଦ୍ୱାରା ଅର୍ଥ

ଉପାର୍ଜନ କରେ । ମନ ଅର୍ଥାତ୍ ମାନସିକ ଶକ୍ତି ଗୋଟିଏ ଧନ ଉପାର୍ଜନର ଉପାୟ । ଲୋକେ ଲେଖାପଢ଼ା ଶିକ୍ଷା କରି ମାନସିକ ଶକ୍ତି ଉନ୍ନତି କରି ତାହାର ବ୍ୟବହାର ଦ୍ୱାରା ଅର୍ଥ ଉପାର୍ଜନ କରିବାକୁ ଚେଷ୍ଟା କରନ୍ତି । ଜନ ଅର୍ଥାତ୍ ଯେଉଁମାନେ ଶ୍ରମଜୀବୀ ସେମାନେ ହାତର ବ୍ୟବହାର ଦ୍ୱାରା ଅର୍ଥ ଉପାର୍ଜନ କରନ୍ତି । ଧନ,ଜନ, ମନ ପ୍ରତ୍ୟେକ ଜାତିର କିମ୍ବା ସମାଜର ଅଙ୍ଗସ୍ୱରୂପ ଅଟନ୍ତି । ଯେ ପ୍ରକାର ଶରୀରର ପ୍ରତ୍ୟେକ ଅଙ୍ଗ ସୁସ୍ଥ ଅବସ୍ଥାରେ ନ ଥିଲେ ଶାରୀରିକ ସ୍ୱାସ୍ଥ୍ୟହେବାର [ସୁସ୍ଥ ହେବାର] ଅସମ୍ଭବ, ସେହି ପ୍ରକାର ଗୋଟିଏ ଜାତିର ଏହି ତିନିଶ୍ରେଣୀର ଲୋକମାନେ ପରସ୍ପର ସାହାଯ୍ୟ ନ କଲେ ଜାତିର ଉନ୍ନତି ହେବାର ଅସମ୍ଭବ । କି ପ୍ରକାରେ ଏ ତିନି ଶ୍ରେଣୀର ଲୋକେ ସଦ୍‌ଭାବ ରଖି ପ୍ରତ୍ୟେକ ଲାଭଜନକ କାର୍ଯ୍ୟରେ ନିଯୁକ୍ତ ହୋଇପାରନ୍ତି; ଏହି ବିଷୟ ବିବେଚନା କରିବା ପ୍ରତ୍ୟେକ ଓଡ଼ିଶାବାସୀର ଉଚିତ । ଏ ବିଷୟ ଆଲୋଚନା ପ୍ରତି ଗ୍ରାମରେ, ପ୍ରତି ସ୍କୁଲ୍ ଛାତ୍ରମାନଙ୍କ ମଧ୍ୟରେ, ହାଟରେ, ଘାଟରେ, ବାଟରେ ହେବା ଉଚିତ । ବର୍ତ୍ତମାନ ମହାଜନ ଓ ଖାତକମାନଙ୍କ ମଧ୍ୟରେ ସଦ୍‌ଭାବ ନାହିଁ । ଜମିଦାର ଓ ପ୍ରଜାଙ୍କ ମଧ୍ୟରେ ସଦ୍‌ଭାବ ନାହିଁ । କଲେଜରୁ ଯେଉଁମାନେ ବିଦ୍ୟା ଉପାର୍ଜନ କରୁଅଛନ୍ତି ସେମାନେ ଖାଇବାକୁ ପାଉନାହାନ୍ତି । ଲକ୍ଷ ଲକ୍ଷ ଲୋକ ଦେଶରେ ଜୀବିକା ନିର୍ବାହର ଉପାୟ ନ ପାଇ ବିଦେଶରେ ଯାଇ କାର୍ଯ୍ୟ କରୁଅଛନ୍ତି । ଏହିସବୁ ବିଷୟ ସମସ୍ତଙ୍କର ଆଲୋଚନା କରିବା ଉଚିତ୍ ।

***

## (୧୦)
## ପ୍ରଚାରପତ୍ର(୨)

"ଉଠରେ ଉଠରେ ଉତ୍କଳ ସନ୍ତାନ
ଉଠିବୁ ତୁ କେତେ ଦିନେ
ପୂରୁବ କୀରତି ପୂରୁବ ଗୌରବ
ପଡ଼ିବ କି ତୋର ମନେ ।"

ଓଡ଼ିଶା ଶହେ ବର୍ଷରୁ ଅଧିକ ହେଲା ଇଂରେଜ ରାଜାଙ୍କ ଶାସନରେ ଆସିଲାଣି । ଏହି ଦୀର୍ଘ ସମୟ ମଧ୍ୟରେ ଭାରତବର୍ଷର ଅନ୍ୟ ପ୍ରଦେଶମାନ କେତେ ଉନ୍ନତି କରିଛି । ମାତ୍ର ଓଡ଼ିଆ ଜାତି ପଡ଼ିଛି ସଭିଙ୍କ ପଛରେ । ଏଥିର କାରଣ ଖୋଜିଲେ ଦେଖାଯିବ ଯେ ଇଂରେଜ ରାଜତ୍ୱ ଆରମ୍ଭ ହେଲା ଦିନଠାରୁ ଓଡ଼ିଆଙ୍କର ଭାଗ୍ୟଡୋରି ରହିଛି ଅନ୍ୟ ଜାତିର ହାତରେ । ଯେତେବେଳେ ଓଡ଼ିଶା ବଙ୍ଗଦେଶ ସଙ୍ଗେ ମିଶି ରହିଥିଲା ସେତେବେଳେ ଶାସନ ପରିଚାଳନ ବହୁ ପରିମାଣରେ ବଙ୍ଗାଳୀଙ୍କ ହାତରେ ଥିଲା ।

ସେମାନେ ନିଜ ଜାତିର ଉନ୍ନତି ଆଡ଼େ ଚେଷ୍ଟା ନ କରି ଓଡ଼ିୟାମାନଙ୍କର ଉନ୍ନତି କରିବେ ଏହା ଆଶା କରାଯାଇ ନ ପାରେ । ଫଳରେ ଓଡ଼ିୟାମାନେ ରାଜାଙ୍କର ଯତ୍ନ ଓ ସହାନୁଭୂତି ଯଥୋଚିତ ରୂପେ ନ ପାଇ ଅନୁନ୍ନତ ହୋଇ ବଙ୍ଗୀୟମାନଙ୍କ ପଛକୁ ରହିଗଲେ ।

ପ୍ରାୟ ଏକ ଶହ ବର୍ଷକାଳ ଓଡ଼ିଶା ଏହିପରି ଅବହେଳା ପାଇ ରହିବା ପରେ ତାହାକୁ କାଢ଼ିନେଇ ବିହାର ସଙ୍ଗେ ମିଶାଇ ଗୋଟିଏ ନୂଆ ପ୍ରଦେଶ ଗଢ଼ାଗଲା – ମାତ୍ର ଶାସନ ପରିଚାଳନା ବିହାରୀଙ୍କ ହାତରେ ବିଶେଷ ପରିମାଣରେ ରହିବାରୁ ବଙ୍ଗ ସହିତ ଥିବାବେଳେ ଓଡ଼ିୟାମାନଙ୍କର ଯେ ଅବସ୍ଥା ବର୍ତ୍ତମାନ ମଧ୍ୟ ସେହି ଅବସ୍ଥା ।

ବଡ଼ ଗଛର ଛାଇରେ ସାନ ଗଛ ଉଧାଇ ପାରେ ନାହିଁ । ଓଡ଼ିୟାମାନଙ୍କର ହୋଇଛି ସେହି ଦଶା । ବଙ୍ଗାଳୀ ଓ ବିହାରୀ ସଂଖ୍ୟାରେ ଓଡ଼ିୟାଙ୍କଠାରୁ ଅଧିକ । ସେମାନେ ଇଂରେଜ ଶାସନର ନାନାଦି ସୁବିଧା ହାତରେ ପାଇବାରୁ ତାହା ନିଜ ନିଜ ଉନ୍ନତିରେ ଲଗାଇ ଓଡ଼ିୟାଙ୍କଠାରୁ ଆଗକୁ ଯାଇଅଛନ୍ତି । ସେମାନଙ୍କ ସହିତ କିମ୍ବା ସେହିପରି ଅନ୍ୟ କୌଣସି ଜାତିଙ୍କ ସହିତ ମିଶି ରହିଲେ ଆମ୍ଭେମାନେ ରାଜାଙ୍କର ଯଥୋଚିତ ସାହାଯ୍ୟ ଓ ସହାନୁଭୂତି ପାଇ ପାରିବାନାହିଁ ଓ ଆମ୍ଭ ଜାତିର ଅବସ୍ଥା ଦିନକୁ ଦିନ ଅବନତ ହେବ । ଏହା ଦେଖିପାରି ମୁଁ ଗତ ୩୦ବର୍ଷ ହେଲା ଚେଷ୍ଟା କରୁଛି ଯେପରି ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ଗଭର୍ଣ୍ଣମେଣ୍ଟଙ୍କ ଅଧୀନରେ ରହୁ । ସେ ପ୍ରସ୍ତାବ ଗଭର୍ଣ୍ଣମେଣ୍ଟଙ୍କ ବିବେଚନାରେ ଯୁକ୍ତିସଙ୍ଗତ ହେବାରୁ ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହେବାର ସ୍ଥିର ହୋଇଛି ଏବଂ ଯେଉଁସବୁ ସ୍ଥାନକୁ ନେଇ ଏହି ନୂଆ ପ୍ରଦେଶ ଗଠିତ ହେବ ତାହା ସ୍ଥିର କରିବା ପାଇଁ ଗଭର୍ଣ୍ଣମେଣ୍ଟ କେତେଜଣ ଉପଯୁକ୍ତ ବ୍ୟକ୍ତିଙ୍କୁ କମିସନର ନିଯୁକ୍ତ କରିଅଛନ୍ତି । ସେମାନେ ଶୀଘ୍ର ଏ ବିଷୟ ସ୍ଥିର କରିବେ ।

ସିଂହଭୂମ ଜିଲ୍ଲା ଓଡ଼ିଶା ଅନ୍ତର୍ଗତ ହେବ କି ନା ଏ ବିଷୟ ଉପରୋକ୍ତ କମିସନଙ୍କ ଦ୍ୱାରା ସ୍ଥିର ହେବ । ଜାମସେଦପୁର ସିଂହଭୂମ ମଧ୍ୟରେ । ସେଠାରେ ଯେଉଁ କାରଖାନା ଅଛି ତହିଁରେ ଅନେକ ଓଡ଼ିୟା କାର୍ଯ୍ୟ କରନ୍ତି । ଜାମସେଦପୁର ଓଡ଼ିଶା ଅନ୍ତର୍ଗତ ହେଉ ଏହା ଯେ ସେମାନେ ଇଚ୍ଛା କରିବେ ଏଥିରେ କୌଣସି ସନ୍ଦେହ ନାହିଁ । ଜାମସେଦପୁର କି ପ୍ରକାର ଓଡ଼ିଶା ଅନ୍ତର୍ଗତ ହେବ ସେ ସମ୍ବନ୍ଧେ କେତେକ ବିଷୟ ଅନୁସନ୍ଧାନ ପାଇଁ ମୁଁ ଅକ୍ଟୋବର ମାସ ୨୩ ତାରିଖରେ ସେଠାକୁ ଯାଇଥିଲି । ସେଠାରେ କାର୍ଯ୍ୟ କରୁଥିବା ଓଡ଼ିୟା ଭାଇମାନଙ୍କ ସହିତ ଦେଖା କରିବାକୁ ଶୀଘ୍ର ପୁନର୍ବାର ଜାମସେଦପୁର ଯିବି । ଯେଉଁଦିନ ସେଠାକୁ ଯିବି ଆଗରୁ ତାହା ଜଣାଇବି । ଜାମସେଦପୁର ଓଡ଼ିଶା ଅନ୍ତର୍ଗତ କରିବାକୁ ଚେଷ୍ଟା କରିବାରେ ଚାନ୍ଦା ସଂଗ୍ରହ କିମ୍ବା ପଇସା ଖର୍ଚ୍ଚର ଆବଶ୍ୟକ ନାହିଁ । ଆପଣମାନଙ୍କୁ ମୋହର ବିଶେଷ ଅନୁରୋଧ ଏହି ଯେ ମୋ ସହିତ ଦେଖାହେବା ପର୍ଯ୍ୟନ୍ତ ଆପଣମାନେ ଅନ୍ୟଜାତିର ଲୋକ ଅର୍ଥାତ୍ ବଙ୍ଗାଳୀ, ବିହାରୀ, ପଞ୍ଜାବୀ,

ସାନ୍ତାଳ, ହୋ ପ୍ରଭୃତି କାହାରି ସହିତ ବାଦବିସମ୍ବାଦ କରିବେ ନାହିଁ । ବନ୍ଧୁ ଭାବରେ ଆପଣମାନଙ୍କର ଦାବି ସମର୍ଥନ କରିବା ନିମନ୍ତେ ସମସ୍ତଙ୍କୁ ଅନୁରୋଧ କରିବେ ।

ଓଡ଼ିୟାମାନେ ଏତେକାଳ ବଡ଼ ଗଛ ଛାଇରେ ଥିବାରୁ ବଢ଼ି ପାରିନାହାନ୍ତି । ଈଶ୍ୱରଙ୍କଠାରେ ପ୍ରାର୍ଥନା କରିବେ ଯେପରି ସେମାନେ ଏଣିକି କାହାରି ଛାଇତଳେ ନ ରହି ଗୋଟିଏ ସ୍ୱତନ୍ତ୍ର ପ୍ରଦେଶରେ ବିନା ବାଧାରେ ନିଜ ଜାତିର ଉନ୍ନତି ବିଧାନ କରିବାକୁ ସୁବିଧା ପାଉନ୍ତୁ ।

କଟକ
୨.୧୧.୩୧

ଶ୍ରୀ ମଧୁସୂଦନ ଦାସ
(ଡାକନାମ ମଧୁବାବୁ)

***

## (ଖ) ପ୍ରତିକ୍ରିୟା ଓ ମତାମତ

### (୧)

### ଦେଶମିଶ୍ରଣ ଓ ଅସହଯୋଗ ଆନ୍ଦୋଳନ

ଶରୀରର ଅଙ୍ଗପ୍ରତ୍ୟଙ୍ଗ ସମଭାବରେ କାର୍ଯ୍ୟକାରୀ ହେଲେ ଶରୀର ସୁସ୍ଥ ରହିବ । ଯଦି ବଡ଼ ବଡ଼ କେତୋଟି ଅଙ୍ଗ ସାନ ସାନ ଅଙ୍ଗ ଉପରେ ଅସଦ୍‌ଭାବ କି ବୈରଭାବ ପୋଷଣ କରନ୍ତି, କି 'ଆମେ ବଡ଼,ଏ ଛୋଟ' ଏହି ମନୋଭାବରେ ମାଡ଼ି ଦଳି ଚାଲନ୍ତି, ତେବେ ସାନ ସାନ ଅଙ୍ଗର ଉନ୍ନତି କେବେ ସମ୍ଭବ ହୋଇପାରିବ ନାହିଁ । ଓଡ଼ିଆଙ୍କ ଅବସ୍ଥା ଭାରତବର୍ଷରେ ଏହାହିଁ ହୋଇଛି । ବଙ୍ଗ, ବିହାର, ମାନ୍ଦ୍ରାଜ ପ୍ରଭୃତି ରାଜ୍ୟ ଇଂରେଜ ରାଜତ୍ୱରେ ବହୁ ଆଗରୁ ସ୍ୱତନ୍ତ୍ର ବା ଏକ ଶାସନାଧୀନରେ ରହି ଆସିଛନ୍ତି । ଏହି କାରଣରୁ ସେମାନେ ଖଣ୍ଡବିଖଣ୍ଡିତ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଲୋକଙ୍କ ଅପେକ୍ଷା ବେଶି ଉନ୍ନତି କରିପାରିଛନ୍ତି । ଏମାନଙ୍କ ତୁଳନାରେ ଓଡ଼ିଆଙ୍କ ଅଗ୍ରଗତି କିଛି ନୁହେଁ । ଏମାନଙ୍କୁ ଏକ ସ୍ୱତନ୍ତ୍ର ଗଣ୍ୟମାନ୍ୟ ଜାତି ବୋଲି ସ୍ୱୀକାର କରିବାକୁ ପଡ଼ୋଶୀମାନେ ନାରାଜ । ନିଜ ଘର ତ ଭାଙ୍ଗିଯାଇଛି, ରହିବାକୁ ଜାଗା ନାହିଁ; ନିଜ ଘରେ ପରବାସୀ ହୋଇ ଓଡ଼ିଆମାନେ ରହିଛନ୍ତି । ନିଜେ ବଞ୍ଚି ରହିଲେ ସିନା ମହାଭାରତୀୟ ଭାବ ଦେଖେଇବେ । ସ୍ୱତନ୍ତ୍ର ପ୍ରଦେଶ କିମ୍ୱା ଏକ ଶାସନାଧୀନରେ ସମସ୍ତେ ନ ରହିଲେ ଓଡ଼ିଆ ଜାତି ରହିବା ସମ୍ଭବ ନୁହେଁ । ଏହା ଅତି ଜରୁରୀ ହୋଇ ପଡ଼ିଲାଣି । ଅସହଯୋଗ ଆନ୍ଦୋଳନ କିଛିଦିନ ଅପେକ୍ଷା କରିପାରେ; କିନ୍ତୁ ଦେଶମିଶ୍ରଣ କେବେ ଅପେକ୍ଷା କରିପାରିବ ନାହିଁ ।...

ଅସହଯୋଗ ଆନ୍ଦୋଳନର ବହୁ ନେତାଙ୍କର ନିଜ ରାଜ୍ୟରେ ଓଡ଼ିଆଙ୍କ ପରି ସମସ୍ୟା ନାହିଁ । ସେମାନେ ଆମର ସମସ୍ୟାର ଗୁରୁତ୍ୱ କିପରି ବୁଝିବେ ? ବ୍ରିଟିଶ୍ ସରକାରଙ୍କ ଦ୍ୱାରା ହିଁ ଦେଶମିଶ୍ରଣ ସମ୍ଭବ । ପଡ଼ୋଶୀ ରାଜ୍ୟର ବଡ଼ ବଡ଼ ନେତାମାନେ ଯେତେ ମହାଭାରତୀୟ ଭାବ ଦେଖାଇଲେ ମଧ୍ୟ ଦେଶମିଶ୍ରଣବେଳକୁ ଆମ ବିରୁଦ୍ଧରେ ଲଢ଼ିବେ ।...

ବଙ୍ଗ ଭଙ୍ଗ ହେବାରୁ ଅରବିନ୍ଦ ତୀବ୍ର ଆନ୍ଦୋଳନ କଲେ; କିନ୍ତୁ ଓଡ଼ିଆମାନେ ତ ପୁଣି ଶହେ ବର୍ଷ ହେଲା ଖଣ୍ଡ ବିଖଣ୍ଡିତ ହୋଇ ପଡ଼ିଛନ୍ତି, ସେଥିପାଇଁ ସେ କି ଆନ୍ଦୋଳନ କରିଥିଲେ ?...

***

## (୨)

## ଶୋକବାର୍ତ୍ତା

... ସାଧାରଣ ଜୀବନରେ ତାଙ୍କ [ଗୋପବନ୍ଧୁଙ୍କ ସହ] ସହିତ ମୋର ଯେ ସଦ୍‌ଭାବ ଥିଲା, ଏବେ ସେ ସବୁ ସୁଖସ୍ମୃତି ମନେ ପଡ଼େ । କେତେ ବର୍ଷ ହେଲା ଆମ୍ଭେ ଦୁହେଁ ଏକାଠେଇଁ ବସି କଥାବାର୍ତ୍ତା ହୋଇନାହୁଁ; ଓଡ଼ିଶାର ଭବିଷ୍ୟତ ପାଇଁ ଏକତ୍ର ବିଚାର କରିନାହୁଁ । ଆମ୍ଭମାନଙ୍କର ଜୀବନ ଅଲଗା ହେଲେ କଣ ହେବ, ଆମ୍ଭମାନଙ୍କର ମତଦ୍ୱୈଧ ଥିଲେ କଣ ହେବ, ଗୋପବନ୍ଧୁଙ୍କର ଜୀବନୀ ମହତ୍, ଏହା ଉତ୍କଳର ଜାତୀୟ ସମ୍ପଦ । ମୋର ଆଶା ସେ ଯେଉଁ କାର୍ଯ୍ୟ ବାକି ରଖିଛନ୍ତି, ତାଙ୍କର ବନ୍ଧୁମାନେ ତାକୁ ଚଳାଇବେ । ପରଲୋକଗତ ନେତାଙ୍କର କାର୍ଯ୍ୟ ଚଳାଇବାହିଁ ତାଙ୍କ ପକ୍ଷେ ଶ୍ରେଷ୍ଠ ସମ୍ମାନ । ସେ ଯେତେବେଳେ କର୍ତ୍ତବ୍ୟରେ ଲାଗିଛନ୍ତି ଭଗବାନ ତାଙ୍କୁ ସେହି ସମୟରେ ନେଇଗଲେ । ମୋର ଆଶା, ଉତ୍କଳବାସୀ ପଣ୍ଡିତ ଗୋପବନ୍ଧୁଙ୍କର ଯଥାର୍ଥ ସମ୍ମାନ କରିବେ ।

***

## (୩)

## ସମ୍ବର୍ଦ୍ଧନା ଦେବାପାଇଁ ହୋଇଥିବା ପ୍ରସ୍ତାବର ଉତ୍ତର

ମୋ ଜୀବିତାବସ୍ଥାରେ ମୋ ସମ୍ବନ୍ଧରେ ଫକିର(ଫକୀରମୋହନ ସେନାପତି), ଗୋଦାବରୀଶ(ଗୋଦାବରୀଶ ମିଶ୍ର), ବଳ(ନନ୍ଦକିଶୋର ବଳ), ମେହେର(ଗଙ୍ଗାଧର ମେହେର) ପଦ୍ୟ ଲେଖିଛନ୍ତି । ମୁଁ ତ ଦୁର୍ବଳଚିତ୍ତ; ଏଥିରେ ମୁଁ ପ୍ରଶଂସିତ ହେଲି ବୋଲି ଅନୁଭବ କରୁଛି; କିନ୍ତୁ ପ୍ରକୃତରେ ଏପରି ହେବା ଉଚିତ ନୁହେଁ । ଯେଉଁ ଯୁଗରେ ଜଣେ ବ୍ୟକ୍ତି ଜନ୍ମଗ୍ରହଣ କରିଛି, ସେହି ଯୁଗରେ ଇତିହାସରେ ତାହାର ସ୍ଥାନ ନିର୍ଣ୍ଣୀତ ହେବା ଉଚିତ ନୁହେଁ । ଲୋକେ ତାଙ୍କୁ ଦେଖୁଛନ୍ତି, ଚିହ୍ନିଛନ୍ତି, ତାଙ୍କ ସହିତ ଘନିଷ୍ଠ ସମ୍ପର୍କରେ ଆସିଛନ୍ତି । ହୁଏତ, ତାଙ୍କୁ ଦେଖି ଚିହ୍ନି ଘୃଣା କରିଛନ୍ତି, କି ପ୍ରଶଂସା କରିଛନ୍ତି, କି ପୂଜା କରିଛନ୍ତି । ତାଙ୍କର ଦୋଷ ଦୁର୍ବଳତା, କି ସଦ୍‌ଗୁଣକୁ ସେ ଆଖିଆଗରେ ଦେଖୁଛନ୍ତି, ଅନୁଭବ କରୁଛନ୍ତି । ଫଳରେ ଘୃଣା, ପ୍ରଶଂସା, ଈର୍ଷା ପ୍ରଭୃତି ଦ୍ୱାରା ଲୋକଙ୍କ ଦୃଷ୍ଟି କଳୁଷିତ ହୋଇଯାଉଛି । ଏଥିରେ ମନୁଷ୍ୟର ପ୍ରକୃତ ମୂଲ୍ୟାୟନ ସମ୍ଭବ ନୁହେଁ । ପରବର୍ତ୍ତୀ ଯୁଗର ଲୋକେ କେବଳ ଏହି ମୂଲ୍ୟାୟନ ଠିକ୍ ଭାବରେ କରିପାରିବେ । ନେତାର ସ୍ୱଯୁଗର ଲୋକଙ୍କର ଚକ୍ଷୁ ଯେଉଁସବୁ କାରଣରୁ କଳୁଷିତ ହୋଇଥାଏ, ତାହା ଏମାନଙ୍କ ପକ୍ଷେ ସମ୍ଭବ ନୁହେଁ । ଏମାନେ ତାଙ୍କର ସମ୍ପର୍କରେ

ଆସିନାହାନ୍ତି, କି ଘୃଣା କି ପ୍ରଶଂସାଦ୍ୱାରା କଳୁଷିତ ହୋଇଥିବା ଚକ୍ଷୁରେ ତାଙ୍କୁ ଦେଖିନାହାନ୍ତି । ସେମାନେ ବିଚାର କରି ଦେଖିବେ, ଏହି ଲୋକଟି ଉପରେ ଜାତି କି ଗୁରୁ ଦାୟିତ୍ୱ ନ୍ୟସ୍ତ କରିଥିଲା, ତାକୁ କି କ୍ଷମତା ଅର୍ପଣ କରିଥିଲା, ବିପଦ ଓ ଧ୍ୱଂସ ସମ୍ମୁଖରେ ତାହାର ନେତୃତ୍ୱକୁ ଚାହିଁଥିଲା କି ନାହିଁ, ବିଶ୍ୱାସ ରଖିଥିଲା କି ନାହିଁ, ଏହାଙ୍କ ନିଷ୍ପତ୍ତି ଉପରେ ଜାତିର ଇତିହାସର ଗତି ନିର୍ଭର କରୁଥିଲା କି ନାହିଁ । ଏସବୁ ବିଷୟ ପରବର୍ତ୍ତୀ ଯୁଗର ଲୋକଙ୍କ ଦ୍ୱାରା ନିର୍ଣ୍ଣୀତ ନ ହେବା ପର୍ଯ୍ୟନ୍ତ କୌଣସି ଲୋକର ଇତିହାସରେ ସ୍ଥାନ ନିର୍ଣ୍ଣୟ କରିବା ଅନୁଚିତ ।

***

# (ଗ) ବିଜ୍ଞାପନସମୂହ

## (୧)

## ବିଜ୍ଞାପନ

କଟକର ଅନ୍ତଃପାତି ଏକ ଗଡ଼ଜାତର ଜରୀବ କାର୍ଯ୍ୟ କରିବା ସକାଶେ ଏକ ଜଣ ମୋହର[ରି]ର ଦରକାର ଅଛି । ଯେଉଁମାନେ ସରବେରି ଜରୀବ ଓ ଭଉଁରିୟା କାର୍ଯ୍ୟ ଉତ୍ତମ ରୂପେ ଜାଣନ୍ତି ସେମାନେ ଆପଣା ଆପଣା ସାର୍ଟିଫିକେଟ୍ ସହିତ ଆମ୍ଭ ନିକଟରେ ଏକ ସପ୍ତାହ ମଧ୍ୟରେ ଆବେଦନ କରିବେ । ଯୋଗ୍ୟତା ବିବେଚନାରେ ବେତନ ଧାର୍ଯ୍ୟ ହେବ ।

ଇତି

କଟକ — ଶ୍ରୀ ମଧୁସୂଦନ ଦାସ

୨୮ । ୧୧ ।୯୦ — ଉକୀଲ

***

## (୨)

## NOTICE

ଏତଦ୍ୱାରା ସର୍ବସାଧାରଣଙ୍କୁ ଜ୍ଞାତ କରାଯାଉଅଛି ଯେ ଯେଉଁ ଭୂମ୍ୟଧିକାରିମାନେ ତାହାଙ୍କ ଭୂମିର ଉପରିସ୍ଥ ପୁରାତନ ପୁଷ୍କରିଣୀକୁ ନିକଟବର୍ତ୍ତୀ ଲୋକମାନଙ୍କୁ ପାନୀୟଜଳ ଯୋଗାଇବା ସକାଶେ ପରିଷ୍କାର କରିବାକୁ ଇଚ୍ଛା କରନ୍ତି ସେମାନେ ତଳଲିଖିତ ବ୍ୟକ୍ତିଙ୍କ ଠାରେ ତାଙ୍କର ଇଚ୍ଛା ଜଣାଇବେ । ଲୋକାଲ ବୋର୍ଡ଼ ଗ୍ରାମ୍ୟସ୍ଥ ପୁଷ୍କରିଣୀ ପରିଷ୍କାର କରିବାକୁ ପ୍ରସ୍ତୁତ ଅଛନ୍ତି ଯଦି ସେ ଭୂମ୍ୟଧିକାରିମାନେ ଲୋକଲ ବୋର୍ଡ଼ଙ୍କୁ ତାହାଙ୍କର ପୁଷ୍କରିଣୀ ପରିଷ୍କାର ରଖିବାର ଭାରଅର୍ପଣ କରନ୍ତି କିମ୍ବା ପୁଷ୍କରିଣୀ ଦାନ କରନ୍ତି ।

M.S.Das

Chairman

Sudder Local Board, Cuttack

***

## (୩)

## ଗାଡ଼ି ବିକ୍ରୟ

ଗୋଟିଏ ଗୋଲାକାର ଚାରିଚକିଆ ଘୋଡ଼ାଗାଡ଼ି କି ତହିଁର ସମ୍ମୁଖ ଦିଗରେ ଆଇନା ଲାଗିଅଛି ଏବଂ ଫରମାସ ମତେ କଲିକତାର ବିଖ୍ୟାତ ଡାଇକ କମ୍ପାନିଙ୍କ ଦ୍ୱାରା ନିର୍ମାଣ ହୋଇଥିଲା ବିକ୍ରୟ ହେବାର ଅଛି । ଏ ଗାଡ଼ି ଠିକ୍ ନୂଆପରି ଅଛି କେବଳ ମାଲିକଙ୍କର ଦରକାର ନ ହେବାରୁ ବିକି ଦେଉଅଛନ୍ତି । ଖରିଦ ମୂଲ୍ୟ ୧୭୦୦ଟଙ୍କା । ଯେ କେହି ପସନ୍ଦ ମୁତାବକ ଦାମ ଯାଚିବ ତାହାକୁ ବିକ୍ରୟ କରାଯିବ । ଯାହାଙ୍କର କିଣିବାର ଇଚ୍ଛା ହେବ ବାବୁ ମଧୁସୂଦନ ଦାସ ଓକିଲଙ୍କ ଠାରୁ ସକଳ କଥା ବୁଝିବେ ।

***

## (୪)

## [ବିଜ୍ଞାପନ]

ଆମ୍ଭେ ମାନ୍ୟବର ହାଇକୋର୍ଟ ରେଭିନ୍ୟୁ ବୋର୍ଡ଼ ଏବଂ କଲିକତାର ଅନ୍ୟାନ୍ୟ ଅଫିସମାନଙ୍କରେ ମୋକଦ୍ଦମା ପ୍ରଭୃତି ଚଳାଇବାକୁ ପ୍ରସ୍ତୁତ ଅଛୁଁ । ଯେଉଁମାନେ ଆମ୍ଭଙ୍କୁ ତହିଁରେ ଓକିଲ ନିଯୁକ୍ତ କରିବାକୁ ଚାହାନ୍ତି ସେମାନେ ନିମ୍ନଲିଖିତ ଠିକଣାରେ ପତ୍ରାଦି ଲେଖିବେ ।

Sd/M.S.Das
28, Bally Gunja,
Calcutta

***

## (୫)

## ବିଜ୍ଞାପନ

ଆମ୍ଭେ କୁଆଁପାଳ ଡାକଘର ବାଟେ ଲାଲସିହାଇରେ ଲିଖିତ ଖଣ୍ଡେ ବେନାମି ପତ୍ର ପାଇଅଛୁଁ । ତହିଁରେ ଲେଖକ ଆମ୍ଭ ନାମରେ ଆମ୍ଭର ପ୍ରିୟବନ୍ଧୁ ସ୍ୱର୍ଗୀୟ ରାୟ ନନ୍ଦକିଶୋର ଦାସ ବାହାଦୁର ଏବଂ ଅନ୍ୟ କେତେକ ବ୍ୟକ୍ତିଙ୍କ ପ୍ରତି ଆମ୍ଭେ ଆପଣା କର୍ତ୍ତବ୍ୟ କାର୍ଯ୍ୟରେ ତ୍ରୁଟି କରିବାର ଅଭିଯୋଗ ଆଣିଅଛନ୍ତି । ଯଦ୍ୟପି ଲେଖକ ଆମ୍ଭ ନିକଟକୁ ଆସିବେ

ତେବେ ଆମ୍ଭେ ତାହାଙ୍କୁ କେତେକ କାଗଜପତ୍ର ଦେଖାଇବୁ ଯେ ତହିଁରୁ ସେ ଏ ବିଷୟରେ ଆମ୍ଭେ କି କରିଅଛୁ ତାହା ଜାଣିପାରିବେ । ଯେବେ ଏହା କରିବାକୁ ତାହାଙ୍କର ଇଚ୍ଛା ନ ହେବ ତେବେ ବେନାମି ପତ୍ର ଲିଖିତ ଉପଦେଶଦ୍ୱାରା ଆମ୍ଭର ହିତ ହେବାର ସେ ଆଶା କରି ନ ପାରନ୍ତି । ତାହାଙ୍କ ଲେଖାରୁ ଜଣାଯାଏ ଯେ ସେ କେବଳ ଏକପକ୍ଷର କଥା ଶୁଣିଅଛନ୍ତି ।

କଟକ — ଶ୍ରୀ ମଧୁସୂଦନ ଦାସ

୧୯ । ୪ ।୯୮

***

## (୬)

## ବିଜ୍ଞାପନ

ପୁରୀକ୍ଷେତ୍ରସ୍ଥ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ମନ୍ଦିରର କାର୍ଯ୍ୟ ବର୍ତ୍ତମାନ ନିତାନ୍ତ ଅସନ୍ତୋଷଜନକ ରୂପେ ନିର୍ବାହ ହେଉଥିବାରୁ ତାହା ସନ୍ତୋଷଜନକ ରୂପେ ଚଳାଇବାର କି ବ୍ୟବସ୍ଥା କରିବାକୁ ହେବ, ଏହି ବିଷୟ ବିବେଚନା କରିବା କାରଣ ଆସନ୍ତା ମଇ ମାସ ୨ ତାରିଖ ସୋମବାର ଅପରାହ୍ଣ ୬ ଘଣ୍ଟା ସମୟରେ କଟକ ପ୍ରିଣ୍ଟିଂ କମ୍ପାନିଙ୍କ କୋଠାରେ ଉତ୍କଳ ସଭାର ଏକ ସାଧାରଣ ଅଧିବେଶନ ହେବ । ସର୍ବସାଧାରଣଙ୍କୁ ଏହି ଅଧିବେଶନରେ ଉପସ୍ଥିତ ହେବା କାରଣ ଅନୁରୋଧ କରୁଅଛୁଁ ।

ଶ୍ରୀ ମଧୁସୂଦନ ଦାସ
ସଭାପତି

ତା ୨୬ ରିଖ ଅପ୍ରେଲ
ସନ ୧୮୯୮ ମସିହା

ଶ୍ରୀ ଗୌରୀଶଙ୍କର ରାୟ
ସମ୍ପାଦକ

***

## (୭)

## ବିଜ୍ଞାପନ

ଆମ୍ଭେ ଅବଗତ ହୋଇଅଛୁଁ ଯେ ଅଂଶ ଖରିଦ ନିମନ୍ତେ ଆବେଦନପତ୍ର ପଠାଇବାର ଯେଉଁ ସମୟ ଧାର୍ଯ୍ୟ ହୋଇଥିଲା ତାହା ଅଳ୍ପ ହେବା ଏବଂ ସେ ବିଷୟର ବିଜ୍ଞାପନ

ଯଥା ସମୟରେ ଲୋକଙ୍କ ହସ୍ତଗତ ନ ହେବା ହେତୁ ଅନେକ ଲୋକ ଅଂଶ ନିମନ୍ତେ ପ୍ରାର୍ଥନା କରିପାରିନାହାନ୍ତି । ଅତଏବ ସର୍ବସାଧାରଣଙ୍କୁ ଜଣାଇ ଦିଆଯାଇଅଛି କି ପୁନର୍ବାର ବିଜ୍ଞାପନ ବାହାରିବା ପର୍ଯ୍ୟନ୍ତ ନିମ୍ନ ସ୍ୱାକ୍ଷରକାରୀ ଅଂଶର ଆବେଦନପତ୍ର ଗ୍ରହଣ କରିବେ । ଜୁନ୍ ମାସ ୨୬ ତାରିଖ ଉତ୍ତାରୁ ଯେ ସବୁ ଆବେଦନ ପତ୍ର ଆସିବ ଡାଇରେକ୍ଟରମାନଙ୍କର ଆଦେଶର ଅଧୀନରେ ରେଜେଷ୍ଟରୀ ହେବ ।

କଟକ
ଜୁନ ତା ୩୦ରିଖ — ଶ୍ରୀ ମଧୁସୂଦନ ଦାସ
ସ୍ନ ୧୮୯୮ — ଅବୈତନିକ ସେକ୍ରେଟରୀ

***

(୮)

## ଓଡ଼ିଶା ଶିଳ୍ପାଗାର

କଳ ଦ୍ୱାରା ଚାଳିତ ରୁପାର ଝାଡ଼ କି ତହିଁରେ ପାନଦାନ, ଅତରଦାନ ଓ ଗୋଲାବ ମାଳ ଏକାଧାରାରେ ରହିଅଛି, ଗୋଟିଏ ନୂତନ ସରକାରୀ ସନନ୍ଦ ପ୍ରାପ୍ତ ପଦାର୍ଥ ଅଟେ । ଏହାର ଥାଳିଟି ପାନଦାନ, ଗୋଲାବ ଫୁଲମାଳ, ଅତରର ଆଧାର ଓ ସର୍ବୋପରି ଗୋଟିଏ ସୁନ୍ଦର ମୟୂର ବସିଅଛି ଯେ ତହିଁ ତଳେ ଏକ ସ୍ଥାନରେ ଲାଗିଥିବା ଭୁଣ୍ଡିକି ଟିପିଲେ ମୟୂର ପୁଚ୍ଛରେ ଓ ଗୋଲାବ ଫୁଲ ପାଖୁଡ଼ାମାନଙ୍କରେ ସୁନ୍ଦର ତାରାମାନେ ଖଞ୍ଜା ହୋଇଅଛି । ଇଚ୍ଛାମତେ ଥାଳି ଓ ଅତରଦାନ ସବୁ ଭିନ୍ନ ଭିନ୍ନ କରାଯାଇପାରେ ଏବଂ ଥାଳିର ଅନ୍ୟ ବ୍ୟବହାର ହୋଇପାରେ । ମୂଲ୍ୟ ୧୪୦ଟଙ୍କା । ଗ୍ରାହକମାନେ ଓଡ଼ିଶା ଶିଳ୍ପାଗାରର ମାନେଜର, ସା— ମିଶନ ରୋଡ଼ କଟକଙ୍କ ନିକଟରେ ତତ୍ତ୍ୱ କଲେ ପାଇପାରିବେ ।

***

# (୯)

## [ବିଜ୍ଞାପନ]

ଧରାକୋଟ ଷ୍ଟେଟ ନିମନ୍ତେ ୪ଜଣ ସର୍ଭେୟର ମାସିକ ୧୫ ଟଙ୍କା ବେତନରେ ଚିରକାଳ ନିମନ୍ତେ ବନ୍ଦୋବସ୍ତ କରାଯାଇପାରେ । ଯୋଗ୍ୟ[ତା] ଅନୁସାରେ ବେତନ ବୃଦ୍ଧି କରାଯିବ । କର୍ମ୍ମପ୍ରାର୍ଥିମାନେ ଆମ୍ଭ ନିକଟରେ ପ୍ରଶଂସାପତ୍ର ସହିତ ଚଳିତ ମାସ ୩୦ ତାରିଖ ମଧ୍ୟରେ ଆବେଦନ କଲେ କର୍ମ୍ମ ପାଇପାରିବେ ।

ମିଶନ ରୋଡ୍ — ମଧୁସୂଦନ ଦାସ

୧୬.୧୧.୧୯୦୪

***

# (୧୦)

## ବିଜ୍ଞାପନ

ବବୁର ଗଛର ଛେଲି ବହୁ ପରିମାଣରେ ଆବଶ୍ୟକ । କଟକ ଷ୍ଟେସନଠାରେ ଦେବାକୁ ହେବ । ପ୍ରତିଥର ଗୋଟାଏ ରେଲଡବା-ପୂର୍ଣ୍ଣ ଦେବାକୁ ହେବ । ଯେଉଁମାନେ ଉକ୍ତ ଛେଲି ଦେବାକୁ ଇଚ୍ଛା କରନ୍ତି ସେମାନେ ଏକ ମହଣକୁ କେତେ ମୂଲ୍ୟ ଚାହାନ୍ତି ଓ କେଉଁ ସମୟରେ ଦେଇପାରିବେ ଏସବୁ ବିଷୟ ଆମ୍ଭଙ୍କୁ ଶୀଘ୍ର ଜଣାଇବେ ।

୧୧ । ୧ ।୦୬ — M.S.Das

ମିଶନ ରୋଡ୍

କଟକ

***

# (୧୧)

## ନୋଟିସ୍

ଜଣେ ଉପଯୁକ୍ତ ଓକିଲ ମୋହରିର ଆବଶ୍ୟକ । ବେତନ ଆରମ୍ଭରେ ଟ୩୦ଙ୍କା । ଟ୫୦ଙ୍କା ପର୍ଯ୍ୟନ୍ତ ବୃଦ୍ଧି ହେବ । ଯେଉଁମାନେ ଇଂରେଜି ଜାଣନ୍ତି ନାହିଁ ଓ କଚେରୀ କାମରେ ଯେଉଁମାନଙ୍କର ଅଭିଜ୍ଞତା ନାହିଁ ସେମାନଙ୍କର ଆବେଦନ କରିବା ଅନାବଶ୍ୟକ । ଆବେଦନପତ୍ର ନିମ୍ନଲିଖିତ ଠିକଣାରେ ଏଇ ମାସ ତା ୩୦ରିଖ ମଧ୍ୟରେ ପଠାଇବାକୁ ହେବ ।

କଟକ — M.S.Das

୧୪.୧୧.୧୯୧୪ — Vakil

***

## (୧୨)

## ବିଜ୍ଞାପନ

ଏତଦ୍ୱାରା ସର୍ବସାଧରଣଙ୍କୁ ଜଣାଇ ଦେଉଅଛୁ କି ପ୍ରାଣବନ୍ଧୁ ପାଣିଗ୍ରାହୀ ଯେ କି ଆମ୍ଭର ମୋହରର ଥିଲେ ସେ ବର୍ତ୍ତମାନ ସେ କାର୍ଯ୍ୟରେ ନାହାନ୍ତି । ଆମ୍ଭର କେହି ମହକିଲ ତାଙ୍କୁ କିମ୍ବା ଆମ୍ଭର ଅନ୍ୟ କୌଣସି ମୋହରରଙ୍କୁ ପତ୍ର ଲେଖିବେ ନାହିଁ, କିମ୍ବା ଟଙ୍କା ପଠାଇବେ ନାହିଁ । ପତ୍ର ଇତ୍ୟାଦି ନିମ୍ନଲିଖିତ ଠିକଣାରେ ପଠାଇବେ ।

"M.S.Das
Vakil, Cuttack"

Cuttack
30.5.1917

M.S.Das
Vakil

***

## (୧୩)

## ଉତ୍କଳ ଟାନେରୀ କମ୍ପାନୀ ଲିମିଟେଡ୍

ପ୍ରତ୍ୟେକ ଅଂଶ ଟ୧୦ଙ୍କା

ଫାଉଣ୍ଡେସନ ସେଆର ସକାଶ ଦରଖାସ୍ତ ସହିତ ପ୍ରତି ଅଂଶକୁ ଟ ୮ଙ୍କା ଦେବାକୁ ହେବ ।

ସାଧାରଣ ସେଆର ସକାଶ ଦରଖାସ୍ତ ସହିତ (ଚାରି)ଟ୪ଙ୍କା । ଅଂଶ ଦିଆଯିବା ପରେ ଟ୪ଙ୍କା ଦେବାକୁ ହେବ ।

ବର୍ତ୍ତମାନ କେବଳ ତିରିଶ ହଜାର ଅଂଶ ବିକ୍ରୟ କରାଯିବ ।

ଓଡ଼ିଶାରେ ଏହା ପ୍ରଥମ କାରଖାନା, ବଙ୍ଗଦେଶ କାରଖାନାମାନଙ୍କରେ ଲକ୍ଷ ଲକ୍ଷ ଓଡ଼ିଆ କାମ କରନ୍ତି ।

ଚାଷ ଦ୍ୱାରା ପୋଷା ହୋଇ ନ ପାରିବାରୁ ସେମାନେ ବିଦେଶରେ ଯାଇ ଅନ୍ୟ ଲୋକମାନଙ୍କୁ ଲାଭବାନ କରାଉଅଛନ୍ତି ।

ବାରମ୍ବାର ବନ୍ଦୋବସ୍ତ ଦ୍ୱାରା ଜମିର ଲାଭ କମିଯାଉଛି; ଜମିଦାରୀ ମୂଲ୍ୟ ମଧ କମୁଛି । ଯେତେ ଦାମରେ ଜମିଦାରୀ ଲୋକେ କିଣୁଅଛନ୍ତି ବନ୍ଦୋବସ୍ତ ପରେ ତାହାର ସେ ମୂଲ୍ୟ ରହିବ ନାହିଁ । ଅର୍ଥାତ୍ ଯେଉଁ ମୂଳଧନ ଜମିଦାରୀ ଖରିଦ କରିବାରେ

ଦିଆଗଲା ତାହା କମିଯିବ । ଏହା କେହି ବନ୍ଦ କରିପାରିବେ ନାହିଁ ।

ଉତ୍କଳ ଟାନେରୀରେ ଟଙ୍କା ଦିଅ । ନିଜର ବ୍ୟକ୍ତିଙ୍କୁ ଡାଇରେକ୍ଟର କର । ଯେ ଆଠ ହଜାର ଟଙ୍କା ଦେବେ ସେ ଯାବଜ୍ଜୀବନ ଡାଇରେକ୍ଟର ହୋଇପାରିବେ ।

କାରବାରର ଉନ୍ନତି ନିମନ୍ତେ ଯେଉଁ ଲୋକଙ୍କର କାରବାରରେ ପାରଦର୍ଶିତା ଅଛି, ସେହିମାନଙ୍କର ଡାଇରେକ୍ଟର ହେବା ବାଞ୍ଛନୀୟ । ଡାଇରେକ୍ଟର ହେବା ନିମନ୍ତେ ୧୦୦ ଗୋଟି ଅଂଶ ନେବାର ଆବଶ୍ୟକ । ସାଧାରଣତଃ କମ୍ପାନୀମାନଙ୍କରେ ଡାଇରେକ୍ଟର ପ୍ରତିବର୍ଷ ପରିବର୍ତ୍ତିତ ହୁଅନ୍ତି, ମାତ୍ର ଏ କମ୍ପାନୀରେ ୫ଜଣ ଡାଇରେକ୍ଟରଙ୍କୁ ଯାବଜ୍ଜୀବନ ଡାଇରେକ୍ଟର ରହିବାକୁ ହେବ ଓ ଉକ୍ତ ଡାଇରେକ୍ଟରମାନଙ୍କୁ ଏକ ହଜାର ଅଂଶ ନେଇ ଆଠ ହଜାର ଟଙ୍କା ଦେବାକୁ ହେବ ।

ଏ ପର୍ଯ୍ୟନ୍ତ କେବଳ ମୟୂରଭଞ୍ଜର ମହାରାଜା ଏକ ହଜାର ସେଆର କ୍ରୟ କରିଅଛନ୍ତି । କାରବାର ବହୁଦର୍ଶୀ ବ୍ୟକ୍ତିଙ୍କ ମଧ୍ୟରୁ ଆଜୀବନ ଡାଇରେକ୍ଟର ପଦରେ ଚାରିଜଣ ନିଯୁକ୍ତ ହେଲେ କାରଖାନାର ପରିଚାଳନା [ରେ] ବିଶେଷ ସୁବିଧା ହେବ ।

ଯେ ଏ ସମ୍ବନ୍ଧରେ କିଛି ବୁଝିବାକୁ ଇଚ୍ଛାକରନ୍ତି ସେ ଆମ୍ଭ ଘରକୁ ଆସିଲେ ଆମ୍ଭେ ବୁଝାଇଦେବାକୁ ପ୍ରସ୍ତୁତ ଅଛୁଁ । କିମ୍ବା କୌଣସି ସ୍ଥାନରେ ଲୋକମାନେ ଏ ବିଷୟ ବୁଝିବାକୁ ଯେବେ ଇଚ୍ଛା କରନ୍ତି ଆମ୍ଭେ ସେଠାକୁ ଯିବାପାଇଁ ପ୍ରସ୍ତୁତ ଅଛୁଁ ।

ଦରଖାସ୍ତ ଫର୍ମ ସକାଶ ଓ ଅନ୍ୟ କିଛି ବିଷୟ ଏ ସମ୍ବନ୍ଧେ ଚାହିଁଲେ ନିମ୍ନ ସ୍ୱାକ୍ଷରିତ ବ୍ୟକ୍ତିଙ୍କ ନିକଟ ଲେଖନ୍ତୁ ।

ନିମ୍ନଲିଖିତ ବ୍ୟକ୍ତିମାନେ କମ୍ପାନୀର ଡାଇରେକ୍ଟର ହେବା ପାଇଁ ଅର୍ଥାତ୍ ପରିଚାଳନା-ଭାର ନେବାକୁ ପ୍ରସ୍ତୁତ ଅଛନ୍ତି ।

ବ୍ୟବସାୟ-ପ୍ରବୀଣ ବାବୁ କ୍ଷେତ୍ରବାସୀ ସାହୁ, ଚୌଧୁରୀ ବଜାର, କଟକ

ପେନସନଭୋଗୀ ଡେପୁଟି କଲେକ୍ଟର ରାୟ ବାହାଦୁର ରାଜକିଶୋର ଦାସ, ବାଙ୍କାବଜାର, କଟକ

**ମିଶନ ରୋଡ୍, କଟକ** **ମଧୁସୂଦନ ଦାସ**
**ତା ୦୨.୭.୧୯୨୪ରିଖ** **(ଡାକନାମ ମଧୁବାବୁ)**

***

## (୧୪)

## ଉତ୍କଳ ଟାନେରୀ କମ୍ପାନୀ ଲିମିଟେଡ଼

ପାଣ୍ଠି ଆଠ ଲକ୍ଷ । ପ୍ରତ୍ୟେକ ଅଂଶର ମୂଲ୍ୟ ଦଶ ଟଙ୍କା ।

ଦୁଇ ପ୍ରକାର ଅଂଶ —ଫାଉଣ୍ଡେସନ ସେୟାର ଦରଖାସ୍ତ ସଙ୍ଗେ ଆଠ ଟଙ୍କା ବ୍ୟାଙ୍କକୁ ପଠାଇବାକୁ ହେବ ।

ଅର୍ଡ଼ିନାରି ସେୟାର (ସାଧାରଣ ଅଂଶ) ଦରଖାସ୍ତ ସଙ୍ଗେ ଚାରିଟଙ୍କା, ଆଲଟ୍‌ମେଣ୍ଟ ସମୟରେ ଚାରିଟଙ୍କା ।

ବର୍ତ୍ତମାନ କେବଳ ୩୦୦୦୦ ଅଂଶ ବିକ୍ରୟ ହେବ । ତାହା ହେବାମାତ୍ରେ ନୂଆ କେତେକ ଡିରେକ୍ଟର ନିଯୁକ୍ତ ହେବେ । ଗଭର୍ଣ୍ଣମେଣ୍ଟ ରେଜିଷ୍ଟ୍ରର ଅଫିସକୁ ବ୍ୟାଙ୍କରେ ଥିବା ଟଙ୍କାର ହିସାବ ଦେବାକୁ ହେବ । ଅଂଶ ଖରିଦ୍ କରିବାକୁ ଯେଉଁ ଟଙ୍କା ଜମା ହୋଇଥିବ ସେଥିରୁ କକ କମ୍ପାନୀ ବ୍ୟାଙ୍କକୁ ତାଙ୍କର ପାଉଣା ଦେଇ ଉତ୍କଳ ଟାନେରୀ କମ୍ପାନୀ ତାଙ୍କଠାରୁ ଦଲିଲ ଇତ୍ୟାଦି ନେଇ ଟାନେରୀର ମାଲିକ ହେବେ । ବର୍ତ୍ତମାନ ବ୍ୟାଙ୍କରେ ଯେଉଁ ଟଙ୍କା ଅଛି ସେ ଟଙ୍କା ଯେ ଦାଖଲ କରିଅଛନ୍ତି ତାଙ୍କରି ଅଛି । ଯଦି ସମୁଦାୟ ୪୦୦୦୦ ଅଂଶ ବିକ୍ରୟ ନ ହୁଏ ତାହାହେଲେ ବ୍ୟାଙ୍କରେ ଜମାଥିବା ଟଙ୍କା ଯେ ଜମା କରିଅଛନ୍ତି ସେ ଫେରିପାଇବେ ଏବଂ ସେପ୍ରକାର ଫେରେଇନେବା ନିମନ୍ତେ ତାଙ୍କୁ ନୋଟିସ୍ ଦିଆଯିବ । ଏ ସମ୍ବନ୍ଧରେ କେତେକ ଲୋକଙ୍କ ସନ୍ଦେହ ଥିବା ମୁଁ ଶୁଣିଅଛି । ଯାହା[ର] କିଛି ସନ୍ଦେହ ଥାଏ, ମୋତେ ଲେଖିଲେ ତାହା ବୁଝାଇ ଦେବି । ସମସ୍ତ କାର୍ଯ୍ୟ ସନ. ୧୯୧୩ ମସିହାର ୭ ଆଇନମତେ କରିବାକୁ ହେବ ।

ଡାଇରେକ୍ଟର ସମ୍ବନ୍ଧୀୟ ନିୟମାବଳୀ ବୁଝିବାରେ କିଛି କଷ୍ଟ ହେଉଥିବାର ମୁଁ ଶୁଣିଅଛି । ଏହି ସମ୍ବନ୍ଧେ ସମସ୍ତ ବିଷୟ ପରିଷ୍କାରରୂପେ ଆର୍ଟିକଲ୍ ଅଫ୍ ଆସୋସିଏସନ୍‌ରେ ଲେଖା ଅଛି । ମୂଳ କଥା ଏହି କି ଯେ ଦୁଇପ୍ରକାର ଡାଇରେକ୍ଟର ଅଛନ୍ତି । ପାଞ୍ଚଜଣ ଆଜୀବନ ଡାଇରେକ୍ଟର ରହିବେ । ତାଙ୍କୁ କେହି ନିଯୁକ୍ତ କରିବେ ନାହିଁ କିମ୍ବା କେହି ବରଖାସ୍ତ କରିପାରିବେ ନାହିଁ । ଯେ ବ୍ୟକ୍ତି ହଜାରେ ସେୟାର କ୍ରୟ କରିବେ ସେ ତାଙ୍କର ଧନବଳରେ ଡାଇରେକ୍ଟର ହେବେ ଏବଂ ଯାବଜ୍ଜୀବନ ଡାଇରେକ୍ଟର ରହିବେ । ଯେଉଁ ବ୍ୟକ୍ତି ହଜାରେ ସେୟାର କିଣିବ ତାହାର ନିଶ୍ଚୟ କାରଖାନାର କାର୍ଯ୍ୟ ପ୍ରତି ଦୃଷ୍ଟି କରିବା ସ୍ୱାଭାବିକ ହେବ । କମ୍ପାନୀର ଆର୍ଟିକଲ ଅଫ୍ ଆସୋସିଏସନ ଅନୁସାରେ ଡାଇରେକ୍ଟର ନ୍ୟୂନ ସଂଖ୍ୟା ୮ଜଣ ଓ ସର୍ବୋଚ୍ଚ ସଂଖ୍ୟା ୩୦ଜଣ । ଯେଉଁ ବ୍ୟକ୍ତି ଏକଶତ ସେୟାର ନେବ ସେ ଡାଇରେକ୍ଟର ହେବା ଉପଯୁକ୍ତ କିନ୍ତୁ ସେୟାର-ହୋଲଡ଼ରମାନେ ଯାହାକୁ ମନୋନୀତ କରିବେ ଅର୍ଥାତ୍ ଶଏ ସେୟାର ନେବାବାଲା

ଲୋକମାନଙ୍କ ମଧ୍ୟରୁ ଯେଉଁ ଲୋକକୁ ମନୋନୀତ କରିବେ, ସେମାନେ ଡାଇରେକ୍ଟର ହୋଇପାରିବେ । ଆଇନାନୁସାରେ ସେୟାର-ହୋଲଡ଼ରମାନଙ୍କର ସଭା ହେବ, ଏବଂ ସେୟାର-ହୋଲଡ଼ରମାନେ ବାକି ପଚିଶଜଣ [ଡାଇରେକ୍ଟର] ମନୋନୀତ କରିବେ ।

ଗତ ୧୫ ତାରିଖରେ ବାବୁ ଶ୍ୟାମସୁନ୍ଦର ବୋଷ, ବି.ଏ., ଶ୍ରୀ କ୍ଷେତ୍ରବାସୀ ସାହୁ ମହାଜନ ଜମିଦାର ଓ ବାଣିଜ୍ୟ-ବ୍ୟବସାୟ-ପ୍ରବୀଣ ଓ ବାବୁ ଜଗଦ୍‌ବଲ୍ଲଭ ଘୋଷ ଉତ୍କଳଟାନେରୀ ପ୍ରଦର୍ଶନ [ପରିଦର୍ଶନ] ସକାଶେ ଯାଇଥିଲେ । ବାବୁ ଶ୍ୟାମସୁନ୍ଦର ବୋଷ ଓ ବାବୁ କ୍ଷେତ୍ରବାସୀ ସାହୁ ଯେଉଁ ମତ ପ୍ରକାଶ କରିଅଛନ୍ତି, ତାହା ନିମ୍ନେ ଦିଆଗଲା – ତାର ପର ସ୍ଥାନାଭାବରୁ ବାବୁ ଜଗଦ୍‌ବଲ୍ଲଭ ଘୋଷଙ୍କ ମତ ଆଗାମୀ ସପ୍ତାହରେ ପ୍ରକାଶ କରାଯିବ । ଯେ କେହି ଏକଶତ ସେୟାର କିଣିବାକୁ ଇଚ୍ଛୁକ ଥାନ୍ତି ସେ ମତେ ଲେଖିଲେ ତାଙ୍କର ଟାନେରୀ ପ୍ରଦର୍ଶନ ଓ ହିସାବପତ୍ର ଦେଖିବାର ସୁବିଧା କରାଇ ଦିଆଯିବ ।

ଇତି ।

ତା. ୧୭.୭.୨୪

ଶ୍ରୀ ମଧୁସୂଦନ ଦାସ
(ଡାକ ନାମ ମଧୁବାବୁ)

# (ଘ) ପରିଶିଷ୍ଟାବଳୀ

## (୧)

## ବିଜ୍ଞାପନ

ଉତ୍କଳ ଟାନେରୀ କମ୍ପାନି ଲିମିଟେଡ଼

କେତେକ ବର୍ଷ ହେଲା ଉତ୍କଳ ଟାନେରୀ ବା ଚମଡ଼ା କାରଖାନା ଫିଟିଅଛି । ମାନ୍ୟବର ଶ୍ରୀଯୁକ୍ତ ମଧୁସୂଦନ ଦାସ ସି.ଆଇ.ଇ. ଏ କାରଖାନାକୁ ସ୍ଥାପନ କରିଅଛନ୍ତି । ଇଉରୋପୀୟ ରୀତି ଅନୁସାରେ ଗୋଟିଏ ନୂଆ ବ୍ୟବସାୟ ଆରମ୍ଭ କରି ତାହା ପରିପୁଷ୍ଟ କରିବାକୁ ଗଲେ ନାନାଦି ଅସୁବିଧା ଭୋଗ କରିବାକୁ ପଡ଼େ । ସେ କଥା ଅନୁଭବୀ ଛଡ଼ା ଆଉ କେହି ବୁଝିପାରିବେ ନାହିଁ । ପ୍ରଥମେ ପ୍ରଥମେ କୌଣସି ବ୍ୟବସାୟ ଆରମ୍ଭ କଲେ ଲୋକସାନ ସହିବାକୁ ପଡ଼େ । ଯଏଣ୍ଟ ଷ୍ଟକ୍ କମ୍ପାନି ଅର୍ଥାତ୍ ଯୌଥ କାରବାର କମ୍ପାନି କରି ମୂଳଧନ ଉଠାଇବା ଭାରତବର୍ଷରେ ଅଭିନବ ବ୍ୟାପାର । ଭାରତବର୍ଷରେ ଜଣେ ଜଣେ ଲୋକ ନିଜ ନିଜର ମୂଳଧନ ଖଟାଇ ବ୍ୟବସାୟ ବାଣିଜ୍ୟ କରିଥାନ୍ତି । ସମୁଦାୟ ଲାଭ ଏକା ସେହିମାନେ ନିଅନ୍ତି ଓ କ୍ଷତି ହେଲେ ଏକା ସେହିମାନେ ସହନ୍ତି । ବର୍ତ୍ତମାନ କାଳରେ ଭାରତବର୍ଷକୁ ଇଉରୋପରୁ ଆମଦାନି ଜିନିସମାନଙ୍କ ସଙ୍ଗେ ପ୍ରତିଯୋଗିତା କରିବାକୁ ପଡୁଅଛି । ଏପରି ସ୍ଥଳରେ କୌଣସି ବ୍ୟବସାୟ ଆରମ୍ଭ କରିବାକୁ ହେଲେ ଗୁଡ଼ାଏ ମୂଳଧନ ଦରକାର । ଯୌଥ କମ୍ପାନି ପ୍ରତିଷ୍ଠା କରି ଅଂଶ ଖୋଲିଲେ ବେଶୀ ଟଙ୍କା ଉଠିପାରେ । ଇଉରୋପରେ ବାଣିଜ୍ୟାଦି ବିଷୟରେ ଉନ୍ନତି କେବଳ ଯୌଥ କମ୍ପାନିମାନ ପ୍ରତିଷ୍ଠା କରିବା ଦ୍ୱାରା ହୋଇଅଛି । କିନ୍ତୁ ଯୌଥ ମୂଳଧନ ଖଟାଇ କାର୍ଯ୍ୟ କରିବାକୁ ଭାରତବର୍ଷର ଲୋକମାନେ ଶିଖିନାହାନ୍ତି । ଏଥିଯୋଗୁଁ କୌଣସି ବ୍ୟବସାୟ ଆରମ୍ଭ କରିବା ସମୟରେ, ଅର୍ଥାତ୍ ଯେଉଁ ସମୟରେ ପ୍ରଥମେ ପ୍ରଥମେ ଲୋକସାନ୍ ସହିବାକୁ ପଡ଼େ, ସେହି ଅବସ୍ଥାରେ ଯୌଥ ଫଣ୍ଡଦ୍ୱାରା ଉକ୍ତ ବ୍ୟବସାୟ ଚଳାଇବା ଯୁକ୍ତିଯୁକ୍ତ ନୁହେ । କାରଣ ଅଂଶୀଦାରମାନଙ୍କର ପ୍ରଥମ ସଭା ହେବାଦିନ ଯେବେ ବ୍ୟବସାୟରେ ଲୋକସାନ ହୋଇଅଛି ବୋଲି ପ୍ରକାଶିତ ହୁଏ, ତାହା ହେଲେ ଏ ଦେଶର ଲୋକଙ୍କର ଯୌଥ କାରବାର ପ୍ରତି ଆସ୍ଥା କଦାପି ହେବ ନାହିଁ ।

ଉତ୍କଳ ଟାନେରୀର ସ୍ୱତ୍ୱାଧିକାରୀ ଏହି କାରଣମାନଙ୍କରୁ ଉକ୍ତ କାରଖାନା ପାଇଁ ଅଂଶଦ୍ୱାରା ସାଧାରଣଙ୍କଠାରୁ ମୂଳଧନ ଗ୍ରହଣ କରିନାହାନ୍ତି ଏବଂ ଉକ୍ତ କାରଖାନାର ପ୍ରଥମ ପରୀକ୍ଷା ଅବସ୍ଥାରେ ଯାହା କ୍ଷତି ଆବଶ୍ୟକୀୟ ତାହା ସେ ନିଜେ ଇଚ୍ଛା କରି ସହିଅଛନ୍ତି ।

ବର୍ତ୍ତମାନ ଏ କାରଖାନାର ପରୀକ୍ଷା ସମୟ ଟପି ଯାଇଅଛି । ବ୍ୟବସାୟ ହିସାବରେ

ଧରିବାକୁ ଗଲେ ବର୍ତ୍ତମାନ ଉକ୍ତ କାରଖାନା ଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇଅଛି । ଓଡ଼ିଶା ବିଭାଗର କମିଶନର ଶ୍ରୀଯୁକ୍ତ ଇଃ ଭିଃ ଲେଭିଞ୍ଜ ସାହେବଙ୍କ ମନ୍ତବ୍ୟର କେତେକ ଅଂଶ ନିମ୍ନରେ ପ୍ରଦତ୍ତ ହେଲା:

> ଉତ୍କଳ ଟାନେରୀକୁ ଦେଖିବା ନିମନ୍ତେ ଆମ୍ଭେ ଅନେକ ସମୟରେ ଅନେକ ବନ୍ଧୁଙ୍କ ସଙ୍ଗରେ ନେଇ ଯାଇଅଛୁଁ । ଏହି ଚମଡ଼ା କାରଖାନାର ସମସ୍ତ କଳ ସରଞ୍ଜାମମାନ ପୂର୍ଣ୍ଣ ଭାବରେ ଅଛି, ଏହା ସମସ୍ତ ବନ୍ଧୁ ଆଗ୍ରହ ସହକାରେ ଦେଖିଅଛନ୍ତି । ଆମ୍ଭେ ନିଜେ ଉକ୍ତ କାରଖାନାକୁ ଅନେକ କାମର ଫରମାସ ଦେଇଅଛୁଁ ଓ ଉକ୍ତ କାମମାନ ଯେପରି ବରାଦ ମୁତାବକ ହୋଇଅଛି ତଦ୍ୱାରା ଆମ୍ଭେ ସନ୍ତୁଷ୍ଟ ହୋଇଅଛୁଁ । ଏ ଚେଷ୍ଟା ପ୍ରକୃତ 'ସ୍ୱଦେଶୀ' ଅଟେ ଓ ଏଥିରେ ଆମ୍ଭର ସମ୍ପୂର୍ଣ୍ଣ ସହାନୁଭୂତି ଓ ସାହଯ୍ୟ ଅଛି । ଆମ୍ଭେ ଏ କାରଖାନାର ସମ୍ପୂର୍ଣ୍ଣ ମଙ୍ଗଳ କାମନା କରୁଅଛୁଁ ।

ମାନ୍ୟବର ଆଇ.ପି.କମିଙ୍ଗ ସାହେବ ବଙ୍ଗଦେଶର ବ୍ୟବସାୟଗତ ଅବସ୍ଥା ଓ ଭବିଷ୍ୟତ ଆଶା ସମ୍ବନ୍ଧରେ ଗୋଟିଏ ସମାଲୋଚନା ପ୍ରବନ୍ଧ ଲେଖିଥିଲେ । ତାହା ୨୬.୮.୧୯୦୮ ସାଲର [ତାରିଖର] କଲିକତା ଗେଜେଟ୍‌ର କ୍ରୋଡ଼ପତ୍ରରେ ପ୍ରକାଶିତ ହୋଇଥିଲା । ତାହା ପାଠ କଲେ ଜଣାଯିବା ଯେ ସମସ୍ତ ବଙ୍ଗଦେଶ ମଧ୍ୟରେ କେବଳ ଏହି କାରଖାନାଟି ବ୍ୟବସାୟିକ ନିୟମରେ ପରିଚାଳିତ ।

୨୪.୨.୧୯୦୯ରେ ବଙ୍ଗଳାର ଛୋଟଲାଟ ବାହାଦୁର, ତାଙ୍କର ଚିଫ୍ ସେକ୍ରେଟରୀ ମାନ୍ୟବର ଡିଉକ୍ ସାହେବ ଓ ଓଡ଼ିଶାର କମିଶନର ସାହେବ, ଏ ଦୁହିଁଙ୍କ ସଙ୍ଗେ ଉକ୍ତ ଚମଡ଼ା କାରଖାନା ପରିଦର୍ଶନ କରିଥିଲେ ।

ପ୍ରତିଦିନ ବର୍ତ୍ତମାନ ଯେତେ ଚମଡ଼ା ଓ ଚମଡ଼ା କଷିବାର ମସଲା ଏ କାରଖାନାକୁ ସରବରାହ ହେଉଅଛି ସେଥିର ପରିମାଣ ଏଣିକି ନ ବଢ଼ାଇଲେ ଚମଡ଼ା ଓ ଚମଡ଼ାର ଜିନିସମାନ ଯୋଗାଇବା ପାଇଁ ସରକାରରୁ ଓ ସାଧାରଣ ଲୋକଙ୍କଠାରୁ ଯେଉଁ ଫରମାସମାନ ଆସୁଅଛି ତାହା ଯୋଗାଇ ହେବ ନାହିଁ । ଏଥିପାଇଁ ବେଶୀ ମୂଳଧନ ଆବଶ୍ୟକ ।

ଅନୁଭବରୁ ଦେଖାଯାଇଅଛି ଏ କାରଖାନାରେ ଟଙ୍କା ଖଟାଇଲେ ଉକ୍ତ ଟଙ୍କାରେ ଶତକଡ଼ା ବେଶୀ ଦରରେ ଲାଭ ମିଳିବ । ଭବିଷ୍ୟତରେ ଏ ବ୍ୟବସାୟର ଉନ୍ନତି ହେବା ଉଦ୍ଦେଶ୍ୟରେ ଏ କାରଖାନାଟି ଜଣଙ୍କର ସମ୍ପତ୍ତି ହେବା ବାଞ୍ଛନୀୟ ନୁହେ । ଗତବର୍ଷ ମଧ୍ୟରେ ଅନେକ ସରକାରୀ ଓ ବେସରକାରୀ ଭଦ୍ରଲୋକ ଏ କାରଖାନାକୁ ଯୌଥ କମ୍ପାନିରେ ପରିଣତ କରିବା ଉଚିତ ବୋଲି ପ୍ରକାଶ କରିଅଛନ୍ତି । ତଦନୁସାରେ "ଉତ୍କଳ ଟାନେରୀ କମ୍ପାନି ଲିମିଟେଡ଼" ନାମରେ ଏହି କାରଖାନାକୁ ରେଜିଷ୍ଟରୀ

କରାହୋଇଅଛି ।

ଏହାର ମୂଳଧନ ବର୍ତ୍ତମାନ ୨ ଲକ୍ଷ ଟଙ୍କା ହେବ ବୋଲି ସ୍ଥିର ହୋଇଅଛି ଓ ତାହା ୧୦ ଟଙ୍କା ମୂଲ୍ୟର ୨୦୦୦୦ଅଂଶରେ ବିଭକ୍ତ ହେବ । ବର୍ତ୍ତମାନ ଏ କାରଖାନାରେ ଥିବା ସମ୍ପତ୍ତି ଏହି୨ ଲକ୍ଷ ଟଙ୍କା ମଧ୍ୟରେ ଗଣନା କରାଯିବ ଏବଂ ଉକ୍ତ ସମ୍ପତ୍ତିର ମୂଲ୍ୟ ଅଂଶରୂପେ ପ୍ରୋପ୍ରାଇଟର (ବର୍ତ୍ତମାନ ମାଲିକ)ଙ୍କୁ ଦିଆଯିବ ।

ଯୌଥକାରବାରର ଆଇନ ଅନୁସାରେ ଅଂଶୀଦାରମାନଙ୍କର ଯେଉଁ ପ୍ରଥମ ସଭା ହେବ ସେପର୍ଯ୍ୟନ୍ତ ତଳଲିଖିତ ବ୍ୟକ୍ତିମାନେ ଅସ୍ଥାୟୀଭାବରେ ବର୍ତ୍ତମାନ ସକାଶେ ଡାଇରେକ୍ଟର ନିଯୁକ୍ତ ହୋଇଅଛନ୍ତି:-

ଉକ୍ତ ସଭା ଆଗାମୀ ଯୁନମାସ ତା ୨୮ ରିଖରେ ହେବ ।

ଡାଇରେକ୍ଟରଗଣ

ଶ୍ରୀ ରାଜେନ୍ଦ୍ରନାରାୟଣ ଭଞ୍ଜ ଦେଓ ରାଜା । କି । କନିକା

ଶ୍ରୀ ବୀରବର ନାରାୟଣଚନ୍ଦ୍ର ଧୀର ନରେନ୍ଦ୍ର ରାଜା କି । ମଧୁପୁର

ଶ୍ରୀ ରାୟ ନାରାୟଣଚନ୍ଦ୍ର ନାୟକ ବାହାଦୁର ଜମିଦାର ଓ ପେନସନପ୍ରାପ୍ତ ଡେପୁଟି ମାଜିଷ୍ଟ୍ରେଟ୍,

ଶ୍ରୀଯୁକ୍ତ ଗୌରୀଶଙ୍କର ରାୟ, ସମ୍ପାଦକ, କଟକ ପ୍ରିଣ୍ଟିଂକେମ୍ପାନି

ଶ୍ରୀ ଇସୁଫ ଅହେମଦମୁଲ୍ଲା ମହାଜନ

ମାନ୍ୟବର ଶ୍ରୀ ମଧୁସୂଦନ ଦାସ ସି.ଆଇ.ଇ ପରିଚାଳକ ଡାଇରେକ୍ଟର

ଏ କମ୍ପାନିର ଟଙ୍କା କଉଡ଼ି କଲିକତାସ୍ଥ ଦିଲ୍ଲୀ ଓ ଲଣ୍ଡନ ବାଙ୍କରେ ଜମା ହେବ ।

ଆଇନ ସମ୍ବନ୍ଧରେ ପରାମର୍ଶଦାତା—

ଶ୍ରୀ ବାବୁ ରାମଶଙ୍କର ରାୟ

ଶ୍ରୀ ବାବୁ ନିମାଇଁଚରଣ ମିତ୍ର ଉକୀଲମାନେ

ଯେଉଁମାନେ ଏ କମ୍ପାନିର ଅଂଶ ନେବାପାଇଁ ଇଚ୍ଛା କରିବେ ସେମାନେ ଦରଖାସ୍ତସହ ଅଧେ ଟଙ୍କା ପଠାଇବେ ଓ ଦରଖାସ୍ତ ତାରିଖରୁ ୩ ମାସ ମଧ୍ୟରେ ବାକୀ ଅଧକ ଟଙ୍କା ଦେବେ ।

୧୯୦୯ ସାଲ ଯୁନମାସ ପରେ ଯେଉଁମାନେ ଅଂଶୀଦାର ହେବାକୁ ଦରଖାସ୍ତ କରିବେ ସେମାନେ ଦରଖାସ୍ତ ସଙ୍ଗେ ତାଙ୍କର ଅଂଶର ସମସ୍ତ ଟଙ୍କା ପଠାଇବେ ।

ଚାଉଳିଆଗଞ୍ଜଠାରେ ଏ କମ୍ପାନିର ରେଜିଷ୍ଟରୀ ଅଫିସ ହୋଇଅଛି ।

ଅଂଶୀଦାର ହେବା ପାଇଁ ଦରଖାସ୍ତ ପରିଚାଳକ(ମେନେଜିଙ୍ଗ) ଡାଇରେକ୍ଟରଙ୍କ ନିକଟକୁ ପଠାଇବାକୁ ହେବ ।

ଟଙ୍କା ପଇସା ମେନେଜିଙ୍ଗ ଡିରେକ୍ଟରଙ୍କଠାକୁ କିମ୍ବା ସୁବିଧା ହେଲେ ଉପରୋକ୍ତ

ବାଙ୍କୁ ପଠାଇବାକୁ ହେବ ।

ଅନ୍ୟ ସମସ୍ତ ବିଷୟକ ପତ୍ର ''ମେନେଜର, ଉତ୍କଳ ଟାନେରୀ କମ୍ପାନି ଲିମିଟେଡ୍, ଚାଉଳିଆଗଞ୍ଜ''ଙ୍କ ନିକଟକୁ ଲେଖିବାକୁ ହେବ ।

[ଦରଖାସ୍ତ ଫର୍ମର ନମୁନା]

ଉତ୍କଳ ଟାନେରୀ କମ୍ପାନି ଲିମିଟେଡ୍ ।

ସନ୍ ୧୮୮୨ ମସୀହା ଆ ୬ଇନ୍ ମତେ ରେଜିଷ୍ଟରୀ ହୋଇଅଛି ।

ଉତ୍କଳ ଟାନେରୀ କମ୍ପାନି ଲିମିଟେଡ୍‌ର ମେନେଜିଂ ଡିରେକ୍ଟର ମହାଶୟ ସମୀପେଷୁ

ମହାଶୟ !

ଆମ୍ଭେ ଉପରୋକ୍ତ ଉତ୍କଳ ଟାନେରୀ କମ୍ପାନି ଲିମିଟେଡ୍‌ର ଗୋ—ଟି ଅଂଶ ନେବାକୁ ସ୍ୱୀକୃତ ଥାଇଁ ଏତଦ୍ୱାରା ଉକ୍ତ ଅଂଶର ଅଧେ/ପୂରା ମୂଲ୍ୟ ଟ —ଙ୍କା (    ) ଆଜଦିନ ମନିଅର୍ଡ଼ର/ରେଜିଷ୍ଟରୀ ଲଫାପାର ନୋଟ ଦ୍ୱାରା ପଠାଇଲୁଁ ।

ବଶମ୍ବଦ

(ସ୍ୱାକ୍ଷର ଓ ପୂରା ଠିକଣା)

ନାମ -

ଗ୍ରାମ -

ପୋଷ୍ଟ ଅଫିସ୍ -

ଜିଲା -

ମନ୍ତବ୍ୟ: କମ୍ପାନିର ନିୟମାବଳୀ ଇଂରେଜୀରେ ଅଛି ,ଯେଉଁମାନେ ନେବାକୁ ଇଚ୍ଛା କରନ୍ତି ସେମାନେ ଅଠଅଣା ପଠାଇଲେ ଡାକରେ ତାହାଙ୍କ ନିକଟକୁ ପଠାଇ ଦିଆଯିବ ।

ବିଶେଷଦ୍ରଷ୍ଟବ୍ୟ: ଯେଉଁମାନେ ଅଧେ ଟଙ୍କା ପଠାଇବେ ସେମାନେ ତାହାତଳେ ଥିବା 'ପୂରା' ଶବ୍ଦ କିମ୍ବା ପୂରା ପଠାଇଲେ ଉପରେ ଥିବା 'ଅଧେ' ଶବ୍ଦ କାଟିଦେବେ । ଆଉ ମନିଅର୍ଡ଼ର ଦ୍ୱାରା ପଠାଇଲେ ତାହା ତଳେ ଥିବା ଶବ୍ଦଗୁଡ଼ିକ କାଟିଦେବେ କିମ୍ବା 'ରେଜିଷ୍ଟରୀ ଲଫାପାରେ ନୋଟ' ପଠାଇଲେ ଉପରେ ଥିବା ଶବ୍ଦଗୁଡ଼ିକ କାଟି ଦେବେ ।

***

## (୨)

## ଉତ୍କଳ ଟାନେରୀ କମ୍ପାନୀ ଲିମିଟେଡ଼

ଉତ୍କଳ ଟାନେରୀ ବା ମଧୁବାବୁଙ୍କ ହାତଗଢ଼ା କାରଖାନା ଓଡ଼ିଶାବାସୀମାନଙ୍କ ନିକଟରେ ସୁପରିଚିତ ଅଟେ । ଏକା ଓଡ଼ିଶାବାସୀ କାହିଁକି ଉତ୍କଳ ଟାନେରିର ସୁଖ୍ୟାତି ବର୍ତ୍ତମାନ ଭାରତବର୍ଷ, ଇଂଲଣ୍ଡ ଏବଂ ଜାପାନ ପ୍ରଭୃତି ଦେଶରେ ବ୍ୟାପିଅଛି । ସ୍ୱଦେଶୀ ଆନ୍ଦୋଳନ ହେବା ବହୁକାଳ ପୂର୍ବରୁ ଦେଶୀୟ ଶିଳ୍ପର ଉନ୍ନତି କରିବା ଓ ସ୍ୱଦେଶ ପ୍ରସ୍ତୁତ ପଦାର୍ଥମାନ ବିଦେଶକୁ ପଠାଇ ତଦ୍ୱାରା ଓଡ଼ିଶାବାସୀମାନଙ୍କର ଆର୍ଥିକ ଅବସ୍ଥା ଉନ୍ନତି କରିବା ଉଦ୍ଦେଶ୍ୟରେ ମଧୁବାବୁ ନିଜ ହାତରୁ ରାଶି ରାଶି ଅର୍ଥ ବ୍ୟୟ କରି ନାନା ପ୍ରକାର ଶିଳ୍ପ କାର୍ଯ୍ୟରେ ହାତ ଦେଇଥିଲେ । ତନ୍ମଧ୍ୟରେ ଉତ୍କଳ ଟାନେରୀ ତାହାଙ୍କ ଅଧ୍ୟବସାୟ ଓ ସ୍ୱାର୍ଥତ୍ୟାଗର ଉଜ୍ଜ୍ୱଳ ଏବଂ ସ୍ଥାୟୀ ନିଦର୍ଶନ ଅଟେ ।

ବିନା ଶିଳ୍ପ ବ୍ୟବସାୟରେ କୌଣସି ଦେଶର ଆର୍ଥିକ ଉନ୍ନତି ହୋଇ ନ ପାରେ । ଓଡ଼ିଶା କୃଷି ଓ ଶିଳ୍ପପ୍ରଧାନ ଦେଶ ଥିଲା । ମାତ୍ର ଓଡ଼ିଶାର ଶିଳ୍ପ ଏକାବେଳେକେ ଲୋପ ପାଇବାରୁ ଲକ୍ଷ ଲକ୍ଷ ଲୋକ ବିଦେଶକୁ ଯାଇ କଳକାରଖାନାରେ କାର୍ଯ୍ୟ କରୁଅଛନ୍ତି, ଅଥଚ ନିଜ ଦେଶରେ ତାଙ୍କୁ କୌଣସି ବ୍ୟବସାୟ ମିଳୁନାହିଁ । ଏହା ଦେଖି ଓଡ଼ିଶାକୁ ଶିଳ୍ପ ଜଗତରେ ପରିଚିତ କରାଇବା ପାଇଁ ଓ ଓଡ଼ିଆମାନଙ୍କୁ ନିଜ ଦେଶରେ ଜୀବିକାର ଉତ୍ସାହ ଦେବା ପାଇଁ ମଧୁବାବୁ ନାନା ପ୍ରକାର ଶିଳ୍ପକାର୍ଯ୍ୟରେ ହାତ ଦେଇଥିଲେ । ସେମାନଙ୍କ ମଧ୍ୟରୁ ଉତ୍କଳ ଟାନେରିକୁ ସ୍ଥାୟୀ କରିବାରେ ସେ କୃତକାର୍ଯ୍ୟ ହୋଇଅଛନ୍ତି ।

ଉତ୍କଳ ଟାନେରୀ ପରି ଗୋଟିଏ କାରଖାନା ସ୍ଥାପନ କରିବା ବଡ଼ ସହଜ କଥା ନୁହେଁ । ଇୟୁରୋପ ପ୍ରଭୃତି ଦେଶରେ ଯେ ପ୍ରଣାଳୀରେ ଚମଡ଼ା ପ୍ରସ୍ତୁତ ହେଉଅଛି, ତାହା ଏ ଦେଶର ଜଳବାୟୁ ଏବଂ ଏ ଦେଶରେ ମିଳୁଥିବା ଚମଡ଼ା କଷାଇବାର ଦ୍ରବ୍ୟମାନଙ୍କର ଉପଯୋଗୀ ନୁହେଁ । ଏ ଦେଶର ଚମଡ଼ାକୁ ଏହି ଦେଶଜାତ ପଦାର୍ଥମାନଙ୍କ ଦ୍ୱାରା ପ୍ରସ୍ତୁତ କରିବା ମଧୁବାବୁଙ୍କର ଉଦ୍ଦେଶ୍ୟଥିବାରୁ ସେ ଅନ୍ୟ କାହାରି ସାହାଯ୍ୟ ବ୍ୟତୀତ ନିଜେ ନାନା ପ୍ରକାର ପରୀକ୍ଷା କରି ଚମଡ଼ା ପ୍ରସ୍ତୁତ ପ୍ରଣାଳୀ ସ୍ଥିର କରିଅଛନ୍ତି ଏବଂ ସେହି ପ୍ରଣାଳୀରେ ପ୍ରସ୍ତୁତ ହେଉଥିବା ଚମଡ଼ାମାନ ଦେଶ ବିଦେଶରେ ସୁଖ୍ୟାତି ଲାଭ କରିଅଛି । ଏହି ସବୁ ପରୀକ୍ଷାରେ ମଧୁବାବୁଙ୍କୁ ଯେପରି କ୍ଷତିଗ୍ରସ୍ତ ହେବାକୁ ହୋଇଅଛି, ତାହା ବୁଝିବା ସାଧାରଣଙ୍କ ପକ୍ଷରେ ସହଜ ନୁହେଁ ।

ଉତ୍କଳ ଟାନେରିର ପ୍ରଥମାବସ୍ଥା ଗତ ହୋଇଅଛି । ବର୍ତ୍ତମାନ ଆଉ ପରୀକ୍ଷାର ସମୟ ନାହିଁ । ସ୍ୱଦେଶଜାତ ଦ୍ରବ୍ୟ ନେଇ ବିଦେଶୀ କାରିଗରମାନଙ୍କ ଦ୍ୱାରା କିପରି ଉତ୍କୃଷ୍ଟ ଚମଡ଼ାର ଜିନିଷମାନ ପ୍ରସ୍ତୁତ ହୋଇପାରେ ତାହା ଉତ୍କଳ ଟାନେରୀ ଭଲ ରୂପେ

ଦେଖାଇଅଛି । ବର୍ତ୍ତମାନ ବହୁଳ ପରିମାଣରେ ପଦାର୍ଥ ପ୍ରସ୍ତୁତ ହେଲେ ଉତ୍କଳ ଟାନେରୀ ଗୋଟିଏ ଲାଭଜନକ ବ୍ୟବସାୟ ହୋଇ ଚିରଦିନ ଓଡ଼ିଶାରେ ରହିବ । ଏହି ଉଦ୍ଦେଶ୍ୟରେ ମଧୁବାବୁ ତାହାଙ୍କର ଟାନେରିକୁ ଗୋଟିଏ ଲିମିଟେଡ୍ କମ୍ପାନୀ ହାତରେ ଦେବାକୁ ପ୍ରସ୍ତୁତ ଏବଂ ଉତ୍କଳ ଟାନେରୀ କମ୍ପାନୀ ୧୯୧୩ ମସୀହାର ୭ ଆଇନ ଅନୁସାରେ ଗୋଟିଏ ଲିମିଟେଡ୍ କମ୍ପାନୀ ବୋଲି ରେଜିଷ୍ଟରୀ ହୋଇଅଛି । ମଧୁବାବୁ ଦେଶର କଲ୍ୟାଣ କାମନା କରି ପ୍ରାୟ ବ୨୦ର୍ଷ କାଳ ନିଜ ହାତରୁ ବହୁ ପରିମାଣରେ ଅର୍ଥ ବ୍ୟୟ କରି ଓ ନିଜର ବୁଦ୍ଧି, କୌଶଳ ଏବଂ ଅକାତର ପରିଶ୍ରମ ଦ୍ୱାରା ଏହି ବୃହତ୍ ଟାନେରିକୁ ପୂର୍ଣ୍ଣାଙ୍ଗ ଶରୀରରେ ଠିଆ କରାଇ ଦେଶବାସୀଙ୍କ ହାତରେ ଛାଡ଼ି ଦେବାକୁ ପ୍ରସ୍ତୁତ । ଓଡ଼ିଶାବାସୀମାନେ ଏ ସୁବିଧାକୁ ନ ଛାଡ଼ି ଯେବେ ସେମାନେ ଅଂଶୀଦାର ହୋଇ କମ୍ପାନିଟିକୁ ନିଜ ହାତରେ ରଖିପାରନ୍ତି, ତାହା ହେଲେ ଟାନେରୀ ଯାହା ଲାଭ କରିବ ତାହା ଓଡ଼ିଶାବାସୀମାନେ ପାଇପାରିବେ ।

ଜଣେ ଓଡ଼ିଆ ପୁଅ ଗୋଟିଏ ବ୍ୟବସାୟରେ ହାତ ଦେଇ ପୃଥିବୀର ଶିଳ୍ପ ରାଜ୍ୟରେ ଓଡ଼ିଶାର ଯେ ସୁଖ୍ୟାତି ସ୍ଥାପନ କରିଛନ୍ତି ସେଥି ସକାଶେ ଆମ୍ଭେମାନେ ଗର୍ବ ଅନୁଭବ କରୁ । ଉତ୍କଳ ଟାନେରୀ ପ୍ରସ୍ତୁତ ଚମଡ଼ାର ଦ୍ରବ୍ୟମାନ ଦେଶ ବିଦେଶରେ ଯଦିଓ ସୁଖ୍ୟାତି ଲାଭ କରିଅଛି, ଅର୍ଥାଭାବରୁ ତାହା ବହୁ ପରିମାଣରେ ଯୋଗାଇ ପାରୁ ନ ଥିବାରୁ ଟାନେରୀ ଲାଭଜନକ ହୋଇପାରିନାହିଁ ।

ବର୍ତ୍ତମାନ ଉତ୍କଳ ଟାନେରୀ କମ୍ପାନିଙ୍କ ମୂଳଧନ ଟ୮୦୦୦୦୦ଙ୍କା(ଆଠଲକ୍ଷ) ହେବ, ତାହାହେଲେ ଟାନେରିର କାର୍ଯ୍ୟ ବହୁତ ପରିମାଣରେ ବଢ଼ିବ ଏବଂ ପ୍ରଚୁର ପରିମାଣରେ ଚମତ୍କାର ଦ୍ରବ୍ୟମାନ ପ୍ରସ୍ତୁତ ହୋଇ ଦେଶ ବିଦେଶକୁ ପଠାଯିବ । ଏହି ଟ୮୦୦୦୦୦ଙ୍କା (ଆଠଲକ୍ଷ) ୮୦,୦୦୦ (ଅଶିହଜାର) ଅଂଶରେ ବିଭକ୍ତ ହୋଇଅଛି । ସର୍ବସାଧାରଣ ଲୋକ ସହଜରେ କମ୍ପାନିର ଅଂଶୀଦାର ହୋଇପାରିବେ, ଏଥି ସକାଶେ ପ୍ରତି ଅଂଶର ମୂଲ୍ୟ ଟ୧୦ଙ୍କା କରାଯାଇଅଛି । ଉତ୍କଳ ଟାନେରୀ ଜଣେ ଓଡ଼ିଆ ଦ୍ୱାରା ସ୍ଥାପିତ ଏବଂ ଓଡ଼ିଆର ବୁଦ୍ଧି, ଅଧ୍ୟବସାୟ ଓ ଅର୍ଥ ଦ୍ୱାରା ପରିପୁଷ୍ଟ ହୋଇ ଦେଶ ବିଦେଶରେ ସୁଖ୍ୟାତି ଲାଭ କରିଅଛି । ସୁତରାଂ ଯେବେ ଏହି କମ୍ପାନିର ଅଧିକାଂଶ ଅଂଶୀଦାର ଓଡ଼ିଶାବାସୀ ହୁଅନ୍ତି, ତାହାହେଲେ ଆମ୍ଭମାନଙ୍କ ପକ୍ଷେ ବଡ଼ ଗୌରବର ବିଷୟ ହେବ । ଆଜି ସଂଖ୍ୟାରେ କମ୍ପାନିର ଯେ ବିଜ୍ଞାପନ ବାହାରିଅଛି, ତହିଁରୁ ପାଠକମାନେ ବିଶେଷ ବିବରଣ ଜାଣିପାରିବେ । ଆଶାକରୁ ଓଡ଼ିଶାବାସୀମାନେ ଉତ୍କଳ ଟାନେରିକୁ ନିଜର ଅନୁଷ୍ଠାନ ବୋଲି ମନେ କରି ପ୍ରତ୍ୟେକ ଓଡ଼ିଆବାସୀ ତହିଁର ଅଂଶ ସେପରି କିଣିବେ । ଆଜିଯାଏ ଓଡ଼ିଆମାନେ ଅନ୍ୟତ୍ର ଯାଇ କଳକାରଖାନାରେ ଯେଉଁ କାମ କରୁଅଛନ୍ତି ତହିଁର ମଜୁରି କେବଳ ଆମ୍ଭ ଦେଶକୁ ଆସୁଅଛି । ମୂଳଧନର

ଲାଭ ଓଡ଼ିଶାବାସୀଙ୍କ ନିକଟକୁ କେବେ ଆସିନାହିଁ । ବର୍ତ୍ତମାନ ଓଡ଼ିଶାବାସୀମାନେ ଯେବେ କମ୍ପାନିର ଅଧିକାଂଶ ଅଂଶ ଗ୍ରହଣ କରନ୍ତି ତାହାହେଲେ ଉତ୍କଳ ଟାନେରିର ପଦାର୍ଥମାନ ଦେଶ ବିଦେଶରେ ବିକ୍ରୟ ହୋଇ ଯାହା ଲାଭ ହେବ, ତାହାର ଅଧିକାଂଶ ଓଡ଼ିଶାବାସୀମାନଙ୍କ ଠାରେ ରହିବ । ଏହି ଟାନେରିଟି ଓଡ଼ିଶାବାସୀମାନେ ସୁଚାରୁରୂପେ ଚଳାଇଲେ ଓଡ଼ିଶାବାସୀମାନେ ମିଳି ଦେଶରେ ଏପରି ଅନ୍ୟ ହିତକର ଓ ଲାଭଜନକ ଅନୁଷ୍ଠାନମାନ ସ୍ଥାପନ କରିପାରିବେ । ଏତଦ୍ଦ୍ୱାରା ଦେଶର ଦରିଦ୍ରତା ଦୂର ହେବାର ଆଶା କରାଯାଏ ।

***

## (୩)
## କଟକ ଉତ୍କଳଟାନେରୀ

ଉତ୍କଳଟାନେରୀ (ମଧୁବାବୁଙ୍କ ଚମଡ଼ା କାରଖାନା) ପାଠକମାନଙ୍କଠାରେ ସୁପରିଚିତ ଅଟେ । ଉତ୍କଳଟାନେରୀକୁ ଲିମିଟେଡ୍ କମ୍ପାନିରେ ପରିଣତ କରିବାର ଆବଶ୍ୟକତା ପାଠକମାନଙ୍କୁ ଜଣାଇ ତହିଁରେ ଅଂଶୀଦାର ହେବାକୁ ଏଥିପୂର୍ବେ ଅନୁରୋଧ କରିଥିଲୁଁ । ସ୍ଥାନାନ୍ତରେ ଯେଉଁ ବିଜ୍ଞାପନ ଦିଆଗଲା ତହିଁରୁ ବିଶେଷ ବିବରଣ ଜାଣିପାରିବେ । ଜଣେ ବ୍ୟକ୍ତିର ଧନଦ୍ୱାରା ବଡ଼ ବଡ଼ କାରଖାନା କୌଣସି ସ୍ଥାନରେ ଚଳିନାହିଁ । ସହସ୍ର ସହସ୍ର ଲୋକମାନଙ୍କୁ ଯେଉଁସବୁ କାରଖାନା ପୋଷୁଅଛି ତାହା ଅନେକ ବ୍ୟକ୍ତିଙ୍କର ଧନରେ କମ୍ପାନୀ ହୋଇ ସ୍ଥାପିତ ହୋଇଅଛି । ସଭ୍ୟତା ବୃଦ୍ଧି ସଙ୍ଗେ ସଙ୍ଗେ ଚମଡ଼ା ନିର୍ମିତ ଦ୍ରବ୍ୟର ଆଦର ଦିନକୁ ଦିନ ବଢ଼ୁଅଛି । ସୈନିକ ବିଭାଗ, ପୋଲିସ ବିଭାଗରୁ ଆରମ୍ଭ କରି ସାଧାରଣ ବ୍ୟକ୍ତିଙ୍କ ପର୍ଯ୍ୟନ୍ତ ସମସ୍ତେ ବୁଟ୍, ଜୋତା, ବ୍ୟାଗ, ଟ୍ରଙ୍କ ପ୍ରଭୃତି ଚମଡ଼ା ନିର୍ମିତ ଦ୍ରବ୍ୟ ବ୍ୟବହାର କରୁଅଛନ୍ତି । ଅନ୍ୟାନ୍ୟ ଦେଶକୁ ଯାହା ଯାଉଅଛି ତାକୁ ଛାଡ଼ିଦେଲେ କେବଳ ଜର୍ମାନିକୁ ୯ କ୍ରୋଡ଼ ଟଙ୍କାର ଚମଡ଼ା ଯାଉଅଛି । ସେହି ଚମଡ଼ା ଯେବେ କଷା ହୋଇ ଏ ଦେଶରେ ବ୍ୟବହାରଯୋଗ୍ୟ ହୁଏ, ତାହାହେଲେ ତହିଁର ମୂଲ୍ୟ ୫୦ କ୍ରୋଡ଼ ଟଙ୍କାରୁ କମ୍ ହେବ ନାହିଁ । ଏତଦ୍ଦ୍ୱାରା ଆମ୍ଭ ଦେଶର ସହସ୍ର ସହସ୍ର ଲୋକ ଯେ ପୋଷି ହେବେ ଏଥିରେ ସନ୍ଦେହ ନାହିଁ । ଆମ୍ଭ ଦେଶର ଲୋକମାନେ ଶିଳ୍ପବାଣିଜ୍ୟ ଛାଡ଼ିବା ହେତୁ ଦିନକୁ ଦିନ ଦରିଦ୍ର ହେଉଅଛନ୍ତି । ଯେଉଁ ପରିମାଣରେ ଲୋକସଂଖ୍ୟା ବଢ଼ୁଅଛି ସେହି ଅନୁପାତରେ ଚାଷ ଜମି ବଢ଼ୁନାହିଁ; କିମ୍ବା ଚାଷ ଜମି ବଢ଼ାଇବାର ସୁବିଧା ନାହିଁ । ଚାଷ ଜମି କିୟଦ୍ ପରିମାଣରେ ବଢ଼ିଲେ ମଧ୍ୟ ଧୋଇ ମରୁଡ଼ିର ଆଶଙ୍କା ରହିଅଛି । ପ୍ରତି ଚାରି ପାଞ୍ଚ ବର୍ଷରେ ଧୋଇ ହେତୁରୁ ହେଉ ବା ମରୁଡ଼ି ହେତୁରୁ ହେଉ ଆମ୍ଭମାନଙ୍କ ଦେଶରେ

ଦେଖାଇଅଛି । ବର୍ତ୍ତମାନ ବହୁଳ ପରିମାଣରେ ପଦାର୍ଥ ପ୍ରସ୍ତୁତ ହେଲେ ଉତ୍କଳ ଟାନେରୀ ଗୋଟିଏ ଲାଭଜନକ ବ୍ୟବସାୟ ହୋଇ ଚିରଦିନ ଓଡ଼ିଶାରେ ରହିବ । ଏହି ଉଦ୍ଦେଶ୍ୟରେ ମଧୁବାବୁ ତାହାଙ୍କର ଟାନେରିକୁ ଗୋଟିଏ ଲିମିଟେଡ଼ କମ୍ପାନୀ ହାତରେ ଦେବାକୁ ପ୍ରସ୍ତୁତ ଏବଂ ଉତ୍କଳ ଟାନେରୀ କମ୍ପାନୀ ୧୯୧୩ ମସୀହାର ୭ ଆଇନ ଅନୁସାରେ ଗୋଟିଏ ଲିମିଟେଡ଼ କମ୍ପାନୀ ବୋଲି ରେଜିଷ୍ଟରୀ ହୋଇଅଛି । ମଧୁବାବୁ ଦେଶର କଲ୍ୟାଣ କାମନା କରି ପ୍ରାୟ ବ୨୦ର୍ଷ କାଳ ନିଜ ହାତରୁ ବହୁ ପରିମାଣରେ ଅର୍ଥ ବ୍ୟୟ କରି ଓ ନିଜର ବୁଦ୍ଧି, କୌଶଳ ଏବଂ ଅକାତର ପରିଶ୍ରମ ଦ୍ୱାରା ଏହି ବୃହତ୍ ଟାନେରିକୁ ପୂର୍ଣ୍ଣାଙ୍ଗ ଶରୀରରେ ଠିଆ କରାଇ ଦେଶବାସୀଙ୍କ ହାତରେ ଛାଡ଼ି ଦେବାକୁ ପ୍ରସ୍ତୁତ । ଓଡ଼ିଶାବାସୀମାନେ ଏ ସୁବିଧାକୁ ନ ଛାଡ଼ି ଯେବେ ସେମାନେ ଅଂଶୀଦାର ହୋଇ କମ୍ପାନିଟିକୁ ନିଜ ହାତରେ ରଖିପାରନ୍ତି, ତାହା ହେଲେ ଟାନେରୀ ଯାହା ଲାଭ କରିବ ତାହା ଓଡ଼ିଶାବାସୀମାନେ ପାଇପାରିବେ ।

ଜଣେ ଓଡ଼ିଆ ପୁଅ ଗୋଟିଏ ବ୍ୟବସାୟରେ ହାତ ଦେଇ ପୃଥିବୀର ଶିଳ୍ପ ରାଜ୍ୟରେ ଓଡ଼ିଶାର ଯେ ସୁଖ୍ୟାତି ସ୍ଥାପନ କରିଛନ୍ତି ସେଥି ସକାଶେ ଆମ୍ଭେମାନେ ଗର୍ବ ଅନୁଭବ କରୁ । ଉତ୍କଳ ଟାନେରୀ ପ୍ରସ୍ତୁତ ଚମଡ଼ାର ଦ୍ରବ୍ୟମାନ ଦେଶ ବିଦେଶରେ ଯଦିଓ ସୁଖ୍ୟାତି ଲାଭ କରିଅଛି, ଅର୍ଥାଭାବରୁ ତାହା ବହୁ ପରିମାଣରେ ଯୋଗାଇ ପାରୁ ନ ଥିବାରୁ ଟାନେରୀ ଲାଭଜନକ ହୋଇପାରିନାହିଁ ।

ବର୍ତ୍ତମାନ ଉତ୍କଳ ଟାନେରୀ କମ୍ପାନିଙ୍କ ମୂଳଧନ ଟ୮୦୦୦୦୦ଙ୍କା(ଆଠଲକ୍ଷ) ହେବ, ତାହାହେଲେ ଟାନେରିର କାର୍ଯ୍ୟ ବହୁତ ପରିମାଣରେ ବଢ଼ିବ ଏବଂ ପ୍ରଚୁର ପରିମାଣରେ ଚମତ୍କାର ଦ୍ରବ୍ୟମାନ ପ୍ରସ୍ତୁତ ହୋଇ ଦେଶ ବିଦେଶକୁ ପଠାଯିବ । ଏହି ଟ୮୦୦୦୦୦ଙ୍କା (ଆଠଲକ୍ଷ) ୮୦,୦୦୦ (ଅଶିହଜାର) ଅଂଶରେ ବିଭକ୍ତ ହୋଇଅଛି । ସର୍ବସାଧାରଣ ଲୋକ ସହଜରେ କମ୍ପାନିର ଅଂଶୀଦାର ହୋଇପାରିବେ, ଏଥି ସକାଶେ ପ୍ରତି ଅଂଶର ମୂଲ୍ୟ ଟ୧୦ଙ୍କା କରାଯାଇଅଛି । ଉତ୍କଳ ଟାନେରୀ ଜଣେ ଓଡ଼ିଆ ଦ୍ୱାରା ସ୍ଥାପିତ ଏବଂ ଓଡ଼ିଆର ବୁଦ୍ଧି, ଅଧ୍ୟବସାୟ ଓ ଅର୍ଥ ଦ୍ୱାରା ପରିପୁଷ୍ଟ ହୋଇ ଦେଶ ବିଦେଶରେ ସୁଖ୍ୟାତି ଲାଭ କରିଅଛି । ସୁତରାଂ ଯେବେ ଏହି କମ୍ପାନିର ଅଧିକାଂଶ ଅଂଶୀଦାର ଓଡ଼ିଶାବାସୀ ହୁଅନ୍ତି, ତାହାହେଲେ ଆମ୍ଭମାନଙ୍କ ପକ୍ଷେ ବଡ଼ ଗୌରବର ବିଷୟ ହେବ । ଆଜି ସଂଖ୍ୟାରେ କମ୍ପାନିର ଯେ ବିଜ୍ଞାପନ ବାହାରିଅଛି, ତହିଁରୁ ପାଠକମାନେ ବିଶେଷ ବିବରଣ ଜାଣିପାରିବେ । ଆଶାକରୁ ଓଡ଼ିଶାବାସୀମାନେ ଉତ୍କଳ ଟାନେରିକୁ ନିଜର ଅନୁଷ୍ଠାନ ବୋଲି ମନେ କରି ପ୍ରତ୍ୟେକ ଓଡ଼ିଆବାସୀ ତହିଁର ଅଂଶ ସେପରି କିଣିବେ । ଆଜିଯାଏ ଓଡ଼ିଆମାନେ ଅନ୍ୟତ୍ର ଯାଇ କଳକାରଖାନାରେ ଯେଉଁ କାମ କରୁଅଛନ୍ତି ତହିଁର ମଜୁରି କେବଳ ଆମ୍ଭ ଦେଶକୁ ଆସୁଅଛି । ମୂଳଧନର

ଲାଭ ଓଡ଼ିଶାବାସୀଙ୍କ ନିକଟକୁ କେବେ ଆସିନାହିଁ । ବର୍ତ୍ତମାନ ଓଡ଼ିଶାବାସୀମାନେ ଯେବେ କମ୍ପାନିର ଅଧିକାଂଶ ଅଂଶ ଗ୍ରହଣ କରନ୍ତି ତାହାହେଲେ ଉତ୍କଳ ଟାନେରିର ପଦାର୍ଥମାନ ଦେଶ ବିଦେଶରେ ବିକ୍ରୟ ହୋଇ ଯାହା ଲାଭ ହେବ, ତାହାର ଅଧିକାଂଶ ଓଡ଼ିଶାବାସୀମାନଙ୍କ ଠାରେ ରହିବ । ଏହି ଟାନେରିଟି ଓଡ଼ିଶାବାସୀମାନେ ସୁଚାରୁରୂପେ ଚଳାଇଲେ ଓଡ଼ିଶାବାସୀମାନେ ମିଳି ଦେଶରେ ଏପରି ଅନ୍ୟ ହିତକର ଓ ଲାଭଜନକ ଅନୁଷ୍ଠାନମାନ ସ୍ଥାପନ କରିପାରିବେ । ଏତଦ୍ୱାରା ଦେଶର ଦରିଦ୍ରତା ଦୂର ହେବାର ଆଶା କରାଯାଏ ।

***

## (୩)
## କଟକ ଉତ୍କଳଟାନେରୀ

ଉତ୍କଳଟାନେରୀ (ମଧୁବାବୁଙ୍କ ଚମଡ଼ା କାରଖାନା) ପାଠକମାନଙ୍କଠାରେ ସୁପରିଚିତ ଅଟେ । ଉତ୍କଳଟାନେରୀକୁ ଲିମିଟେଡ୍ କମ୍ପାନିରେ ପରିଣତ କରିବାର ଆବଶ୍ୟକତା ପାଠକମାନଙ୍କୁ ଜଣାଇ ତହିଁରେ ଅଂଶୀଦାର ହେବାକୁ ଏଥିପୂର୍ବେ ଅନୁରୋଧ କରିଥିଲୁଁ । ସ୍ଥାନାନ୍ତରେ ଯେଉଁ ବିଜ୍ଞାପନ ଦିଆଗଲା ତହିଁରୁ ବିଶେଷ ବିବରଣ ଜାଣିପାରିବେ । ଜଣେ ବ୍ୟକ୍ତିର ଧନଦ୍ୱାରା ବଡ଼ ବଡ଼ କାରଖାନା କୌଣସି ସ୍ଥାନରେ ଚଳିନାହିଁ । ସହସ୍ର ସହସ୍ର ଲୋକମାନଙ୍କୁ ଯେଉଁସବୁ କାରଖାନା ପୋଷୁଅଛି ତାହା ଅନେକ ବ୍ୟକ୍ତିଙ୍କର ଧନରେ କମ୍ପାନୀ ହୋଇ ସ୍ଥାପିତ ହୋଇଅଛି । ସଭ୍ୟତା ବୃଦ୍ଧି ସଙ୍ଗେ ସଙ୍ଗେ ଚମଡ଼ା ନିର୍ମିତ ଦ୍ରବ୍ୟର ଆଦର ଦିନକୁ ଦିନ ବଢୁଅଛି । ସୈନିକ ବିଭାଗ, ପୋଲିସ ବିଭାଗରୁ ଆରମ୍ଭ କରି ସାଧାରଣ ବ୍ୟକ୍ତିଙ୍କ ପର୍ଯ୍ୟନ୍ତ ସମସ୍ତେ ବୁଟ୍, ଜୋତା, ବ୍ୟାଗ, ଟ୍ରଙ୍କ ପ୍ରଭୃତି ଚମଡ଼ା ନିର୍ମିତ ଦ୍ରବ୍ୟ ବ୍ୟବହାର କରୁଅଛନ୍ତି । ଅନ୍ୟାନ୍ୟ ଦେଶକୁ ଯାହା ଯାଉଅଛି ତାକୁ ଛାଡ଼ିଦେଲେ କେବଳ ଜର୍ମାନିକୁ ୯ କ୍ରୋଡ଼ ଟଙ୍କାର ଚମଡ଼ା ଯାଉଅଛି । ସେହି ଚମଡ଼ା ଯେବେ କଷା ହୋଇ ଏ ଦେଶରେ ବ୍ୟବହାରଯୋଗ୍ୟ ହୁଏ, ତାହାହେଲେ ତହିଁର ମୂଲ୍ୟ ୫୦ କ୍ରୋଡ଼ ଟଙ୍କାରୁ କମ୍ ହେବ ନାହିଁ । ଏତଦ୍ୱାରା ଆମ୍ଭ ଦେଶର ସହସ୍ର ସହସ୍ର ଲୋକ ଯେ ପୋଷି ହେବେ ଏଥିରେ ସନ୍ଦେହ ନାହିଁ । ଆମ୍ଭ ଦେଶର ଲୋକମାନେ ଶିଳ୍ପବାଣିଜ୍ୟ ଛାଡ଼ିବା ହେତୁ ଦିନକୁ ଦିନ ଦରିଦ୍ର ହେଉଅଛନ୍ତି । ଯେଉଁ ପରିମାଣରେ ଲୋକସଂଖ୍ୟା ବଢୁଅଛି ସେହି ଅନୁପାତରେ ଚାଷ ଜମି ବଢୁନାହିଁ; କିମ୍ବା ଚାଷ ଜମି ବଢ଼ାଇବାର ସୁବିଧା ନାହିଁ । ଚାଷ ଜମି କିୟତ୍ ପରିମାଣରେ ବଢ଼ିଲେ ମଧ ଧୋଇ ମରୁଡ଼ିର ଆଶଙ୍କା ରହିଅଛି । ପ୍ରତି ଚାରି ପାଞ୍ଚ ବର୍ଷରେ ଧୋଇ ହେତୁରୁ ହେଉ ବା ମରୁଡ଼ି ହେତୁରୁ ହେଉ ଆମ୍ଭମାନଙ୍କ ଦେଶରେ

କୃଷିହାନି ହୋଇଥାଏ । ଏହିସବୁ କାରଣରୁ ଲକ୍ଷ ଲକ୍ଷ ଓଡ଼ିଆ କଲିକତା ଯାଇ କଳକାରଖାନାରେ କାମ କରୁଅଛନ୍ତି । ସେମାନେ କେବଳ ମଜୁରି ପାଉଅଛନ୍ତି । ଯେଉଁ ବିଦେଶୀ କମ୍ପାନୀ କଳକାରଖାନା ସ୍ଥାପନ କରିଅଛନ୍ତି ସେମାନେ ଲାଭବାନ୍ ହେଉଅଛନ୍ତି । ଏହାଛଡ଼ା ପ୍ରତି ଦୁର୍ଭିକ୍ଷରେ ସହସ୍ର ସହସ୍ର ଓଡ଼ିୟା ନିଜ ଦେଶ ଛାଡ଼ି ଚା ବଗିଚା ପ୍ରଭୃତିରେ କାମ କରିବାକୁ ଯାଉଅଛନ୍ତି । ଯେଉଁମାନେ ସେ ସବୁ ଜାଗାକୁ ଯାଉଅଛନ୍ତି ସେମାନଙ୍କର ଅବସ୍ଥା ଅତି ଶୋଚନୀୟ । ଯାହା ରୋଜଗାର କରନ୍ତି ତହିଁରେ କେବଳ ପେଟ ଖାଇବା ଚଳେ । ଦେଶକୁ ଫେରିଆସିବାର ଉପାୟ ନ ଥାଏ, ତେଣୁ କରି ଯେଉଁମାନେ ଚା ବଗିଚା ପ୍ରଭୃତିକୁ କୁଲିହୋଇ ଯାନ୍ତି ସେମାନେ ଚିରଦିନ ପାଇଁ ନିଜ ଦେଶରୁ ବିଦାୟ ହୋଇ ଅଚିହ୍ନା ଲୋକମାନଙ୍କ ମଧରେ ଦିନ କାଟି ମରନ୍ତି । ସେମାନଙ୍କ କଥା ଆଉ କେହି ଶୁଣିବାକୁ ପାଆନ୍ତି ନାହିଁ । ଆମ୍ଭମାନଙ୍କ ଦେଶର ଗରିବ ଲୋକମାନଙ୍କ [ର] ଏହି ଯେ ଶୋଚନୀୟ ଅବସ୍ଥା ତହିଁରୁ ସେମାନଙ୍କୁ ରକ୍ଷା କରିବାର ଏକମାତ୍ର ଉପାୟ ହେଉଛି ଆମ୍ଭ ନିଜଦେଶରେ କଳକାରଖାନା ବସାଇ ସେମାନଙ୍କୁ କାମ ଯୋଗାଇବା । ସେମାନେ ନିଜ ଦେଶରେ ମୂଲ ଲାଗିବାକୁ ପାଇଲେ ଅନ୍ନକଷ୍ଟ ଭୋଗିବେ ନାହିଁ କିମ୍ବା ନିଜ ଦେଶ ଛାଡ଼ି ବିଦେଶରେ କୁଲିଗିରି କରିବେ ନାହିଁ ।

ଯେଉଁ ଦେଶରୁ ଯେ ପରିମାଣରେ ବିଦେଶକୁ ଶିଳ୍ପଜାତ ଦ୍ରବ୍ୟ ପଠାଯାଏ ସେ ଦେଶ ସେହି ପରିମାଣରେ ଧନୀ ଅଟେ । ଆମ୍ଭ ଦେଶରୁ ଯେଉଁ ଚମଡ଼ା ଯାଉଅଛି ସେ ସବୁ ଚମଡ଼ାରେ ଯେବେ ଯୋତା ପ୍ରଭୃତି ଦ୍ରବ୍ୟ ପ୍ରସ୍ତୁତ କରି ଆମ୍ଭେମାନେ ବିଦେଶକୁ ପଠାଉଁ, ତାହାହେଲେ ଆମ୍ଭ ଦେଶକୁ ବର୍ଷରେ ଅତି କମ୍‌ରେ ପଚାଶ କ୍ରୋଡ଼ ଟଙ୍କା ଆସିପାରିବ ।

ଦେଶର ଦରିଦ୍ରତା ଘୁଞ୍ଚାଇବା ସକାଶ ଆମ୍ଭ ଦେଶର ପ୍ରତ୍ୟେକ ଚିନ୍ତାଶୀଳ ବ୍ୟକ୍ତି ବର୍ତ୍ତମାନ ଚେଷ୍ଟିତ । ଗତ ଶନିବାର [୨୯.୬.୧୯୨୪] କଟକରେ ଯେଉଁ ପ୍ରାଦେଶିକ ସମ୍ମିଳନୀ ବସିଥିଲା ତହିଁରେ ସମସ୍ତେ ଏକମତ ହୋଇ ସ୍ଥିର କଲେ ଯେ ଉତ୍କଳଟାନେରୀ ଗୋଟିଏ ଜାତୀୟ ଅନୁଷ୍ଠାନ ଏବଂ ପ୍ରତ୍ୟେକ ଉତ୍କଳବାସୀ ତାହାକୁ ସାହାଯ୍ୟ କରିବା ଉଚିତ । ସମ୍ମିଳନୀମଣ୍ଡପରେ ଟାନେରୀ ସମ୍ବନ୍ଧୀୟ କେତେକ କାଗଜ ବଣ୍ଟା ହୋଇଥିଲା । ତହିଁରୁ ଦେଖିଲୁଁ ଯେ ସ୍ୱର୍ଗୀୟ ସର୍ ଆଶୁତୋଷ ମୁଖୁର୍ଜି ଉତ୍କଳଟାନେରୀକୁ ବୃହତ୍ କାରଖାନା କରିବା ପ୍ରତି ବିଶେଷ ମନୋଯୋଗୀ ହୋଇଥିଲେ ଏବଂ ନିଜେ ଡାଇରେକ୍ଟର ହେବାକୁ ସମ୍ମତ ହୋଇଥିଲେ ।

ସର୍ ଆଶୁତୋଷ ବଙ୍ଗଦେଶରେ ଜଣେ ଅସାଧାରଣ ପ୍ରତିଭାବିଶିଷ୍ଟ ବ୍ୟକ୍ତି ଥିଲେ । ତାହାଙ୍କ ଜୀବନରେ ସେ ଯେଉଁଥିରେ ହାତ ଦେଇଥିଲେ ତହିଁରେ ସେ ଅସୀମ କୃତିତ୍ୱ ଦେଖାଇଯାଇଅଛନ୍ତି । କଲିକତା ବିଶ୍ୱବିଦ୍ୟାଳୟ ଯାହା କି ପୃଥିବୀର ବୃହତ୍ତମ

ବିଶ୍ୱବିଦ୍ୟାଳୟ ଅଟେ, ତାହା ସର୍ ଆଶୁତୋଷଙ୍କର ସେହି ପ୍ରତିଭା ଓ କୃତିତ୍ୱର ଜ୍ୱଳନ୍ତ ପ୍ରମାଣ । ଦେଶରେ ଶିକ୍ଷାବିସ୍ତାର କରି ଜାତିକୁ ଜାଗ୍ରତ କରିବା ତାହାଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା । ସହସ୍ର ସହସ୍ର ଯୁବକ ସେହି କଲିକତା ବିଶ୍ୱବିଦ୍ୟାଳୟରୁ ଶିକ୍ଷିତ ହୋଇ ବାହାରୁଅଛନ୍ତି । ... ଏପରି ହୋଇପଡ଼ିଛି ଯେ ସମସ୍ତେ ଉପଯୁକ୍ତ ଜୀବିକା ପାଇପାରୁନାହାନ୍ତି, ଏହି ଅସୁବିଧା ଦୂର କରିବା ଲାଗି ଉତ୍କଳଟାନେରୀକୁ ଗୋଟିଏ ସୁବୃହତ୍ କାରଖାନାରେ ପରିଣତ କରବାକୁ ତାହାଙ୍କର ଇଚ୍ଛା ଥିଲା । ଟାନେରୀରେ ଯେ କାର୍ଯ୍ୟ ହୁଏ ତହିଁରେ ଅନେକସ୍ଥଳରେ ବିଜ୍ଞାନଶିକ୍ଷାର ଆବଶ୍ୟକ । ଯେଉଁ ଯୁବକମାନେ ବୈଜ୍ଞାନିକ ଶିକ୍ଷା କଲେଜରେ ପାଇଅଛନ୍ତି ସେମାନଙ୍କୁ ସବୁ ଟାନେରୀରେ କାର୍ଯ୍ୟ ଯୋଗାଇବା ସର୍ ଆଶୁତୋଷଙ୍କର ଉଦ୍ଦେଶ୍ୟ ଥିଲା । ଅକାଳମୃତ୍ୟୁ ତାହାଙ୍କର ସେହି ଶୁଭ ଇଚ୍ଛାକୁ କାର୍ଯ୍ୟରେ ପରିଣତ କରିବାକୁ ଦେଲା ନାହିଁ । ମାତ୍ର ସେପରି ବ୍ୟକ୍ତି ଯେତେବେଳେ ଡାଇରେକ୍ଟର ହେବାକୁ ସମ୍ମତ ହୋଇଥିଲେ ତହିଁରୁ ଟାନେରୀର ବର୍ତ୍ତମାନ ସୁଖ୍ୟାତି ଓ ଭବିଷ୍ୟତ ଉପକାରିତା ସହଜେ ଅନୁମାନ କରାଯାଇପାରେ । ଆଜିକାଲି ଇଂଲଣ୍ଡ, ଫ୍ରାନ୍ସ, ଆମେରିକା, ଅଷ୍ଟ୍ରେଲିଆ ପ୍ରଭୃତି ଦେଶରେ ଉତ୍କଳଟାନେରୀ ପ୍ରସ୍ତୁତ ଦ୍ରବ୍ୟମାନଙ୍କର ବିଶେଷ ଆଦର । ସେସବୁ ଦେଶରୁ ଯେତେ ଫରମାସ ଆସୁଅଛି ତାହା ଯୋଗାଇବାସକାଶ ମୂଳଧନର ଆବଶ୍ୟକ । ବର୍ତ୍ତମାନ ଉତ୍କଳଟାନେରୀ ଯେ ସୁଖ୍ୟାତି ଲାଭ କରିଅଛି ତାହାକୁ ସେ ଅବସ୍ଥାକୁ ଆଣିବା ପାଇଁ ମଧୁବାବୁ ବିସ୍ତର ଅର୍ଥବ୍ୟୟ କରି ୨୦ ବର୍ଷ କାଳ ପରିଶ୍ରମ କରିଅଛନ୍ତି । ଶିକ୍ଷିତ ବ୍ୟକ୍ତି ଓ ମଜୁରଦାର ଉଭୟଙ୍କୁ କାର୍ଯ୍ୟ ଯୋଗାଇବା ତାହାଙ୍କର ଉଦ୍ଦେଶ୍ୟ ଅଟେ । ଉଚ୍ଚ ବେତନ ଦେଇ ମଧୁବାବୁ ଟାନେରୀରେ ସାହେବମାନଙ୍କୁ ନିଯୁକ୍ତ କରିଥିଲେ । ଉପଯୁକ୍ତ ଶିକ୍ଷା ପାଇଥିଲେ, ବର୍ତ୍ତମାନ ଭାରତବାସୀ ସେ କାର୍ଯ୍ୟ କରିପାରିବେ । ଚାଷ ନ ଥିବା କେଳାମାନେ ଗୋଧି ଚମ କୁମ୍ଭୀର ଚମ ଯୋଗାଇ ନିଜ ନିଜ ଅବସ୍ଥା ଭଲ କରୁଅଛନ୍ତି । ସେହିସବୁ ଚମଡ଼ାସକାଶ ଏତେ ଫରମାସ ଆସୁଅଛି ଯେ ଟାନେରୀ ତାହା ଯୋଗାଇ ପାରୁନାହିଁ । ତିନି ଲକ୍ଷ ଟଙ୍କାର ଅର୍ଥାତ୍ ତିରିଶ ହଜାର ଅଂଶ ବିକ୍ରୟ ହେବା ଆବଶ୍ୟକ । କମ୍ପାନୀ ଶତକଡ଼ା ୧୬ ଟଙ୍କା ବାର ଅଣା ଲାଭ ଦେବେ, ଯେ ଶଏ ଟଙ୍କା କମ୍ପାନୀରେ ଦେବେ ପାଞ୍ଚବର୍ଷରେ ତାହା ଦ୍ୱିଗୁଣ ହୋଇଯିବ । ଲୋକେ ଯେବେ ଭଲ ରୂପେ ଚେଷ୍ଟା କରନ୍ତି, ତାହା ହେଲେ ଅଳ୍ପଦିନ ମଧ୍ୟରେ ତିରିଶ ହଜାର ଅଂଶ ବିକ୍ରି ହୋଇଯିବ । ସର୍ ଆଶୁତୋଷ ବିଶ୍ୱବିଦ୍ୟାଳୟରେ ବିଜ୍ଞାନ ଶିକ୍ଷା ପ୍ରଚଳନ କଲେ । ସାଧାରଣଙ୍କ ବଦାନ୍ୟତାରେ ଏହା ହୋଇଅଛି । ମାତ୍ର ଯେଉଁ ଯୁବକମାନେ ବୈଜ୍ଞାନିକ ଶିକ୍ଷା ଲାଭ କଲେ ସେମାନଙ୍କୁ ଅର୍ଥକରୀ କାର୍ଯ୍ୟରେ ଲଗାଇବା ପୂର୍ବରୁ ସେ ସ୍ୱର୍ଗକୁ ଚାଲିଗଲେ । ଶିକ୍ଷିତ ଯୁବକମାନଙ୍କୁ କାର୍ଯ୍ୟ ଯୋଗାଇବା ଉଦ୍ଦେଶ୍ୟରେ ସେ ଏଥିରେ ହାତ ଦେଇଥିଲେ । ଯେଉଁ ନ କ୍ରୋଡ଼

ଟଙ୍କାର ଚମଡ଼ା ଜର୍ମାନିକୁ ରପ୍ତାନୀ ହେଉଅଛି ତାହା ବନ୍ଦ କରି ଯେବେ ତହିଁରେ ବୁଟ୍ ଯୋତା ପ୍ରଭୃତି ଏଠାରେ ପ୍ରସ୍ତୁତ କରୁ ତାହାହେଲେ ପ୍ରାୟ ୫୦ କ୍ରୋଡ଼ ଟଙ୍କାର ଜିନିଷ କେବଳ ଜର୍ମାନିକୁ ଯୋଗାଇପାରିବା । ପ୍ରଥମେ ଅଳ୍ପରେ ଓଡ଼ିଶାରେ ଏହା ଆରମ୍ଭ କରିବାର ପ୍ରସ୍ତାବ ହୋଇଅଛି । ଏ କାରଖାନାରେ କେବଳ ମଲା ଗୋରୁଙ୍କ ଚମଡ଼ା ବ୍ୟବହୃତ ହେବ । କଂସାଇମରା ଗୋରୁ ଚମଡ଼ା ଟାନେରୀକୁ ଯିବ ନାହିଁ । ତଦ୍ୱାରା ଗୋବଧ ନିବାରଣ ହେବ । ଉତ୍କଳଟାନେରୀ କିମ୍ବିର [କୁମ୍ଭୀର] ଚମଡ଼ା କିଣି ତହିଁରେ ନାନାପ୍ରକାର ଜିନିଷ ପ୍ରସ୍ତୁତ କରନ୍ତି । ଯେଉଁମାନେ ଗୋହତ୍ୟା ନିବାରଣ କରିବାକୁ ଇଚ୍ଛା କରନ୍ତି ସେମାନେ ଉତ୍କଳଟାନେରୀକୁ ସାହାଯ୍ୟ କରନ୍ତୁ ।

ଅନେକ ସ୍କୁଲ୍ କଲେଜର ଛାତ୍ର ଶିଳ୍ପ ବ୍ୟବସାୟ କରିବା ଉଦ୍ଦେଶ୍ୟରେ ପଢ଼ା ଛାଡ଼ିଦେଇ ପରେ ଯେତେବେଳେ ଦେଖୁଛନ୍ତି ଯେ ସେପରି କୌଣସି ପ୍ରକାର ବାଟ ନାହିଁ ସେମାନେ ନିଜର ଭ୍ରମ ବୁଝିପାରି ପୁନର୍ବାର ସ୍କୁଲ୍ କଲେଜକୁ ଫେରି ଆସୁଅଛନ୍ତି । ବର୍ତ୍ତମାନ ଟଙ୍କା ଉଠାଇ ଚମଡ଼ା ପ୍ରସ୍ତୁତ କରିବା ପ୍ରଣାଳୀ ଶିକ୍ଷା ଦେବା ସକାଶ ଗୋଟିଏ କଲେଜ ସ୍ଥାପନ କରିବାର ସୁଯୋଗ ଉପସ୍ଥିତ । ବୈଜ୍ଞାନିକ ମତରେ ତଥା ପ୍ରଣାଳୀରେ ଚମଡ଼ା ପ୍ରସ୍ତୁତ କରିବାକୁ ଶିଖିଲେ ତଦ୍ୱାରା ସହଜରେ ନିଜର ଜୀବିକାର ଉପାୟ ମିଳିବ । ପ୍ରଥମରୁ ମଧୁବାବୁଙ୍କର ଏହି ଉଦ୍ଦେଶ୍ୟ ଥିଲା । ରାଭେନ୍‌ସା କଲେଜରେ ଚମଡ଼ା ପ୍ରସ୍ତୁତ ବିଜ୍ଞାନ ଶିକ୍ଷାଦେବା ସକାଶ ଗୋଟିଏ ଶ୍ରେଣୀ ଖୋଲିବା ପାଇଁ ମଧୁବାବୁ ଗଭର୍ଣ୍ଣମେଣ୍ଟଙ୍କୁ ସମ୍ମତ କରାଇଅଛନ୍ତି । ସର୍ ଆଶୁତୋଷ ଉତ୍କଳଟାନେରୀ ଡାଇରେକ୍ଟରମାନଙ୍କ ନିକଟ [କୁ] ଯେଉଁ ପତ୍ର ଲେଖିଥିଲେ ତହିଁରୁ ଜଣାଯାଏ ସେ ଏ ଉଦ୍ଦେଶ୍ୟ ଭଲରୂପେ ବୁଝିପାରିଥିଲେ । ଏହା ବୋଧହୁଏ ସାଧାରଣ ଲୋକେ ଜାଣନ୍ତି ନାହିଁ ଯେ ସର୍ ଆଶୁତୋଷ ମଧୁବାବୁଙ୍କୁ ଗୁରୁ ବୋଲି ଡାକୁଥିଲେ । ଉଭୟଙ୍କ ମଧ୍ୟରେ ଏ ଯେଉଁ ସମ୍ବନ୍ଧ ଥିଲା ତାହା ଅନେକ ସମ୍ବାଦପତ୍ରରେ ମଧ୍ୟ ବାହାରି ଅଛି । ସର୍ ଆଶୁତୋଷ ଆମ୍ଭମାନଙ୍କ ଦେଶରେ ଶିକ୍ଷାବିସ୍ତାର ସକାଶ ଯାହା କରିଯାଇଛନ୍ତି ତହିଁର କୃତଜ୍ଞତା ଚିହ୍ନସ୍ୱରୂପ ଆମ୍ଭମାନଙ୍କର ଛାତ୍ର ସମାଜ ଉତ୍କଳଟାନେରୀ ଅଂଶ ବିକ୍ରୟ କରିବାରେ ଚେଷ୍ଟା କରିବା ଉଚିତ୍ । ରାଭେନ୍‌ସା କଲେଜର ଛାତ୍ର ସଂଖ୍ୟା ପ୍ରାୟ ଚାରିଶ । ଓଡ଼ିଶାର ସ୍କୁଲମାନଙ୍କରେ ସହସ୍ର ସହସ୍ର ଛାତ୍ର ପଢୁଅଛନ୍ତି । ଚରଖା ବିସ୍ତାର କରିବାରେ ସେମାନେ ଯେପରି ଉତ୍ସାହ ଦେଖାଇଅଛନ୍ତି ଯେବେ ସେହିପରି ଉତ୍ସାହର ସହିତ କାର୍ଯ୍ୟ କରନ୍ତି ତାହହେଲେ ସେମାନେ ହଜାର ହଜାର ଅଂଶ ବିକ୍ରି କରିପାରିବେ, ଯେଉଁ ସ୍କୁଲ୍ କିମ୍ବା କଲେଜ ଏକ ହଜାର ଅଂଶ ବିକ୍ରି କରି ଫାଉଣ୍ଡେସନ ସେୟାର ଦ୍ୱାରା ୮୦୦୦ ଟଙ୍କା କିମ୍ବା ସାଧାରଣ ସେୟାର ଦ୍ୱାରା ୪୦୦୦ ଟଙ୍କା ଉଠାଇବେ ସେ ୩୦୦ ଟଙ୍କା କମିଶନ ସ୍ୱରୂପ ପାଇବେ । ମଧୁବାବୁ ତହିଁରେ ୧୦୦ ଟଙ୍କା ଦେବାକୁ ସ୍ୱୀକୃତି ଅଛନ୍ତି ।

ଏହି ଚାରିଶ ଟଙ୍କାକୁ ଛାତ୍ରମାନେ ନିଜ ନିଜ ସ୍କୁଲ୍ କିମ୍ବା କଲେଜରେ କୌଣସି ସାଧାରଣ ହିତକର କାର୍ଯ୍ୟସକାଶ ଜମା ରଖିପାରନ୍ତି । ଯେ ଉଦ୍ଦେଶ୍ୟରେ ସେ ଟଙ୍କା ଜମା ରଖନ୍ତୁ ସେଥି ସହିତ ସର୍ ଆଶୁତୋଷଙ୍କର ନାମ ଯୋଗ ରହିବା ବାଞ୍ଛନୀୟ ।

***

## (୪)

## [ମହାତ୍ମାଗାନ୍ଧୀଙ୍କୁ ପ୍ରଦତ୍ତ ମାନପତ୍ର]

### ପତିତବାନ୍ଧବ ମହାତ୍ମା ଶ୍ରୀ ମୋହନଦାସ କରମଚାନ୍ଦ ଗାନ୍ଧି –

**ଉଦାରଚରିତେଷୁ ।**

ଆପଣ ଏହି ଓଡ଼ିଶାକୁ ଆଜି ଆଖି ଆଗରେ ଯେପରି ଦେଖୁଅଛନ୍ତି, ବାସ୍ତବିକରେ ଏହା ଏପରି ନ ଥିଲା, ଓଡ଼ିଶାରେ ଜାତି ଧର୍ମର ବିଚାର ନ ଥିଲା, ଓଡ଼ିଶା ବୌଦ୍ଧଧର୍ମର ଲୀଳାଭୂମି ଥିଲା । ଆଜି ମଧ୍ୟ ନୀଳାଚଳଧାମ ଶ୍ରୀଜଗନ୍ନାଥ କ୍ଷେତ୍ରରେ ବ୍ରାହ୍ମଣ ଶୂଦ୍ର ଏକପାତ୍ରରେ ବସି ଭୋଜନ କରୁଅଛନ୍ତି, ଓଡ଼ିଶା ସମସ୍ତ ହରାଇ ଶ୍ରୀକ୍ଷେତ୍ରରେ ଏତିକି ରଖିପାରିଛି ବୋଲି ହିନ୍ଦୁଜଗତରେ ପୂଜ୍ୟ ହୋଇଅଛି, ସତ୍ୟ ! କିନ୍ତୁ ସେଠାରେ ମଧ୍ୟ ଆମ୍ଭମାନଙ୍କର ସ୍ଥାନ ନାହିଁ ।

ଆମ୍ଭେମାନେ ବିରାଟ ମାନବଜାତିର ଏକ ଅଂଶ ହେଲେ ମଧ୍ୟ ଅସ୍ପୃଶ୍ୟ ଓ ଘୃଣ୍ୟ । ଜଗନ୍ନାଥ ପତିତପାବନ ନାମରେ ବିଶେଷରୂପେ ଲୋକରେ ପରିଚିତ । ଦୀନ ଦୁଃଖିମାନଙ୍କୁ ଉଦ୍ଧାର କରିବା ତାଙ୍କର ପ୍ରିୟକାର୍ଯ୍ୟ । ବୁଦ୍ଧ, କୃଷ୍ଣ, ଚୈତନ୍ୟ ପ୍ରଭୃତି ମହାପୁରୁଷମାନେ ଧର୍ମ୍ମ ସଂସ୍ଥାପନ କାଳରେ ଏହି ଉତ୍କଳଖଣ୍ଡକୁ ସେମାନଙ୍କର ଲୀଳାଭୂମି ନିରୂପଣ କରିଥିଲେ । ଆମ୍ଭେମାନେ ଆପଣଙ୍କୁ ସେହି ପଥର ପଥିକ ଦେଖି ହୃଦୟରେ ବହୁ ଆଶା ପୋଷଣ କରିଅଛୁଁ ।

ଆପଣ କାତରର କ୍ରନ୍ଦନ ସହି ନ ପାରି ଜୀବନର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟରେ ଜଳାଞ୍ଜଳି ଦେଇଅଛନ୍ତି; ସେମାନଙ୍କୁ ରକ୍ଷା କରିବାପାଇଁ ଈଶ୍ୱର ଶକ୍ତି ହୃଦୟରେ ଧରି କେତେ ମହା ପରୀକ୍ଷାରୁ ଉତ୍ତୀର୍ଣ୍ଣ ହୋଇଅଛନ୍ତି ।

ବହୁ ସାଧନା ପରଶେଷରେ ଦେଶୀୟ ଶିଳ୍ପର ଉନ୍ନତିରେ ମନଃ ପ୍ରାଣ ଢ଼ାଳି ଦେଇଅଛନ୍ତି । ଏହି ନବଦୀକ୍ଷାରେ ଅନୁପ୍ରାଣିତ ହୋଇ ଆଜି ଆପଣ କଟକକୁ ଉତ୍କଳଟାନେରୀ ଦେଖିବା ପାଇଁ ଆସିଅଛନ୍ତି । ଗତ ୩୦ବର୍ଷ ମଧ୍ୟରେ ଏ ଉତ୍କଳଟାନେରୀ ଆମ୍ଭମାନଙ୍କର ହସ୍ତ ଓ ଚକ୍ଷୁଗ ଶିଳ୍ପ ନୈପୁଣ୍ୟ ଶକ୍ତି ବଢ଼ାଇଅଛି ଏବଂ

ଆମ୍ଭେମାନେ ଅଧିକ ଉପାର୍ଜନ କରିବାର କ୍ଷମତା ଲାଭ କରିଅଛୁଁ । ଆମ୍ଭମାନଙ୍କର ବିଶ୍ୱାସ ଯେ — ଉତ୍କଳଟାନେରୀ ଉନ୍ନତି ଦ୍ୱାରା ଗୋମାତାର ରକ୍ଷା ହେବ, ଦେଶର ଆର୍ଥିକ-ଅବସ୍ଥା ବଦଳିଯିବ ଏବଂ ଶିଳ୍ପର ଉନ୍ନତି ସଙ୍ଗେ ସଙ୍ଗେ ଅସ୍ପୃଶ୍ୟତା ଲୋପ ପାଇବ । ଆପଣ ଶିଳ୍ପର ଉନ୍ନତି ଛଳେ ଆସି କଟକ ତଥା ସମସ୍ତ ଉତ୍କଳଖଣ୍ଡର ପତିତମାନଙ୍କୁ ପ୍ରତି ଯେ ଦୟା ଦେଖାଇଅଛନ୍ତି, ସେଥି ନିମିତ୍ତ ଆମ୍ଭେମାନେ ହୃଦୟର ଭକ୍ତି ଓ ଶ୍ରଦ୍ଧା ଅର୍ପଣ କରୁଅଛୁଁ ।

**କଟକ** — **ବଶମ୍ବଦ**

**ତା ୧୯.୮.୨୫ରିଖ** — **ଉତ୍କଳଟାନେରୀ ଶ୍ରମିକଗଣ**

***

# ଉପାଦାନ ପଞ୍ଜିକା

## ପତ୍ରପତ୍ରିକା

୧. **ଆଶା** (ସଂ. ଶଶିଭୂଷଣ ରଥ) ବ୍ରହ୍ମପୁର

୨. **ଉତ୍କଳ-ଗୌରବ-୨୦୦୭** (ସଂ. ଶ୍ରୀଚରଣ ମହାନ୍ତି) ପ୍ରଗତି ଉତ୍କଳ ସଂଘ, ରାଉରକେଲା

୩. **ଉତ୍କଳ-ଦୀପିକା** (ସଂ. ଗୌରୀଶଙ୍କର ରାୟ/ସୁଦାମଚରଣ ନାୟକ ଓ ଅନ୍ୟମାନେ) କଟକ

୪. **ଉତ୍କଳ ସମ୍ମିଳନୀର ବିବରଣୀ ପୁସ୍ତିକା** (୧ମ, ୨ୟ, ୩ୟ, ୪ର୍ଥ, ୮ମ, ୯ମ, ୧୦ମ ଓ ୧୩ଶ ଅଧିବେଶନ)

୫. **ଗଡ଼ଜାତବାସିନୀ** (ସଂ.ଭାଗୀରଥି ପଦ୍ୟାଳଂକର) ତାଳଚେର

୬. **ଛାତ୍ରବନ୍ଧୁ** (ସଂ.ମୃତ୍ୟୁଞ୍ଜୟ ରଥ)ରେଭେନ୍ସା କଲେଜିଏଟ ସ୍କୁଲ୍, କଟକ

୭. **ବାଲେଶ୍ୱର ସମ୍ବାଦବାହିକା** (ସଂ. ନିମାଇ ଚରଣ ଘୋଷ) ବାଲେଶ୍ୱର

୮. **ମୁକୁର** (ସଂ.ବ୍ରଜସୁନ୍ଦର ଦାସ) କଟକ

## ପୁସ୍ତକାବଳୀ (ଓଡ଼ିଆ)

| | | | |
|---|---|---|---|
| ୧. | ଆଚାର୍ଯ୍ୟ ଭାବାନନ୍ଦ (ସଂ) ଓ ଦେବେନ୍ଦ୍ର କୁମାର ଦାଶ | ୨୦୦୦ | **ଓଡ଼ିଶାର ଜନକ ମଧୁସୂଦନ** ମୟୂର ପବ୍ଲିକେସନ୍ସ ଭୁବନେଶ୍ୱର |
| ୨. | ଦାଶ ଦେବେନ୍ଦ୍ର କୁମାର (ସଂ) | ୨୦୦୫ | **ଉତ୍କଳ ସମ୍ମିଳନୀ (୧୯୦୩-୧୯୩୬): ପ୍ରଥମ ଖଣ୍ଡ** ପ୍ରଗତି ଉତ୍କଳ ସଂଘ, ରାଉରକେଲା |
| ୩. | ଦାଶ, ସୂର୍ଯ୍ୟନାରାୟଣ | ୧୯୭୧ | **ଦେଶପ୍ରାଣ ମଧୁସୂଦନ** ଗ୍ରନ୍ଥମନ୍ଦିର, କଟକ |
| ୪. | ଦାସ,ନବକିଶୋର (ସଂ) | ୧୯୩୬ | **ମଧୁବାବୁଙ୍କ ଓଡ଼ିଆ ବକ୍ତୃତା ଓ ଗୀତ** କଟକ |
| | (ସଂ) | ୧୯୫୮ | **ମଧୁବାବୁଙ୍କ ଓଡ଼ିଆ କବିତା ଓ ବକ୍ତୃତା** କଳାବିଜ୍ଞାନ ପରିଷଦ, କଟକ |
| | | ୧୯୯୯ (୧୯୫୧) | **ଉତ୍କଳ ଗୌରବ ମଧୁସୂଦନ** ଉତ୍କଳ ସମ୍ମିଳନୀ, ଭୁବନେଶ୍ୱର |
| ୫. | ଦାସ, ମଧୁସୂଦନ | ୧୯୧୫ | **ଜାତୀୟ ଗୀତ** |

ମୁକୁର ପ୍ରେସ୍, କଟକ
୬. ମହାନ୍ତି, ସୁରେନ୍ଦ୍ର ୧୯୭୭ ଶତାବ୍ଦୀର ସୂର୍ଯ୍ୟ
(୧୯୭୦) ଲାର୍କ ବୁକ୍ସ, କଟକ
୨୦୦୭ କୁଳବୃଦ୍ଧ
(୧୯୭୮) ଲାର୍କ ବୁକ୍ସ, ଭୁବନେଶ୍ୱର
୭. ସାହୁ, ଲକ୍ଷ୍ମୀନାରାୟଣ ୧୯୩୪ ଓଡ଼ିଶାର ଗଡ଼ଜାତ
କଟକ

## ପୁସ୍ତକାବଳୀ(ଇଂରାଜୀ)

Das, Nabakishore (ed.) 1958 **Madhusudan's Immortal Words**
Kala Vigyan Parishad, Cuttack.
Dash, Debendra K.(ed.) 1998 **Madhusudan Das: The Man and His Missions,**
Pragati Utkal Sangha, Rourkela
(ed) 2002 **Madhusudan Das: His Life and Achievment**
Pragati Utkal Sangha, Rourkela
Mohanty, Nibedita 2005 **Oriya Nationalism**
(1982) Prafulla Pathagar
Jagatsingpur.

***

**ଦେବେନ୍ଦ୍ର କୁମାର ଦାଶ** (1954) : ଶିକ୍ଷା: ଗଂଗାଧର ମେହେର ମହାବିଦ୍ୟାଳୟ, ଉପାଧ୍ୟୁତ୍ତର: ଓଡ଼ିଆ ବିଭାଗ, ସମ୍ବଲପୁର ବିଶ୍ୱବିଦ୍ୟାଳୟ; ବିଶ୍ୱଭାରତୀ ଓଡ଼ିଆ ବିଭାଗରେ କିଛିକାଳ ଗବେଷକ ଓ ଅସ୍ଥାୟୀ ଅଧ୍ୟାପକ । ୧୯୭୯ ମସିହାରେ ରାଉରକେଲା ମ୍ୟୁନିସ୍‌ପାଲ ମହାବିଦ୍ୟାଳୟ, ରାଉରକେଲାରେ ବିଧିବଦ୍ଧ ଚାକିରି । ସଂପ୍ରତି ଓଡ଼ିଆ ବିଭାଗ, କମଳା ନେହେରୁ ମହିଳା ମହାବିଦ୍ୟାଳୟ, ଭୁବନେଶ୍ୱର ଠାରେ ଅବସ୍ଥାପିତ ।

ନନ୍ଦନତତ୍ତ୍ୱ, ବଙ୍ଗୋତ୍କଳ ସାଂସ୍କୃତିକ ସହଯୋଗିତା, ଅନୁବାଦ ଅଧ୍ୟୟନ ଓ ଓଡ଼ିଆ ସାହିତ୍ୟରେ ବିବିଧ ବିଭାଗ ନେଇ ଶ୍ରୀ ଦାଶଙ୍କର ଓଡ଼ିଆ ଓ ଇଂରାଜୀରେ ୧୦୦ରୁ ଊର୍ଦ୍ଧ୍ୱ ପ୍ରବନ୍ଧ ପ୍ରକାଶିତ । ତାଙ୍କଦ୍ୱାରା ଲିଖିତ ଓ ସଂପାଦିତ ପ୍ରମୁଖ ପୁସ୍ତକ ଗୁଡ଼ିକ ହେଲା – (କ) ଗୋଟିଏ ଫୁଲ ଫୁଟିବାର କାହାଣୀ, (ଖ) ଗଙ୍ଗାଧର : କବିତା ଓ କବି ଆତ୍ମା, (ଗ) ରାଧାନାଥ ଗ୍ରନ୍ଥାବଳୀ (ଡ଼ଃ ପ୍ରସନ୍ନ କୁମାର ମିଶ୍ରଙ୍କ ସହ), (ଘ) Madhusudan Das : The Man and His Missions, Madhusudan Das : His Life and Achievements, (ଙ) ଓଡ଼ିଶାର ଜନକ ମଧୁସୂଦନ (ଆଚାର୍ଯ୍ୟ ଭାବାନନ୍ଦଙ୍କ ସହ), (ଚ) ଫକୀରମୋହନ ଗ୍ରନ୍ଥାବଳୀ (ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଭାଗ), (ଛ) ଗୋପବନ୍ଧୁ ଗ୍ରନ୍ଥାବଳୀ, (ଜ) ଉତ୍କଳ ସମ୍ମିଳନୀ (୧୯୦୩-୧୯୩୬) : ପ୍ରଥମ ଭାଗ ।

**ଡକ୍ଟର ନଗେନ ଦାସ** ବର୍ତ୍ତମାନ କାଳର ଜଣେ ପ୍ରତିଶ୍ରୁତିସଂପନ୍ନ ଗବେଷକ । ଓଡ଼ିଆ ଉପନ୍ୟାସରେ ନାରୀ-ବିମର୍ଷ ସଂପର୍କିତ ଗବେଷଣା ପାଇଁ ତାଙ୍କର ପ୍ରସିଦ୍ଧି । ସହିଦ ଭଗତ ସିଂହଙ୍କର **'ମୁଁ ନାସ୍ତିକ କାହିଁକି ?'** ପୁସ୍ତିକାର ସେ ଅନୁବାଦକ । ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକା ଓ ସଂକଳନରେ ତାଙ୍କର ବହୁ ପ୍ରବନ୍ଧ ପ୍ରକାଶିତ । ସଂପ୍ରତି ସେ ଏସ୍.ଆର୍. ମହାବିଦ୍ୟାଳୟ, ବିଶ୍ରା (ସୁନ୍ଦରଗଡ଼) ରେ ଓଡ଼ିଆ ଅଧ୍ୟାପକ ଭାବରେ କାର୍ଯ୍ୟରତ ।

ପ୍ରଗତି ଉତ୍କଳ ସଂଘ (ପ୍ରତିଷ୍ଠା – ୧୯୫୮) ଇସ୍ପାତ ସହର ରାଉରକେଲାର ଅନ୍ୟତମ ସର୍ବ ପୁରାତନ ଓ ଅଗ୍ରଣୀ ସ୍ୱେଚ୍ଛାସେବୀ ସାଂସ୍କୃତିକ ଅନୁଷ୍ଠାନ । ସାମାଜିକ ଓ ସାଂସ୍କୃତିକ କାର୍ଯ୍ୟପାଇଁ ଏହା ସମଗ୍ର ଓଡ଼ିଶାରେ ସୁପରିଚିତ । ପାଠାଗାର ଆନ୍ଦୋଳନ କ୍ଷେତ୍ରରେ ଏହା ଦୃଷ୍ଟାନ୍ତମୂଳକ ନେତୃତ୍ୱ ଦେଇଛି । ଉତ୍କଳଗୌରବ ମଧୁସୂଦନ ଜୟନ୍ତୀ ଓ ଉତ୍କଳଦିବସ ପାଳନ ପରମ୍ପରାର ଏହା ପ୍ରତିଷ୍ଠାତା । ମଧୁସୂଦନଙ୍କ ଆଦର୍ଶ ସଂପର୍କରେ ଯୁବପୀଢ଼ି ମଧ୍ୟରେ ସଚେତନତା ସୃଷ୍ଟି କରିବା ପାଇଁ ପ୍ରଗତି ଉତ୍କଳ ସଂଘ ଓଡ଼ିଶାର ବିଶ୍ୱବିଦ୍ୟାଳୟ ଗୁଡ଼ିକରେ ସ୍ୱର୍ଣ୍ଣପଦକ-ପ୍ରଦାନର ବ୍ୟବସ୍ଥା କରିଛି ଓ ମଧୁସୂଦନଙ୍କ ସଂପର୍କରେ Madhusudan Das : The Legislator, Madhusudan Das : The Man and His Missions ଓ Madhusudan Das : His Life and Achievements ଆଦି ପୁସ୍ତକର ଏହା ପ୍ରକାଶକ । ସାଂପ୍ରତିକ କାଳରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ଅବହେଳିତ ଦିଗ ତଥା କ୍ରମଶଃ ବିସ୍ମୃତ ହୋଇଯାଉଥିବା ବରେଣ୍ୟ ପ୍ରତିଭାମାନଙ୍କ ସଂପର୍କରେ ଏହା କେତେକ ଉଲ୍ଲେଖଯୋଗ୍ୟ ପୁସ୍ତକର ପ୍ରକାଶକ ।

ISBN 978-81-920552-1-3

